# ତିନିକାଳ

ଡକ୍ଟର ଗୋପୀନାଥ ମହାନ୍ତି, ଏମ୍. ଏ., ଡି. ଲିଟ୍. (ଏଚ୍. ସି.)
( ପଦ୍ମଭୂଷଣ, ଭାରତୀୟ ପ୍ରଥମ ସାହିତ୍ୟ ଏକାଡେମୀ
ପୁରସ୍କାରପ୍ରାପ୍ତ, ଜ୍ଞାନପୀଠ ପୁରସ୍କାରପ୍ରାପ୍ତ )



**ତିନିକାଳ**—ଲେଖକ : ଡକ୍ଟର ଗୋପୀନାଥ ମହାନ୍ତି, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ସଂସ୍କରଣ : ୧୯୯୩, ପ୍ରଚ୍ଛଦପଟ : ଅସିତ୍ ମୁଖାର୍ଜୀ, ମୁଦ୍ରଣ : ନନ୍ଦକିଶୋର ପ୍ରେସ୍, ଡଗରପଡ଼ା, କଟକ-୨



***TINIKALA***—Author : Dr. Gopinath Mohanty, Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa (India), First Edition : 1993, Cover design : Asit Mukherjee, Printed at : Nandakishore Press, Dagarapara, Cuttack-2.

PRICE : Rs. 45.

# ସୂଚୀପତ୍ର





## ଆମ ପ୍ରକାଶିତ ଲେଖକଙ୍କର ଅନ୍ୟାନ୍ୟ ପୁସ୍ତକ

---

- ଅନାମ
- କିଛି କହିବାକୁ ଚାହେଁ
- ଉତ୍କଳମଣି
- ଯୁଦ୍ଧ
- ମହାପୁରୁଷ
- ମନର କଥା
- ଶରଶଯ୍ୟା
- ଘିଇ-ଆଳୁଅ

# ଦେଉଳ

"ହଁ, ଏଇଟା' ସେ ଜାଗା !" ଲୋକଂଟି ଗୋଟିଏ ଗଛମୂଳରେ ଠିଆହୋଇ ଗୃହଆଡ଼କୁ ଅନାଇଁ ଭାବିଲା, "ଅଥଚ ଆଦୌ ସେପରି ଲାଗୁନାହିଁ, ସବୁ ଭାବେ, ବାଟରେ ଯଦି ଲୋକେ କହୁନଥାନ୍ତେ, ଜାଣିବା ଉପାୟ ନଥାନ୍ତା" ।

ଶଶିକାନ୍ତ ଗାଁ'ଛାଡ଼ ଗଲାପରେ ଚାଳିଶ ବର୍ଷରୁ ବେଶୀ ହେଲାଣି ବୁଲରେ ବାହାରେ ବାହାରେ କଟେଇଛି । ତହିଁରୁ ବହୁବର୍ଷ ଆମେରିକାରେ, ସେଠିର ବଡ଼ ସହରରେ ରହୁଛି, ବାଳ ପାଚି ଆସିଲାଣି, ଯୁଆଡ଼େ ଗଲେ ନିଜ ଧନ୍ଦାରେ ହିଁ ଯାଇଥାଏ । ଏପଟେ ତା'ର କାମ ନଥାଏ, ହଠାତ୍ ଗୋଟାଏ କାମ ପଡ଼ିଲା ଆସିଛି, ଆଉ ଦୈବାତ୍ ସେହି ବାଟ, ପୂର୍ବେ ନିଜ ଗାଁରୁ ଚାଲି ଚାଲି ଦେଉଁମାଇଲ ଆସି ଯେଉଁ ବାଟ ଧରି ଆହୁରି ଚାରିମାଇଲ ବାଟ ଇସ୍କୁଲକୁ ପଢ଼ିବାକୁ ଯାଉଥିଲା, ସେହି ବାଟର ଗାଁ କଡ଼ରେ ସେହି ସ୍ଥଳଟି ଠାକୁରାଣୀ "ବାଇଆଣୀ ଦେବୀ"ଙ୍କ ପୀଠ । କେତେଥର ସେଠିକି ସେ ଯାଇଛି । ଠାକୁରାଣୀଙ୍କ ଆଗରେ ଲମ୍ବ ହୋଇ ଭୂଇଁରେ ଗୋଡ଼ତଳେ ପଡ଼ି ନିଜ ମନସ୍କାମନା ପୂରଣ ପାଇଁ ମନେ ମନେ ଜଣାଇଛି । ସେ ଶୁଣିଥିଲା, ମା' ସେ, ଦୁର୍ଗା ସେ, ପ୍ରତ୍ୟକ୍ଷ ଠାକୁରାଣୀ ସେ, ପ୍ରସନ୍ନ ହେଲେ ଯାହା ମାଗିବ ତା' କରିଦେବେ । ମନର ସବୁ ଦୁଃଖ, ସବୁ ଆଶା, ନିଜର ସବୁ ଅଭାବ ତାଙ୍କ ଆଗେ ମନେ ମନେ ମନ-ଖୋଲି କହିଦେଲେ ସବୁ ମେଣ୍ଟିବ, କହିଦେଲେ ମନ ହାଲୁକା । ସେଠୁ ଉଠିଲା ପରେ ସେ ମନରେ ନୂଆ ବଳନେଇ ଫେରିଆସେ ।

ସେଣୁ ଏତେକାଳ ପରେ ଏବାରେ ଗଲାବେଳେ ସେ ଅନେକ ଥିଲା । ମନ ଆକ୍ଷେପ ଆପେ ଜନ୍ମିଥିଲା, ଜୀବନଯାକ ଯେତେ ବିପଦ କଟିଛି, ଯେତେ ପ୍ରକାର ସୁଖ, ସଫଳତା ସମୃଦ୍ଧି ଯାହା କିଛି ଘଟିଛି, ସବୁ ତାଙ୍କର ଯୋଗୁଁ ଅଜ୍ଞାତରୁ ସେ ଯାକେ ବଢ଼ନ୍ତା ଜୀବନ ଭିତରେ ତା'ର ଯେତେ ପଢ଼ନ୍ତା ଶିଖନ୍ତା ବିଦ୍ୟା, ଯେତେ ଜଡ଼-ବିଜ୍ଞାନବାଦୀ ଯୁକ୍ତିବାଦୀ ବିଗ୍ରହ ଓ ଅଭିଜ୍ଞତା ତା'ର ସାଧାରଣ ଜୀବନରେ ତା'ର ସ୍ୱାଭାବିକ ସ୍ୱରୂପଭଳି ତାକୁ ଆବୋରିଥିଲା । ଆଜିର ଶୀତଦିନର ତରଳ ଖରାରେ ମୁହୂର୍ତ୍ତିରେ ନୟନକୁ କୁଆଡ଼େ ଆଡ଼େଇ ହୋଇ ଅପସରି ଯାଉଛି, ମନ ଝୁରି ହୋଉଛି ହେବ ବାଇଆଣୀ ଠାକୁରାଣୀଙ୍କୁ ଦର୍ଶନ କରିବାକୁ । ସେ ଲୋଡ଼ୁଛି ନିଜ ସୁଏଁ ନିଜେ ଶୂନଶାନ୍ ଭିତରେ ଏକୁଟିଆ ହେବାକୁ । ସେ ଯେଉଁ କାର୍‌ରେ ଆସିଥିଲା, ତାକୁ ଖଣ୍ଡେ ଦୂରରେ ରାସ୍ତା ଉପରେ ଠାଏ ରଖାଇଥିଲା, ଡ୍ରାଇଭର ସେଠି ଜଗିଥିଲା, ନିଜେ ଆସିଥିଲା ଚାଲି ଚାଲି ।

ହଁ, ଏଇତ ସେ ପୀଠସ୍ଥଳ, କିନ୍ତୁ ସେଠି ଏ ଧୋବଧାଉଳିଆ ଦେଉଳ କ'ଣ ? ଏତେସବୁ ପକ୍କା ମାହାଳ, ଏ ଧଳା ଉଚ୍ଚ ଚକ୍‌କା ପାଚେରି କ'ଣ ? ଆଗରେ ଏ କୋଠାବାଡ଼ି ସବୁ କ'ଣ ? ସହରିଆ ପରି ଜଣାପଡ଼ୁଛନ୍ତି—ଏ ଲୋକମାନେ କିଏ ? ଗୋଟାଏ ବସ୍, ଗୋଟାଏ ଟ୍ରେକର୍, ଦି'ଟା କାର୍ ଏପଟେ ଠିଆ ହୋଇଛି, କୁଆଡ଼େ କିଏ ସବୁ ଆସିଛନ୍ତି ? ଶଶିକାନ୍ତର ମନ ଦବିଗଲା । ଏପରି ଦେଉଳ, ଏପରି ପରିବେଶ ସେ ନାନା ସ୍ଥାନରେ ଦେଖିଛି, ଏମନ୍ତ ନୂଆ ସୃଷ୍ଟି, ଏ ଅମଳର, କିନ୍ତୁ ଯାହାକୁ ସେ ଖୋଜୁଥିଲା, ସେ ଗଲା କାହିଁ

ସେତେବେଳେ ରାସ୍ତାକୁ ଉଡ଼ୁଆଳରେ ରଖିଥିଲା ଆମ୍ବ ତୋଟାଟିଏ, ସେ ରାସ୍ତା ବି ମଠରଗାଡ଼ି ଦେଖି ନଥିଲା । ଆମ୍ବତୋଟା ଗଲେ ଏଠି ସେଠି କେତେଟା ଝଙ୍କା ଝଙ୍କା ଗଛ, ବର, ଓସ୍ତ, ତା' କରରେ ବାଲୁଆ ଅରମା ଭିତରେ ତଳବାଟ ଉଠିଥିଲା ଗୋଟାଏ ଠାଙ୍ଗରା ଢିପ ଉପରକୁ, ଢିପରେ ସ୍ଥାନେ ସ୍ଥାନେ କିଛି କିଛି ପୁରୁଣା କାଳର ଚଷୁ ପାଡ଼ା ଇଟା, ଗୋଟାକ ପ୍ରାୟ ଗୋଟାଏ କେଖାଁ କଟା ମାଙ୍କଡ଼ା ପଥର ଆକାରର, ଆଉ ସ୍ଥାନେ ସ୍ଥାନେ ସାନ କୁନ୍ଦ । ଢିପ ମଝିରେ ପ୍ରାୟ ଛ'ହାତ ଉଚ୍ଚ ଅଭ

ପୁରୁଣା ପଥର ଦେଉଳଟିଏ, ତା' ଉପରେ ଶୁଖିଲା ଶିଉଳ ଓ ଫିମ୍ପି ବସି ଯାଇଥିବା କଳା ଓ ଧଳା ଧଳା, ଦୁଆର ମୁହଁ ସବୁବେଳେ ଖୋଲା, ଭିତରେ ଖଣ୍ଡେ ଚଟାପଥର ଉପରେ, ହାତେଉଚ ଠାକୁରାଣୀ ମୂର୍ତ୍ତି, ତାଙ୍କ ଉପରେ ଏତେ ବହଳ ହୋଇ ଚୁଆ ସିନ୍ଦୁରର ପୁଟ ଲେପି ହୋଇଥାଏ ଯେ ମୁହଁର କଣ୍ଟୁ ବାରିହୁଏ ନାହିଁ, ଅବୟବଗୁଡ଼ିକ ବି ଏକାଠି ମିଶିଯାଇଥାଏ। କେବେକେବେଳେ ଯେ ମୂର୍ତ୍ତି ଖଣ୍ଡିଏ କଳା "ଶାଢ଼ୀ" ଗୁଡ଼େଇ ହୋଇଥାଏ। ଠାକୁରାଣୀଙ୍କ ଆଗରେ ବହୁତ ଗୁଡ଼ିଏ ପୋଡ଼ା ମାଟିଆର ଘୋଡ଼ା, ହାତୀ ପିତୁଳା, କେତୋଟି ମାଟି ଘଡ଼, ଠାକୁରାଣୀଙ୍କ ଉପରେ ଦେହରେ ଫୁଲ ଚଢ଼ା ହୋଇଥାଏ। ଚୁଆର, ଝୁଣା, ଗୋଗୁଳ, ଧୂପର ଓ ଆହୁରି କେତେ ପ୍ରକାର ବାସ୍ନା ଯେ ଦେଉଳ ଭିତରେ ହାଲୁକା ହୋଇ ରହିଥାଏ। ତା' ସହିତ ଚେମେଣୀଙ୍କ ଦୁର୍ଗନ୍ଧ। କିଏ ଯାଉଛି ପିଠାର ବନ୍ଧ ଗଣିବାକୁ? ଉଣ୍ଡି ଦେଖିବାକୁ ମୂର୍ତ୍ତିର ଚେହେରା କପରି, କେବର ଯେ ମୂର୍ତ୍ତି କ ଦେଉଳ? ଡିପ ତଳେ ଥାଇ ଯେ ସ୍ଥଳ ପାଖ ହେଲେ ଠାକୁରାଣୀଙ୍କ ପ୍ରତି ଭକ୍ତିରେ ମନ ପୂରିଯାଏ, ଡିପ ଚଢ଼ୁ ଚଢ଼ୁ ଶଶିକାନ୍ତର ଆଚ୍ଛନ୍ନ ଅବସ୍ଥା ଆସେ, ସତେ ଯେପରି ଠାକୁରାଣୀଙ୍କି ଅନୁଭବ କରୁଛି ମନ ଭିତରେ, ସେଠି ଯେ ଉଇଁଛନ୍ତି, କ'ଣ ଯେ ଦେଖୁଛି ସେ ଜାଣିପାରୁନାହିଁ। ଗୋଡ଼ତଳେ ପଡ଼ି ମନେ ମନେ ମାଗୁଣି କଲାବେଳେ ଠାକୁରାଣୀ ତା' ଭିତରେ ଏକ ଚେତନା, ମନ କଥା ମନେ ମନେ ଠିକ୍ ଠିକ୍ କହିପାରୁଛି କି ନାହିଁ ସେ ଜାଣେ ନାହିଁ, ସେହି ଅନୁଭୂତିରେ ବୁଡ଼ି ଉଠିଲେ ଫେରୁ ଫେରୁ ସ୍ୱପ୍ନର ସ୍ମୃତି ପରି ସେ ସବୁ ଧୀରେ ଧୀରେ କଟି ଆସୁଥାଏ। ସେପରିକି ତାକୁ ନିଶା ଘାରୁଥିଲା, ଧୀରେ ଧୀରେ କଟିଯାଉଛି।

ଶଶିକାନ୍ତ ମନେପକାଉଥାଏ, ସେପରି ଅନୁଭୂତି ସତେ ଯେପରି ସେ ଆଉ କେଉଁଠି ପାଇ ନଥିଲା। କିନ୍ତୁ ଏବେ ସାମ୍ନାରେ ଯାହା ଦେଖୁଛି ତହିଁରେ କମିଆଁର ଲେଶମାତ୍ର ନାହିଁ ଏଥିରେ ସ୍ୱପ୍ନ କି ସ୍ମୃତିର ସ୍ପର୍ଶ ହିଁ ନାହିଁ। ଏ ଖାଲି ଦେଖାଦେଖି ମଧ୍ୟରୁପା ବ୍ୟବସାୟୀ ଦୁନିଆର ସାଧାରଣ ଦୃଶ୍ୟ, ଆଡ଼ମ୍ବର ଅଛି, ହୃଦୟ ନାହିଁ।

ମନରେ କେତେ ଭାବ ଆସୁଥିଲା ସେଥିର ତୋଟା, ସେଥିର ଝଙ୍କା ଝଙ୍କା ଗଛମାନଙ୍କୁ ଦେଖି ! ଠାକୁରାଣୀଙ୍କ ଲୀଳାସ୍ଥଳୀ ଥିଲା ସେ, ସେଠରେ ତାହାଁରେ ପ୍ରତ୍ୟେକ ଡାଳରେ ପ୍ରତି ପତ୍ରରେ ତାଙ୍କ ମହିମାର ସ୍ପର୍ଶ ଲାଗି ରହିଥିଲା । ସେସବୁ ଗଛ ଆଉ ନାହିଁ, ପଦା ହୋଇଛି, ସଫା ହୋଇଛି, ତା' ସ୍ଥାନରେ ଏ କୋଠାବାଡ଼ି, ଏ ଖୋଲା ଜାଗା । ସେ ପୁରୁଣା ଭିତରେ ପଶୁ ନାହିଁ, ସେତେବେଳେ ଲୋକ କହୁଥିଲେ ତା' ତଳେ କେତେ ଯୁଗର କେତେ ମାହାତ୍ମ୍ୟ ଅଛି । ସେସବୁ ସମାନ ହୋଇଛି, ତା' ଉପରେ ଗୋଡ଼ି, ଇଟାଗୁଣ୍ଡ, ଗେଟି ପିଟାହୋଇ ବାଲିଗୋଡ଼ି ସିମେଣ୍ଟମିଶି ଢଳା ହୋଇ ଚଟାଣ, ତା' ଉପରେ ପାହାଚ, ପାଚେରି, ଧୋବ ଫରଫର କୋଠା, ଅତୀତ ଯୁଗମାନଙ୍କର ଶହଶହ ହଜାର ହଜାର ମଣିଷଙ୍କ ପାଦର, ଦେହର, କପାଳର ସ୍ପର୍ଶ, ନାନା ପୂଜା ନାନା ଉତ୍ସବର ସ୍ପର୍ଶ ସବୁ ଅଦୃଶ୍ୟ ହୋଇ ଠିଆହୋଇଛି କୋଠା । ସେତେବେଳେ କେବେ କେବେ ଆଉ କାହା ସଙ୍ଗେ ଦଳରେ ମିଶି ସେ ଦର୍ଶନ କରିବାକୁ ଆସିଛି, କେତେବେଳେ ଖିରି କି କଦଳୀ ନୈବେଦ୍ୟ ଆଣିଛି, ଦୂରରୁ ଦିଶୁଥାଏ ଜଳନ୍ତା ଦୀପ ଧାଡ଼ିରେ ଅନ୍ଧାରଭିତରେ ସତେ ଯେମିତି ଜୀଅନ୍ତା ହୋଇ ଦେବୀ ଉଭା ହୋଇଛନ୍ତି । କେମିତି ଦିଶୁଥିବ ଏବେ ? "ସେ ଭାବଲ୍, ଫରଗୁ ସଡ଼କ, ପିଚୁ ରାସ୍ତାଠୁ, ରାସ୍ତା କଡ଼େ କଡ଼େ ବିଜୁଳି ଲାଇନ, ବସଠୁ ବିଜୁଳି ଲାଇନ୍ ପାଖ ଗାଁକୁ ପଡ଼ିଛି, ତାହାଁରୁ ଲାଇନ୍ ଯାଇଛି ଦେଉଳକୁ । କିଏ ଜାଣେ ? ଏତେ ଆଡ଼ମ୍ବର ଯେତେବେଳେ, ହୁଏତ ବିଜୁଳି ଆଲୁଅ ବେଢ଼ା ଭିତର ଆଲୁଅ କରୁଥିବ ହେତକ ନୁହେଁ, ଭିତରେ ଯେଉଁ ମୁଖଶାଳା ଓ ଦେଉଳ ଗମ୍ଭୀର ଅଛି, ସେଠି ବି ଆଲୁଅ କରୁଥିବ, ଠାକୁରାଣୀଙ୍କୁ ନିଜ ଚେତନା ଭିତରେ କି କଳ୍ପନା ଭିତରେ ନିଜ ବାଗରେ ଦେଖିବାକୁ ଆଉ ହେବ ନାହିଁ । ପ୍ରତିମା ଓ ଦେଉଳ ଭିତରର ସବୁକଥା ବିଜୁଳି ଆଲୁଅରେ ଆଖିକୁ ଦାଉ ଦାଉ ଦିଶିବ ଯେ । ଆଖିକୁ ଯେତକ ଦିଶିବ, ସେତକ ।

ଏଠି ଆଉ ନିର୍ଜନତା ନାହିଁ, ସଡ଼କରେ ଯେପରି ମଝିରେ ମଝିରେ ମଟର ଗାଡ଼ି, ଏଠି ବି ଜନଗହଳି । ପାଖରେ ଦୋକାନଘର ହେଲାଣି, ଯାତ୍ରୀମାନେ ଦରକାରି ଜିନିଷ କିଣି ପାରିବେ । ଗୋଟିଏ ଦୋକାନରେ

ଭୋଗପାଇଁ ଦରକାରୀ ନଡ଼ିଆ, କଦଳୀ, ଖଇଉଖୁଡ଼ା ଓ ପ୍ରକାର ପ୍ରକାର ମିଠାଇ ଅଛି । ଆଗରେ ସଜାହୋଇଛି ଫୁଲ, ଘିଅ ଧୂପ ।

ଶଶିକାନ୍ତ ଚହଲ ଚହଲ ଦୋକାନଆଡ଼କୁ ଗଲା । ଲୋକଟିଏ ଚାଲିଆସିଲା, ସ୍ଥାନୀୟ ଗ୍ରାମବାସୀ ପରି ଲାଗୁଛି, ବୋଧହୁଏ ପୂଜକଟିଏ ହେବ, ପଚାରିଲା, "କେଉଁଠୁ ଆସିବା ହେଲେ ?" "ଦୂରରୁ । ସହରରୁ ।"

"ଦର୍ଶନକୁ ଯିବେ ତ ? ଏବେ ତ ଡେରି ପଡ଼ୁଛି, ଆଉ ଘଣ୍ଟାଏ ଗଲେ ଦେଉଳ ଫିଟିବ । ଗୃହୁଁ ଗୃହୁଁ ବେଳ କଟିଯିବ ଯେ, ଜଣାପଡ଼ିବ ନାହିଁ । ଇଚ୍ଛା ହେଲେ ଟିକିଏ ବୁଲି ଚାରିଆଡ଼ ଦେଖନ୍ତୁ, ନ ହେଲେ ଅପେକ୍ଷା କରନ୍ତୁ, ଧର୍ମଶାଳା ତ ଅଛି । ଏଠି ସବୁ ବନ୍ଦୋବସ୍ତ ଅଛି, କିଛି ଅସୁବିଧା ହେବ ନାହିଁ । ଯଦି କିଛି ମାନସିକ ଅଛି, କି ଦେଉଳରେ କିଛି କିଛି ବିଶେଷ ପୂଜା ଅନୁଷ୍ଠାନ କରାଇବାକୁ ଥିବ ତେବେ ଯାହା ଯାହା ଆବଶ୍ୟକ ଆଗରୁ ସବୁ ଆୟୋଜନ କରାଇବା, ମୁଁ ଥାଉଁ ଥାଉଁ କିଛି ଅସୁବିଧା ହେବ ନାହିଁ । ବିଧିବିଧାନ ପ୍ରକାରେ ଦେବୀ ପୂଜାଅର୍ଚ୍ଚନା ଓ ସମ୍ପୂର୍ଣ୍ଣ ଚଣ୍ଡୀପାଠ କରାଇ ଯାଉନ୍ତୁ । ଆପଣଙ୍କର ସବୁ ମନସ୍କାମନା ପୂର୍ଣ୍ଣ ହେବ । କିମ୍ପି ମାହାତ୍ମ୍ୟ ଏ ଦେବୀଙ୍କର ! ଡାକିପାରିଲେ ସବୁ ସିଦ୍ଧି । କିଏ ନ ଆସନ୍ତି ? ମନ୍ତ୍ରୀ, ଏମ୍ପି, ଏମେଲେ, ନାନା ପାର୍ଟିର ନେତାମାନେ, ନାନା ବଡ଼ବଡ଼ ହାକିମହୁକୁମା, ନାନା ମହା ମହା ଶେଠ, ବ୍ୟବସାୟୀ, ମହା ମହା ଲୋକ କୁଆଡ଼ୁ କୁଆଡ଼ୁ କେତେବେଳେ ପହଞ୍ଚଯାନ୍ତି, ଯାନ-ଯାତ ମଉଛବ ଲାଗି ରହିଥାଏ ।"

"ଆଜ୍ଞା, କଣ ସେ ଦେବୀଙ୍କ ନାଁଟି ?" "ଜାଣିନାହାନ୍ତି ?", ପୂଜକଟି ତା' ଅଜ୍ଞତା ଦେଖି ହସିଦେଲା, କହିଲା, "ଏ ପ୍ରତ୍ୟକ୍ଷ ଠାକୁରାଣୀ ବାଇଆଣୀ ଦେବୀ ।"

"କିନ୍ତୁ ବାଇଆଣୀ ଦେବୀଙ୍କର ତ ଏତେ ମନ୍ଦିର ନ ଥିଲା, ପୀଠ-ସ୍ଥଳୀରେ ଏତେସବୁ କୋଠାବାଡ଼ି ନ ଥିଲା, ଛ'ହାତ ଉଚ୍ଚ ପୁରୁଣା ଦେଉଳ ଭିତରେ ହାତେ ଖଣ୍ଡେ ଉଚ୍ଚ କେଉଁ କାଳର ଶିଳା ମୂର୍ତ୍ତି,

ଗ୍ରକରେ ତୋଟା, ଅରମା, ବରଗଛ, ବଗୁଛିଆ ।" "ଠିକ୍ ଶୁଣିଛନ୍ତି ଆଜ୍ଞା, ସେଇଆ ଥିଲା । ସେଇଥିରୁ ଜାଣିମେ ଦେବୀଙ୍କ ମହିମା । ଯେମିତି ସେ ଥିଲେ । ସେମିତି, କାଳକ ଯାକ ଏ ଜାଗା ପଡ଼ିଥିଲା, ଯେ ମନେ‌ସେ ଦେବୀ ପାଖରୁ ମାଡ଼ ଆସୁଥିଲେ, ଜାତି ନାହିଁ, ପତି ନାହିଁ, ଛୁଆଁ ଅଛୁଆଁ ନାହିଁ । ମେଲା ଦୁଆରମୁହଁ ବାଟେ କୁକୁର ବଲୁଆ ବ ପଶୁଥିଲେ, ସାପ ଗୋଧି, ଟେମେଣିଆ ଘର କରିଥିଲେ, ଉପାଧିଆ ଗୁଡ଼ାକ, କଏ କୁଷ୍ଠୀ, କଏ କ ରୋଗୀ, କଏ କଣ, ଦୁଆର ମୁହଁ ଆଗରେ ଲମ୍ବ ଲମ୍ବ ଗଡ଼ୁଥିଲେ । ଆଖପାଖ ଗାଁ ଲୋକ ସିନା କେବେ କେବେ ତୋଟାରେ ଆସି ଜନ୍ତାଳ କରୁଥିଲେ, ପୂଜା କରୁଥିଲେ । ବାହାରୁ କେହି ଆସୁଥିଲେ ନା କଣ୍ଟୁ କଣ୍ଟକଣା କଲୁ ଶାନ୍ତିନସ୍ୟମ ବ୍ୟବଧାନ ରହିଥିଲା ? ଦଶ ପନ୍ଦର ବର୍ଷରେ ସବୁ ବଦଳିଗଲା ।"

"କେମିତି ଆଜ୍ଞା ?"

"ଆଗ ଆରମ୍ଭ କଲା ଭିଲିପଡ଼ାର ଉଛବ ସାଉ, ସେ ତ ମହାଧନୀ ବ୍ୟବସାୟୀ କଣ୍ଟ୍ରାକ୍ଟର ବଡ଼ ଗୃହୀ—ତା'ର କ'ଣ ମାନସିକ କରିଥିଲା ଫଳ ଗଲା, ସେଉଠୁ ପୁରୁଣା ମନ୍ଦିରକୁ ଭାଙ୍ଗି ସେ ତୋଳିଦେଲା ଏ ନୂଆ ମନ୍ଦିର । ସହରରେ ତା'ର ଘର ଘର ବେଉସା, ତା ନାଁ ଜଣେଇଁଜଣା । ତାଠୁଁ ଶୁଣି ମହିମା ଆହୁରି ବ୍ୟାପିଲା ତ ସହରରୁ ଆସିଗଲା ଅମରଣେଠ୍ ମାରୁଆଡ଼ି । ସେ ଅହୁରି ପଇସା ଢାଳିଲା ମୁଖଶାଳା ତୋଳିଲା, ଶଙ୍ଖ ମଲମଲ ପଥର ବଛେଇ ବେଢ଼ା କଲା, ପାଚେରୀ କଲା, ପାହାଚ କଲା, ଆସିଲା ଦୌଲତ୍ ରାମ୍, କହିଲା ଏତେ ପ୍ରତ୍ୟକ୍ଷ ଦେବୀ, ତାଙ୍କ ମୂର୍ତ୍ତିରେ ସୁନା ରୁପା କାହିଁ ? ସେ ଯାହା ଖର୍ଚ୍ଚ କଲା ତା'ର କଳନା ନାହିଁ । ପୁରୁଣା ମୂର୍ତ୍ତିଙ୍କ ତିନିଗୁଣ ଉଚ୍ଚ ଖୋଳ ତିଆରିକରି ଖଞ୍ଜିଦେଇଛି ତାଙ୍କ ଉପରେ; ଶୁଦ୍ଧ ଆଉ ସୁନାରେ ସେ ତିଆରି ହୋଇଛି, ଦେବୀ ଯେମିତି ସିଂହ ଉପରେ ବସି ନାନା ଅଳଙ୍କାର ଖଞ୍ଜି ହୋଇ ମୁକୁଟ ନାଇ ଅଷ୍ଟଭୁଜା ଦୁର୍ଗା ବସିଛନ୍ତି ।"

"କିନ୍ତୁ ତାହେଲେ ତ ପୁରୁଣା ମୂର୍ତ୍ତି ଦିଶୁନଥିବେ ।"

"ଆଖିକି ନ ଦିଶନ୍ତୁ, ଯେ ତ ଅଛନ୍ତି ସେ ଖୋଳ ଭିତରେ, ଯାହା ପୂଜା ହେଉଛି ସବୁ ତ ତାଙ୍କୁ ହିଁ । ତାଙ୍କର ଉଦ୍ଦେଶ୍ୟରେ । ଯେମିତି ତୁମ୍ଭ ଜଗନ୍ନାଥ, ଦାରୁମୂର୍ତ୍ତି ଭିତରେ ତ ବ୍ରହ୍ମ ପଦାର୍ଥ ଅଛନ୍ତି, ତାଙ୍କୁ କେହି ଦେଖେ ? ଅପେକ୍ଷା କରନ୍ତୁ, ଦର୍ଶନ କରିବେ ତ', ବଜ୍ରକ ଆଲୁଅରେ ଦାଉ ଦାଉ ହୋଇ ଝଟକୁଥିବ ସେ ସୁନ୍ଦର ମୂର୍ତ୍ତି, ଯେ ଶ୍ରୀମୁଖ ହସୁଥିବ, ସେ କ'ଣ ମୂର୍ତ୍ତିକା ତିଆରି ? ସେ ବମ୍ବେଇ ଆଡ଼ରଟି ? ଶୁଣିବା ହଉନ୍ତୁ ! ସେତିକରେ କଣ ଅଟକିଲା ? ଆହୁରି ଆହୁରି କେତେ କେତେ ଧନୀ ଆଇଲେ କିଏ କ'ଣ କ'ଣ କରି ଦେଲା । କିଏ କେଉଁ ଗୃହଦାନ, କିଏ ଧର୍ମଶାଳା, କିଏ ଦେଖଘର, କିଏ କ ସେବା କ ବ୍ୟବସ୍ଥା ଖଞ୍ଜିଦେଲା, ସବୁନାହିଁ, ଶୁଣିଲ ଆହୁରି ଆହୁରି, ଭିତରେ ପାହାଚ ଉପରେ, କାନ୍ଥରେ ବେଢ଼ା ବନ୍ଧାଣରେ ସ୍ଥାନେ ସ୍ଥାନେ ସେ ଭକ୍ତମାନଙ୍କ ନାଁ ଅଛି ଯେ, ଖଣ୍ଡେ ଖଣ୍ଡେ ଶଂଖ ମଲମଲ ପଥରରେ ଜଣ ଜଣକ ନାଁ, ନିଜେ ଖୋଳେଇ ଦିଆନ୍ତି । ଅନେକଙ୍କ । ଆଉ ଦେଖିବେ କଣ ? ସବୁ ତ ବନ୍ଦ । ଭିତରେ ନାନା ଐଶ୍ୱର୍ଯ୍ୟ ଅଛି ନା, କବାଟ ସବୁ ଖୋଲିଲାବେଳେ ଖୋଲିବ, ପହରିମାନେ ଦୁଆର ମୁହଁରେ ଜଗିଥିବେ ଡିଉଟି କରୁଥିବେ, ଆଜିକାଲି ଯୋଉ କାଳ ନା ଆଜ୍ଞା ! ପହଡ଼ବେଳେ, ସେଥିପାଇଁ ବେଢ଼ା ଦୁଆରମୁହଁ କବାଟ ବନ୍ଦ, ମୁଖଶାଳ କବାଟ ବନ୍ଦ, ସବୁଠି ତାଲା । ହଉ, ଆଉ ଘଣ୍ଟାଏ ଖଣ୍ଡେତ । ଶଶିକାନ୍ତ ଦୀର୍ଘଶ୍ୱାସ ପକାଇଲା, ବୁଲି ବୁଲି ସେଠୁ ଘୁଞ୍ଚିଗଲା । ଲୋକଟି କହିଲା, "କହନ୍ତୁ କିଛି ବିଶେଷ ପୂଜା ଅନୁଷ୍ଠାନ ଆଜି କରାଇବେ ନା ? ସବୁ ଯୋଗାଡ଼ କରିଦେବି ।"

"ନା ସେଭଳି କିଛି ଦରକାର ନାହିଁ ।" ଶଶୀକାନ୍ତ କହିଲା । "ହଉ, ଭାବନ୍ତୁ, ମତେ କହିବେ, ମୁଁ ଏଇଠି ଅଛି । ସନ୍ଧ୍ୟାବେଳେ ପହଡ଼ ଖୋଲିବ, ଖୁବ୍ ଗହଳ ହେବ । ମତେ ଡାକିବେ ମୁଁ ଦର୍ଶନ କରାଇ ଦେବି । ଆଉ କେହି ପଣ୍ଡା ଆସି ପଚାରିଲେ କହିବେ ମୋ ପଣ୍ଡା ଶିବ ମହାପାତ୍ରେ ।"

ଶିବ ମହାପାତ୍ର ବିଦା ହେଲେ । ଶଶିକାନ୍ତ ଧୀରେ ଧୀରେ ଦେଉଳ ବେଢ଼ା ପାହାଚ ଆଡ଼କୁ ଗଲା । ଖଣ୍ଡେଦୂରରେ ରହି ଭୂଇଁରେ

ମୁଣ୍ଡ ଲଗାଇ ଗୋଡ଼ତଳେ ଚଢ଼ିଲାବେଳେ ମନେ ମନେ ଦେଖୁଥିଲା ପିଲାଦିନର ସେ ସ୍ଥଳୀଟି, ଡାହାଣେ ତୋଟା, ବାଆଁ ପିଠିଆଡ଼େ ଝଙ୍କା ଝଙ୍କା ବରଗଛ ଗୁଡ଼ିଏ, ସାମ୍ନାରେ ଟାଙ୍ଗରା ଢିପ, ତା'ଉପରେ ସେ ପୁ ଚୁଣା ଟିକେ ଦେଉଳଟି—ଯେମିତି କି ଦେଉଳ ଦୁଆର ମୁହଁକୁ ଯାଇଛି, ସାମ୍ନାରେ ଅନ୍ଧାର ଓ କ୍ଷୀଣ ଆଲୁଅ ଭିତରେ ଚୁଆ ସିନ୍ଦୂର ବୋଳା ହାତେ ଉଚ୍ଚ ପଥର ମୂର୍ତ୍ତିଟି,—ବାଉରାଣୀ ଦେବୀ, ସେହି ଦୁର୍ଗା, ଶକ୍ତି, ଆତ୍ମା, ଅନନ୍ତ ବହ୍ମ, ଅରୂପା ସର୍ବରୂପିଣୀ— ।

ଠିଆହୋଇ ଚଢ଼ିଲାବେଳେ ମନେହେଉଥାଏ ସେ ଇସ୍କୁଲରୁ ଫେରୁଛି । ପରୀକ୍ଷାରେ ଭଲକରି ଆସିଛି । ସବୁ ସେ ଦେବୀର ଦୟା, ଘରକୁ ଫେରିବାକୁ ପଡ଼ିବ, ବୋଉ ଅନେଇଥିବ ।

ଚମକି ପଡ଼ିଲେ, ବୋଉ ? ଘର ? ଇସ୍କୁଲ ? କାହିଁ ସେସବୁ ? କାହିଁ ସେଦିନ ? କାହିଁବା ସେ ଚହଲା ପିଠ ?

ଶଶିକାନ୍ତ ବୁଲିପଡ଼ି ସଡ଼କ ଆଡ଼କୁ ଗୁଲିଲେ, କାର୍‌ରେ ବସି ଗୁଲିଯିବାକୁ ପଡ଼ିବ । ଆଉ ଏଠି ଦଣ୍ଡେ ନୁହେଁ । ଦୁଃଖିତ ହୋଇ ସେ ଭାବି ଭାବି ଗଲେ,—

ଠାକୁରାଣୀ ! ତାଙ୍କୁ ବି ତାଙ୍କି ପକାଇଛି ଧନଦଉଲତର ଖୋଳ ! କବାଟ କଳ ତାଲା ଠୁଙ୍କି ପହରା ଜଗେଇ କଟକଣା ଜାରିକରି ନିୟନ୍ତ୍ରିତ କରୁଛନ୍ତି ଏଠି ମଣିଷ ! ସେ ଆଉ ମେଲା ଖୋଲାରେ ନାହାନ୍ତି । ଅଘୋର ଦ୍ୱାରୀ ସମସ୍ତିଙ୍କ ପାଇଁ ସବୁବେଳ ପାଇଁ ତାଙ୍କ ଦେଉଳ ଦ୍ୱାର ଆଉ ମେଲା ନୁହେଁ, ଜାତି ଅଜାତି ସ୍ପୃଶ୍ୟ ଅସ୍ପୃଶ୍ୟ ଭେଦାଭେଦ ନ ଥାଇ ମୁକ୍ତ କୋଳମୁକ୍ତ ପ୍ରକୃତି ଭିତରେ ହୃଦ ପଦ୍ମର ପୁଷ୍ପାଞ୍ଜଳିରେ ପୂଜାପାଉଥିବା ଦେବୀ ହୋଇ ଆଉ ସେ ନାହାନ୍ତି, ଏଠିବି ଛୁଇଁଗଲାଣି ଧନର ଆଧିପତ୍ୟ, ଅହଙ୍କାର, ଆଡ଼ମ୍ବର, ମୁଖ୍ୟ-ଗୌଣ-ହେୟ, ଭେଦାଭେଦ, ଯାହାଥିଲା ଆକାଶ ପରି ଉଦାର, ତା' ହେଲାଣି ସଙ୍କୀର୍ଣ୍ଣ, ସୀମିତ, ଧନ ବଢ଼ିଛି, ପ୍ରାଣ ସୁକୁ ସୁକୁ ହେଉଛି ।

ସେମିତି ତ ଏ ଦେଶଯାକ ! କି ବେଗ ଯୁଗ ! କୋଠା ଗଢ଼ି ଗଢ଼ି ଯନ୍ତ୍ରସଭ୍ୟତା ଗଢ଼ି ଗଢ଼ି ଆମେ ଧନ୍ୟ । ବିଦେଶୀ ବୁଲିଆସିଲେ କେଡ଼େ

ଗର୍ବରେ ଦେଖାଇ ବସୁଁ, ଦେଖ ତମରି ପରି ଆମେ ବି ହେଉଛୁ ଆମେ ବି କରୁଛୁଁ । କିନ୍ତୁ ବିଦେଶରେ ଏତେ ବର୍ଷ ରହି ଯ୍ୱାଠୁଁ ଶହେଗୁଣ ବଳି ବଳି ଆହୁରି କେତେ କେତେ ଦେଖି ଦେଖି ଅଣନିଶ୍ୱାସୀ ହୋଇ ବିରକ୍ତ ହୋଇ ତ ସେ ଝୁରି ଝୁରି ଫେରିଆସିଥିଲି । ଚାଲିଯାଉଛି, ଏଠି ବି ମାଟିରୁ ମହକ ଚାଲିଯାଉଛି, ପରିବେଶରୁ ସ୍ୱପ୍ନ, ମଣିଷ ସମାଜରୁ ସ୍ନେହ ବିଶ୍ୱାସ, କି ତୋଫାନ ସେ !

ମେଧାବୀ ଅବିବେକୀ ମଣିଷ ଡାକି ଡାକି ଆଣୁଛି ହିଂସା ଓ ଧ୍ୱଂସର ବିଭୀଷିକା, ଯେମାନେ ଯଦି କେବେ ଆଟମ୍‌ବମ୍ ଫୋପଡ଼ା ଫୋପଡ଼ି ହେବେ କିମ୍ବା ଆହୁରି କିଛି ଅଧିକ ଭୟାବହ, ପାଉଁଶ ଭିତରେ ଏସବୁ କେଉଁଠି ଥିବ ?

'ବାଇଶି ପାହାଚ' ମଇ-୧୯୮୨



# ତୁମ୍ବି

ରାଜେନ୍ଦ୍ର ବାବୁ କିଛି କହିଲେ ନାହିଁ, ତୁନି ହୋଇ ପୁଅ ମୁହଁକୁ ଅନାଇଁ ରହିଲେ । ବାବ୍ଲୁ ତାଙ୍କ ଉତ୍ତରକୁ ଅପେକ୍ଷା କରି ତୁନିହୋଇ ଠିଆ ହୋଇଥାଏ, ପାନ ଚୋବାଉଥାଏ, ବରାଦିଆ ବଜାର ପାନର ମସଲାର ମହକରେ ବୁଡ଼ି ନଯାଇ ତା ପାଟିରୁ ବାହାରୁଥାଏ ମଦ ଗନ୍ଧ, ତା ଆଖି ଅଳ୍ପ ଗୋଲାପୀ ଓ ଚକ୍ ଚକ୍ ଦିଶୁଥାଏ । ସେ ସେତିକି ଠିକ୍ ସମୟ ଉଣ୍ଡି ଆସିଥାଏ, ଜାଣେ ଯେ ଏଇ ଦିନ ଦେଢ଼ଟା ବେଳେ ତା' ବାପା ଘରକୁ ଖାଇବାକୁ ଆସନ୍ତି, ନ ହେଲେ ଦିନଯାକ ଓ ସନ୍ଧ୍ୟାବେଳେ ସେ ଜଣଙ୍କର ଔଷଧ ଦୋକାନରେ ଚାକିରି କରନ୍ତି, ଔଷଧ ବିକନ୍ତି । ସେ କହିଥିଲା ସେ ଆଜି ସନ୍ଧ୍ୟାରେ ରେଳଚଢ଼ି ସାଙ୍ଗମାନଙ୍କ ସହିତ ଏକ୍ସକର୍ସନରେ ଯିବ, ଖର୍ଚ୍ଚର ଅଧିକାଂଶ ତ କଲେଜ ତୁଲେଇବ । କିନ୍ତୁ ତା ନିଜ ହାତରେ ଅନ୍ତତଃ ଶହେ ଟଙ୍କା ଥିବା ଦରକାର, ବୋଉକୁ ମାଗିବାରୁ କହିଲା ମୋଠି କିଛି ନାହିଁ, ବାପାଙ୍କୁ କହ । ନିହାତି ନ ହେଲେ ନ ଚଳେ, ଏଇଟା ତା' ପାଠପଢ଼ାର ଗୋଟାଏ ଅଙ୍ଗ, ତା' ମର୍ଯ୍ୟାଦା ଦୃଷ୍ଟିରୁ ବି ଯିବା ନିତାନ୍ତ ଆବଶ୍ୟକ, ନ ହେଲେ ତା ଅଧ୍ୟାପକମାନଙ୍କ ଆଗରେ ତା' ସାଙ୍ଗମାନଙ୍କ ଆଗରେ ସେ ମୁହଁ ଦେଖାଇବ କିପରି ?

ସେ ନିଜ ପକ୍ଷରୁ ସବୁ ଯୁକ୍ତି ବାଢ଼ି ସାରିଥିଲା, ରାଜେନ୍ଦ୍ର ବାବୁ ବାରମ୍ବାର ନିଜ ସଙ୍ଗେ ନିଜେ ଯୁକ୍ତି କରୁଥିଲେ । ନା, ଏ ତାଙ୍କର ଭ୍ରମ ନୁହେଁ, ବାବ୍ଲୁ ପାଟିରୁ ମଦ ଗନ୍ଧ ସେ ଠିକ୍ ବାରି ପାରିଛନ୍ତି, ସେ ଗନ୍ଧ, ଏ ଆଖି, ମୁହଁର ଏ ଥମ ଥମ ଠାଣି, କାହିଁ ଲୁଚେ ?

ଆଗ ରାଗରେ ତାଙ୍କୁଠୁଁ ତଳପାଦଯାଏ ଥରି ଉଠିଲା, ଇଚ୍ଛା ହେଲା ଗର୍ଜନ ଛାଡ଼ି ଏ ଟୋକା ଉପରେ ଡେଇଁ ପଡ଼ନ୍ତେ, ତା ହାଡ଼ ଗୁଣ୍ଡା

କରନ୍ତେ, ତା ଗୁଳି ଉତାରନ୍ତେ, ମୁଣ୍ଡ ଘୂରିଗଲା, ତା'ପରେ ଯାହା ଦେଖିଲେ, ବାବ୍ଲୁ, ହଁ ତାଙ୍କର ଏକମାତ୍ର ସନ୍ତାନ, ନୟନ ପିତୁଳି, ଭବିଷ୍ୟତର ସହାୟ, ଆଶା ଭରସା, ସ୍ନେହ କୁନି ପିଲାଟି, ଗେହ୍ଲା ପୁଅ, ଯେମିତି ପଢ଼ି ଆସି ବି.ଏ. ଶେଷ ବର୍ଷର ଛାତ୍ର, ନିଜ ପେଟରୁ କାଟି ସବୁ ସୁଖ ସୁବିଧା କାଟି ତାର ସବୁ ଆବଶ୍ୟକ ସବୁ ମାଗଣି ସେ ତ ମରି ସରି ପୂରଣ କରି ଆସିଛନ୍ତି—କିନ୍ତୁ ସେଇଟା ତ ତାଙ୍କ ମନ ଭିତରର ବାବ୍ଲୁ, ତାଙ୍କର ସ୍ବପ୍ନ ଓ ଆଶାରେ ଗଢ଼ା ନିଜସ୍ବ ରୂପଟିଏ, ବାହାରେ ସେ କିଏ ? ଏଇ କ'ଣ ତାଙ୍କ ବାବ୍ଲୁ ?

ପଇଁଚାଳିଶ ବର୍ଷରେ ସେ ପ୍ରାୟ ପଞ୍ଚାବନ ବର୍ଷର ବୁଢ଼ା । କାନ୍ଧ ନଇଁଲାଣି, ମୁହଁରେ କ୍ଲାନ୍ତି, ଅବସାଦ, ନିରାଶା, ସବୁବେଳେ ଅଭାବ ଲୋକର ଦୁଶ୍ଚିନ୍ତା ଓ ଦୁଃସ୍ବପ୍ନ, କେତେ ଉଦ୍ୟମ ଆରମ୍ଭ କରିଛନ୍ତି, ସବୁଥର ଆଶା ଟେକିଛି, ସବୁଥର ଉଦ୍ୟମ ବିଫଳ ହୋଇଛି, ପରିଶ୍ରମ ନଷ୍ଟ, ଅର୍ଥ ନାଶ, ବନ୍ଧୁ ହୋଇଛନ୍ତି କୃତଘ୍ନ, ଠକ, ଚୋର, ଶେଷରେ କୌଣସିମତେ ଠାଣିଠୁଣି ହୋଇ ଚଳିବା ଭଳି ଏହି ଚାକିରି ଖଣ୍ଡିକ ହିଁ ଆଶ୍ରା, ସେଥିପାଇଁ ଏତେ ଆୟୁଷ ଖର୍ଚ୍ଚ କରି ସମୟ ଖର୍ଚ୍ଚ କରି ପରିଶ୍ରମ । ଭବିଷ୍ୟତ ଲାଗି ଆଶା ଓ ଆଶ୍ରା କେବଳ ନିଜ ଭିତରେ ସଞ୍ଚି ହୋଇଥିବା ନିଜ ସ୍ବପ୍ନରେ ତିଆରି ବାବ୍ଲୁ । କାହିଁ ସେ ?

ବାହାରେ ଏ ଯୁବକ ସେପରିକି ଭିନ୍ନେ ମଣିଷ । ତାକୁ କୋଡ଼ିଏ ପୂରିଲାଣି । ରାଜେନ୍ଦ୍ର ବାବୁ ପାଞ୍ଚ ଫୁଟ ପାଞ୍ଚ ଇଞ୍ଚ, ସେ ପାଞ୍ଚଫୁଟ ଦଶ ଇଞ୍ଚ । ତାର ବଡ଼ ମୁଣ୍ଡ, ଓସାର ଛାତି, ସରୁ ଅଣ୍ଟା, ବଳିଲା ବଳିଲା ଦମ୍ଭିଲା ହାତ ଗୋଡ଼, ତା ଦେହରେ ଯୌବନର ଜୁଆରର ବଳ । ମନକଲେ ସେ ତାଙ୍କୁ ଉଠେଇ ନେଇ କଚାଡ଼ି ଦେଇପାରେ । ରାଗିଗଲେ ସେ ଭୀମ ମୂର୍ତ୍ତି ହୋଇପାରେ । ତା'ର ବେପରୁଆ ନିଡ଼ରୁଆ ଭଙ୍ଗୀ, ନୀରବରେ ଆପେ ଯେପରି ଜଣେଇଦିଏ—ଦେଖ, ମୁଁ ଜଣେ ସ୍ୱାଧୀନ, ସ୍ୱତନ୍ତ୍ର ମଣିଷ, ମୋ ରୁଚିରେ ମୁଁ ଚଳିବାକୁ ଅଭ୍ୟସ୍ତ, ମୋର ବି ବିଚାରବୁଦ୍ଧି, ନିଷ୍ପତ୍ତି ଅଛି, ମୋ ଇଚ୍ଛା ନ ହେଲେ କାହା କଥା ମାନିବାକୁ ମୁଁ ବାଧ୍ୟ ନୁହେଁ । ଅପ୍ରିୟ କଥା ଶୁଣିଲେ ସେ ଛଳ କରିପାରେ, ରାଗି ପାରେ, ତା'ପରେ ତା

ପ୍ରତିକ୍ରିୟା କେଉଁଆଡ଼େ ଯିବ କିଏ ଜାଣେ ? ରାଜେନ୍ଦ୍ରବାବୁଙ୍କ ରାଗ ନିଭିଗଲା, ସେ ମନକୁ କଳାଏଇ ଭକୁଆ ହୋଇ ବସିରହିଲେ ।

"କ'ଣ କହୁଛ ବାପା ? ମତେ ଦେଲେ ମୁଁ ଯିବି ନାହିଁ ! ତେଣେ ପୁଣି ମୋର କେତେ କାମ ଅଛି ।"

ଲାଗୁଛି, ଅସହାୟ ଯୁବକ ତାଙ୍କୁ ତାଗିଦା କରୁଛି । କିନ୍ତୁ ପୁଣି ଲାଗୁଛି, ସେ ସେତେ ଅସହାୟ ନୁହେଁ କି ସେ ଶ୍ରଦ୍ଧା ମାଗୁ ନାହିଁ । ସେ ଗୋଟାଏ ଦାବୀ ଜାରି କରୁଛି ଓ ଏହି ମୁହୂର୍ତ୍ତରେ, ସେ ଦାବୀ ପୂରଣ ନ କଲେ ଏ ଅନ୍ତୁଆ ପରିସ୍ଥିତି ଭିତରୁ ତାଙ୍କୁ ନିସ୍ତାର ମିଳିବ ନାହିଁ, ଯେପରିକି ବାଧ୍ୟ ନ ହେଲେ, ସେ ନିଜେ ହିଁ ତା ପାଖେ ଧାଉଁଥା । ପଚାରି-ବାକୁ ମନ ହେଲା—ଆଜି ଲୁଚ ନା, ତୁ କ'ଣ ଆଜି ମଦ ପିଇଛୁ, ଏଇ ପ୍ରଥମ ଥର ନା ଆଗରୁ ବି ପିଉଛୁ ? ପଇସା କୋଉଠୁ ପାଉ ? ମିଛ କହି କହି କୋଉଠୁ ନେଉ କି ଆଉ କି ଉପାୟ କରୁ ? ଖାଲି ମଦ ପିଉ ନା ଆଉ କ'ଣ ବ୍ୟଭିଚାର କରୁ ? କ'ଣ ତୋର ଜୀବନ ? କ'ଣ କ'ଣ ତୋ ଅଭ୍ୟାସ ? କେଉଁ ବୃତ୍ତି କରି ନିଜ ପେଟ ପୋଷିବୁ, ସଂସାରରେ ଜନ୍ମଧରିବୁ ଓ ପୁଣି ଆମ ବୁଢ଼ାଙ୍କୁ ପୋଷିବୁ ବୋଲି ମାର୍ଗ ଧରିଛୁ ? ନା ନିଜେ ବୁଡ଼ିବୁ, ଆମକୁ ବି ବୁଡ଼େଇବୁ ସହିତେ ! କିନ୍ତୁ ସବୁ କଥା ମନେ ମନେ, ତୁଣ୍ଡ ଫିଟିଲା ନାହିଁ । ନିଷ୍ଫଳ ରାଗ ପାଲଟି ହୋଇଛି ଶୀତଳ ଦୁଃଖ, ଯେତେ ଯେପରି ଆଖି ଭିତରେ ଲୁହ ଜକେଇଛି, ଅଳ୍ପକେ ବାହାରି ପଡ଼ିବ । ମନ ଭିତରେ ବାରମ୍ବାର ସତର୍କ ବାଣୀ ଶୁଭି ଶୁଭି ଯାଉଛି, ହୁସିଆର ! ହୁସିଆର ! ଅଧୀର ହୋଇ ପଡ଼ିଲେ ଅନ୍ତୁଆ କଥା, ଗୋଟାଏ କିଛି କାଣ୍ଡ, ତା'ପରେ ଜୀବନଯାକ କାନ୍ଦିବାକୁ ପଡ଼ିବ । ଯେପରି କଲେ ଏ ବୟସରେ, ଏ ଅବସ୍ଥାରେ, ଟୋକାଏ ସେ କ'ଣ କ'ଣ କାଣ୍ଡ କରନ୍ତି ତାର ଇୟତ୍ତା ନାହିଁ । କିଏ ଆତ୍ମହତ୍ୟା କରେ, କିଏ କୁଆଡ଼େ ପଳାଏ, କିଏ ଦୁର୍ଗୁଣୀ ହୋଇ ଅକଥା କରୁଥାଏ, ଶତ୍ରୁତା କରୁଥାଏ, ନିଜ ମୁହଁରେ ଘର ମୁହଁରେ କାଳି ବୋଳୁଥାଏ, ସବୁ ଜାଳି ଛାରଖାର କରେ । ନା, ସେସବୁ ସେ କରିବେ ନାହିଁ ।

ବିକଳ ହୋଇ ତା ଆଡ଼କୁ ଅନାଇ ରାଜେନ୍ଦ୍ରବାବୁ ଅନୁନୟ କଲେ—"ତୁ ତ ନିଜ ଆଖିରେ ଘର ଅବସ୍ଥା ଦେଖୁଛୁ ବାପ ବାଉଳୁ,

ଏ ମହଙ୍ଗା ଯୁଗରେ ସହରରେ ଘରଭଡ଼ା ନେଇ ଗର୍ଣ୍ଣ ଚଳିବାକୁ କେତେ ଖର୍ଚ୍ଚ, ସକାଳ ପାହିଲେ ଖର୍ଚ୍ଚ, ପଦାକୁ ବାହାରିଲେ ଖର୍ଚ୍ଚ, ଏତେ ପରିଶ୍ରମ କରି ବର୍ଷକ ମୋ ରୋଜଗାର ତ କେତେ ଉଣା, ଏତେ କଲେଜରେ ପାଠପଢ଼ିଲ, ତୋ ଭଳିଆ ଆଉ ପିଲାମାନଙ୍କ ସଙ୍ଗେ ଅନ୍ତତଃ ସାଧାରଣ ଭାବେ ବେଶଭୂଷାରେ ସମାନ ହୋଇ ଚଳିବାକୁ ଯାହା ଦରକାର ସେତକ ଯୋଗାଇ ଏସବୁ ଖର୍ଚ୍ଚ ତୁଲେଇଲା ବେଳକୁ ମୋର ଅଣନିଶ୍ୱାସ ହେଲାଣି, ତୁ ହଠାତ୍ ଅଲକ୍ଷା ଶହେ ଟଙ୍କା ମାଗୁଛୁ ସେ କ'ଣ କରିବ ?"

ବାବୁଲୁ ସାହସ ଦେଇ ହସିଦେଇ କହିଲା, "ବାପା, ମୁଁ ସବୁ ବୁଝୁଛି । ବାଧ୍ୟରେ ପଡ଼ି ତମକୁ ମାଗିଲି ସିନା, ନ ହେଲେ ମାଗି ନ ଥାନ୍ତି, ମୋର ମୁଁ କୁଆଡ଼ୁ କୁଆଡ଼ୁ ଚଳେଇ ନେଇଥାନ୍ତି, ତୁମେ କ'ଣ ସବୁ ଦେଇପାରୁଛ ନା ମୋର ନିଅଣ୍ଟ ରହେ ? ଏଇଟା ଜରୁରୀ ଦରକାର । ଘର ଖର୍ଚ୍ଚ ଟଙ୍କାରୁ ହେଲେ ଦେଇଥାଅ, ପରେ କେମିତି କେମିତି ଚଳେଇ ନେବ ।" କିଛିଏ ତୁନି ହୋଇ କ'ଣ ହିସାବ କଲାପରି କରି କହିଲା, "ଆଚ୍ଛା, ତୁମେ ପଚିଶ ଟଙ୍କା ଦିଅ, ବାକି ଅଶୀ ଆଉ କୁଆଡ଼ୁ ଦେଖିବି ।"

ସତକୁ ସତ ରାଜେନ୍ଦ୍ରବାବୁ ଯାଇ ବାକ୍ସ ଫିଟେଇ ଘର ଖର୍ଚ୍ଚ ପାଇଁ ରହିଥିବା ଟଙ୍କାରୁ ପଚିଶ ଟଙ୍କା ଆଣି ପୁଅ ହାତରେ ଦେଲେ, ଫୁଁ କରି ଦୀର୍ଘଶ୍ୱାସ ପକାଇଲେ, ଆଖି ଛଳଛଳ ହେଲା, ମୁହଁ ଟେକୁ ନ ପାରୁଥାନ୍ତି । ଇଚ୍ଛା ହେଉଥାଏ, କହନ୍ତେ—ଦେଖ୍ ବାବୁଲୁ, ଆଉ କେବେ ମଦ ଛୁଇଁବୁ ନାହିଁ, ଖରାପ ଲୋକଙ୍କ ସଙ୍ଗେ ସାଙ୍ଗ ହେବୁ ନାହିଁ, ପିଲାଦିନୁଁ ଏତେ କେତେ ନୀତିଶିକ୍ଷା ଦେଇଛି, ତାକୁ ମନେ ରଖି ଅଭ୍ୟାସ କରୁଥିବୁ, ତୁଇ ଆମର ସବୁଠି ବାବୁଲୁ, ଏତେ ତୁ ଲାଗିଲୁ । କିନ୍ତୁ ପଦେ ବି ସେପରି କହିଲେ ନାହିଁ, ନା, ତା'ର କେବେ ଧାରଣା ନ ହେଉ ଯେ ସେ ଜାଣିଛନ୍ତି ଯେ ମଦ ପିଇଲାଣି, ତା ମୁଖା ତା ନିଜ ପାଖେ ଅତୁଟ ଥାଉ, ତା ଆତ୍ମଗୌରବ ଆତ୍ମ-ବିଶ୍ୱାସ ବୃଥା ଓ ଫାଙ୍କି ବୋଲି ତାକୁ ଓଟାରି ଝୋପାଡ଼ି ଦେବାକୁ ଅନ୍ତତଃ ତାଙ୍କ ହାତ ନ ଯାଉ ।

ବାବୁଲୁ ଯେତେବେଳେ ବାର ପାଶଥିଲା ସେ ସେ ଟଙ୍କା ଦେଇଥିବେ ବୋଲି ତାଙ୍କୁ ଭାରି ବାଧୁଛି ଓ ତାଙ୍କର ଅଭାବ ଓ ଦୈନ୍ୟ ମନେପଡ଼ି ଯାଉଛି । ସେ ଭାବିଲା ବାପାଙ୍କୁ ଟିକିଏ ଉତ୍ସୁକ ହେବ ଓ ସାନ୍ତ୍ୱନା ଦେଇଭଳି କହିଲା—

"ବହୁତ ବୁଢ଼ା ଏ ଭାବୁଛ ବାପା, ଏତେ ବର୍ଷ ତ ଗଲାଣି, ଘର ପାଣି ଆସିଲାଣି, ଡାକ୍ତର ଗାଡ଼ିରେ ବାଧ ନେଉଛୁ ବୋଲି ତୁମ ମନ ଦୁଃଖ ? ଆଉ ବର୍ଷକ ମୋର ବି. ଏ. ପାଶ୍ ହେଇଥିବ, ସେତେବେଳେ ମୋ ପାଠ-ପଢ଼ା ଖର୍ଚ୍ଚ ଆଉ ତୁମକୁ ଦେବ ନାହିଁ । ମୁଁ ବି କିଛି ଉପାୟ ଧରି ନେଇଥିବି, ସେଥିପାଇଁ ବି. ଏ. ପାଶ୍ କରିବାକୁ ମୁଁ କ'ଣ ଅପେକ୍ଷା କରିଛି ନା ଝିଏ ଏମେ ପାଶ୍ କଲେ ପ୍ରକୃତରେ କିଛି ଭଲ ରୋଜଗାର ବାଟ ନିଶ୍ଚୟ ମିଳିଯାଏ ? ତୁମ କାଳରେ ତୁମେ ଏମେ ପାଶ୍ କରିଥିଲ, କ'ଣ ହେଲା ? ସେଦିନଠୁଁ ଏ ଦିନ କେତେ ଫରକ୍ ! ଏବେ ତ ନାନା ବାଟ, ଅସଂଖ୍ୟ ବାଟ, ଅଥଚ ବେକାର୍ ବି ଅସଂଖ୍ୟ, ବୋଧହୁଏ ଏଇଥିପାଇଁ ଯେ ଏବେ ଯେଉଁ ପ୍ରକାର ବାଗ ବୁଦ୍ଧି ଚାଲାକିପଣ ଦରକାର ସେ ସବୁ ତାଙ୍କୁ ଜଣା ନାହିଁ କି ତାଙ୍କର ପସନ୍ଦ ନୁହେଁ । ସେମିତି ହେଲେ ମଣିଷ କେମିତି ବଞ୍ଚିବ ? ବଞ୍ଚିବାକୁ ତ ପଡ଼ିବ ଏ ଯୁଗର ପରିସ୍ଥିତି ସଙ୍ଗରେ, ସମସ୍ୟା ଭିତରେ, ପ୍ରକାର ପ୍ରକାର ଜଟିଳ ଯନ୍ତ୍ର, ନୂଆ ନୂଆ ଜନ୍ତୁଜନ୍ତାଙ୍କ ସଙ୍ଗରେ, ସେମାନେ ଚତୁର, ମାୟାବୀ, ଭଣ୍ଡ, ଠକ, ସ୍ୱାର୍ଥ ପାଇଁ ସବୁ ପାପ ସବୁ ଦୁର୍ନୀତି ସବୁ ପ୍ରକାର ନିଷ୍ଠୁରତା କରିବାକୁ ଆଗଭର, ଏଠି କେଉଁ ପୁରୁଣା ଅମଳର ନୀତି ମାର୍ଗ କାହୁଁ ଚଳିବ ? ତୁମେ ସେହି ପୁରୁଣା ମାର୍ଗରେ ଚାଲିଲ, କିନ୍ତୁ ତୁମ ଦେଖନ୍ତରେ ପୁରୁଣା ଅମଳ ସମୁଦାୟ ବଦଳି ଗଲା, ତୁମେ ଠକି ଗଲ, ନିଜେ ମନକୁ ମନ ବୁଝେଇଲ ସତ୍ ରହିଲ ବୋଲି, କିନ୍ତୁ ସଂସାରର ନାନା ସୁଖ ସୁବିଧା, ଯାହା ଅନ୍ୟମାନେ ପାଇଲେ, ତୁମକୁ ମିଳିଲା ନାହିଁ । ତୁମେ ତୁମ ଶିଖିଥିବା ନୀତି ଅନୁସାରେ ମତେ ଗଢ଼ିବାକୁ ଚାହିଁଲ, ମୁଁ ବି ଲାଗିପଡ଼ିଥିଲି ସତ, କିନ୍ତୁ ଭାଗ୍ୟ ବାଧାଦେଲା, ଆଉ ନିଶ୍ଚୟ ବହୁ ପରିମାଣରେ ଏ ସମୟ, ଏ ପରିସ୍ଥିତି, ଯାହା ମୋ ଉପରେ ପ୍ରଭାବ ପକାଇଲା । ସ୍କୁଲରେ ତ ଫାଷ୍ଟ ହେଉଥିଲି, ମାଟ୍ରିକୁଲେସନ୍‌ରେ ହେଲି ସେକେଣ୍ଡ ଡିଭିଜନ୍, ତୁମେ ଚାହିଁଲ ମୁଁ

ଆଇ. ଏସ୍‌ସି. ପଢ଼ି ଡାକ୍ତର ହେବ କି ଇଞ୍ଜିନିଅର ହେବ, ହେଲି ଫାଷ୍ଟ୍ ଇଅର୍‌ରୁ ଫେଲ୍ । ଆଇ. ଏ. ପଢ଼ିଲି, ଯାହା ବା ହୋଇଥାନ୍ତା' ପରୀକ୍ଷା ଆଗରୁ ଦୁ' ମାସ ବେମାର୍, ହେଲି ତୃତୀୟ ଶ୍ରେଣୀ । ତା'ପରେ ବି ବି. ଏ., ବର୍ତ୍ତମାନ ଚତୁର୍ଥ ବର୍ଷ । କିନ୍ତୁ ନାନା ଖେଳ କସରତ୍‌ରେ ମୁଁ ନାଁ କରି ପାରିଛି, ତାଠୁଁ ବେଶୀ—ନାଚ, ବାଗ, ମାର୍ଗ, କୌଶଳ, ବିଷୟରେ ମୋର ଅଭିଜ୍ଞତା ହୋଇଛି, ଗର୍ବ କରି କହୁନାହିଁ, ଅନେକ ଅନେକ କ୍ଷେତ୍ରରେ ମୋର ଚାହାଣି, ମୋର ଅସଂଖ୍ୟ ବନ୍ଧୁ, ସେମାନଙ୍କ ଦୃଷ୍ଟିରେ ମୁଁ ଖୁବ୍ ପାରିବାର, ନାନା କାମରେ ସେମାନେ ମୋ ଉପରେ ନିର୍ଭର କରନ୍ତି, ମନେ ମୁଣ୍ଡରେ ମୁଣ୍ଡାନ୍ତି, କେତେ ପ୍ରକାରେ ଖୁସାମତ ବି କରନ୍ତି । ମୁଁ ମୋ ବାଟ ସଫା କରି ଠିକ୍ ଆଗେ ଆଗେ ଚାଲିଯିବି, ଦେଖିବ ଋଇଥା, କାହା ପିଠିରେ ନାଉ ହେବାକୁ ପଡ଼େ କାହା କାନ୍ଧରେ ଠିଆ ହେବାକୁ ପଡ଼େ ତାହେଲେ ଉପରକୁ ଉଠି ହୁଏ ମତେ ବେଶ୍ ଜଣା, ତୁମେ ଜମା ବ୍ୟସ୍ତ ହୁଅନା ବାପା, ଦେଖିବ ଋଇଥା ।"

ସେ ଚାଲିଗଲା, ରାଜେନ୍ଦ୍ର ବାବୁ ଥକ୍କା ହୋଇ ବସି ପଡ଼ିଲେ । ଇଚ୍ଛା ହେଉଥାଏ କହିଥାନ୍ତେ, "ଆରେ ବାପା ବାବ୍‌ଲୁ, ମୋ ସୁନା, ମୋ ଧନ, ତୋର କ'ଣ ହୋଇଛିରେ ? ଟିକିଏ ଶୋଇ ପଡ଼ୁନୁ ନାହିଁ ?" କିଛି କହିପାରିଲେ ନାହିଁ । ଭାବୁଥାନ୍ତି, କ'ଣ ଗୁଡ଼ାଏ ସେ ଗପିଗଲା ? କାହିଁକି ଏପରି ? ସେ କ'ଣ ମଦ ନିଶାରେ ପ୍ରଳାପ କଲା ? ପୁଣି ଲାଗୁ-ଥାଏ—କେଡ଼େ ଆନ୍ତରିକତା ସହିତ ପରିଷ୍କାର କରି ସରଳ ଅକପଟ ଭାବରେ ସେ ତା' ମନ କଥା ଜଣାଇଦେଇ ଗଲା ! ସେ କେଉଁ ବାଟ ଧରିବ ବୋଲି ବସିଛି ? କାହାଠୁଁ ବୁଦ୍ଧି ନେଇଛି ? କିଏ ତାକୁ ବଳ ଦେଇଛି ? କିଛି ଉତ୍ତର ପାଇଲେ ନାହିଁ । ଶେଷରେ ମୁଣ୍ଡ ଭିତରେ ଗୋଟିଏ ପ୍ରଶ୍ନ ଭୁହାଇ ଭୁହାଇ ହୋଇ ଝଣଝଣେଇ ହେଲା,—କିଏ ସେ ଯୁବକ ? କାହାର ସେ ସ୍ୱର ? ସେ କ'ଣ ସତେ ତାଙ୍କ ବାବ୍‌ଲୁ ?

ନା ସେ କେଉଁ ଭିନେ ରୂପ, ଯାହାକୁ ଏ ସମୟ, ଏ ଆକାଶ, ପବନ, ଏ ସଡ଼କ, ଏ ସହର ଗଢ଼ିଛି ବଢ଼େଇଛି ? କିଏ ଜାଣିଛି ? ହୁଏତ ଦୁଇଟାଯାକ ସତ । "କିନ୍ତୁ ବାବ୍‌ଲୁ ବିଷୟରେ ମୁଁ ପ୍ରକୃତରେ କ'ଣ ଜାଣେ ? କେତେ ଅଂଶରେ ଜାଣେ ? କେବେ ବା ଜାଣିବାକୁ ଚେ

ମିଳନ୍ତି ? ସବୁବେଳେ ମୋ ଚିନ୍ତାରେ ମୋ ଧନ୍ଦାରେ ମୁଁ । ସାନଟିଏ ଥିଲା, ସବୁ କଥାରେ ତା ମା' ଉପରେ କି ମୋ ଉପରେ ନିର୍ଭର, କୋଳରୁ କାଖର ତାଙ୍କର ହୋଇ ଏଡ଼ୁଟିଏ, ସେ ତ ଆଜି ସେହି ସାନ ପିଲା ନୁହେଁ !"

ମ୍ଭିଷ୍ଟ ଝିଁ ଝିଁ କରୁଥାଏ, ରାଜେନ୍ଦ୍ରବାବୁ ବସିଥାନ୍ତି, ଖସ୍ ଖସ୍ ଶୁଭିଲା, ଅନାଇଁ ଦେଲେ, କବାଟ ପାଖେ କାନ୍ଥକୁ ଆଉଜି ଥିର ହୋଇ ଠିଆ ହୋଇଛନ୍ତି ତାଙ୍କ ସ୍ତ୍ରୀ, ବିଷଣ୍ଣ ମୁହଁ । ସେ କେତେବେଳୁ ଠିଆ ହୋଇଛନ୍ତି ରାଜେନ୍ଦ୍ରବାବୁ ଜାଣନ୍ତି ନାହିଁ । ସେ ବୋଧହୁଏ ବାବୁଲୁର ଲେକ୍‌ଚର ଶୁଣିଛନ୍ତି,—କେଜାଣି ? ତାଙ୍କ ସ୍ତ୍ରୀ କହିଲେ, "କହିବି ଗୋଟିଏ କଥା ମୋ ଉପରେ ରାଗିବ ନାହିଁ, ଏଁ ? ଅଭାବ ତ ଆମର ଲାଗିଛି, ସେଥିପାଇଁ ଯାହା ପାରିଛ ଚେଷ୍ଟା କରିଛ, କରୁଛ ବି, କିନ୍ତୁ ସବୁବେଳେ ଅଭାବ ଅଭାବ ବୋଲି ପିଲାଙ୍କ ଆଗରେ କହିଲେ ପିଲାଙ୍କ ମନରେ ଘା' ପଶିଯାଏ, ତାଙ୍କ ସାହସ ଭାଙ୍ଗିଯାଏ, ସେଇଠୁ ବାଧା ଲାଗେ, ତେମେ ସିନା ମତେ ଚିଡ଼, ମୁଁ ତମକୁ କେତେଥର କହିଛି !"

"ଅଇଛି କଲି କ'ଣ ? ଟଙ୍କା ମାଗିଲା ମୁଁ ନାହିଁ କଲି ?"

"ଦେଲ ତ ଦେଲ, ମୁଁ କ'ଣ ଜାଣିନାହିଁ ଦେଇ କି ଅବସ୍ଥାରେ ପଡ଼ିଲ ! ନିଜ କଷ୍ଟ, ନିଜ ବୋଝ ନିଜେ ବୋହିଥାଇଁ, ତୁଣ୍ଡରେ ଅଭାବ ଅଭାବ ବୋଲି ପିଲାଟି ଆଗରେ ଗାଇ ତା'ର କି ତୁମ ନିଜର କିଛି ଉପକାର ହେଲା ?"

ଇଚ୍ଛା ହେଉଥାଏ ପଚାରନ୍ତେ, "ତୁମେ ତା' ପାଟିର ଗନ୍ଧ ବାରିଛ ? ତା' ଆଖି ଦେଖିଛ ? ସେ ଯାହା କହିଲା ସେ କଥା ଶୁଣିଲ ? ତୁମେ ମା'ଟିଏ ହୋଇଛ, ତା' ଖବର ରଖିଛ ? କିନ୍ତୁ ସେ ସବୁ ପ୍ରଶ୍ନ ବି ଓଠ ଯାକେ ଉଠିଲା ନାହିଁ, ଭାବିଲେ,—ପଚାରି ଲାଭ କ'ଣ ? ନିଜ ମୁଣ୍ଡରେ ନିଆଁ ଲାଗିଛି ବୋଲି ତାଙ୍କ ମୁଣ୍ଡରେ ନିଆଁ ଲଗାଇବି ? ଘରେ ଅଶାନ୍ତିର ଝଡ଼ ତୋଫାନ ଉଠେଇବି ? ନା, ଥାଉ । ତାଙ୍କ ସ୍ତ୍ରୀ କହିଲେ, "ଆଉ ବସି ରହିଛ କାହିଁକି ? କେତେ ଡେରି ହେଲାଣି । ଖାଇବ ଚାଲ ।"

'ସୁଚରିତ' ମାର୍ଚ୍ଚ-ଏପ୍ରିଲ ୧୯୮୬

# କଳା-ହରଣ

ସେଦିନ ଯେଉଁ ଘଟଣାଟି ଘଟିଗଲା ସେଥିଯୋଗୁଁ ସେ ଦିନଟି ପୃଥିବୀ ଇତିହାସରେ ଅଭୁଲା ହୋଇ କାଳକାଳକୁ ରହିଗଲା ।

ଓଡ଼ିଶାର କୋରାପୁଟ ଜିଲ୍ଲାର ଉଚ୍ଚ ମାଳଭୂମି ଉପରେ ପାଞ୍ଚଶ ଉଚ୍ଚରୁ ପାଞ୍ଚଶ ପର ବେଢ଼ି ରହିଛି ଉଚ୍ଚ ଉଚ୍ଚ ପର୍ବତମାନଙ୍କ ଘେରା, ତାହାର ଭିତରେ ଠାଏ ଘନଜଙ୍ଗଲ ମଝିରେ ଖୋଲଟିଏ, ସ୍ଥାନଟି ନାଁ 'କାଜୁ', ଖୋଲର ଗୋଟିଏ ପାଖେ ପୂର୍ବେ ଯେଉଁଠି କାଜୁ ବୋଲି ଗୋଟିଏ ମାନ କୋଡ଼ିଆ କନ୍ଧ ଗାଁ କେବେ ଥିଲା; ବାଘ ମଣିଷ ଖାଇବାରୁ ଗାଁ ଭାଙ୍ଗିଗଲା । ଖୋଲରେ ଠିଆ ହୋଇଛି ଶାଳବଣ, କିନ୍ତୁ ତାହାର ତଳେ ତଳେ ରାସ୍ତା ଅଛି, ଉପରୁ ସ୍ତର ସ୍ତର ହୋଇ । ଗୋଟିଏ ପର୍ବତର ତଳୁ ଉପରର ତାଳୁଯାଏ ବିଭିନ୍ନ ସ୍ଥାନରେ କିଛି କିଛି କୋଠାଘର ଅଛି, ତଳ ଅଞ୍ଚଳରେ ଅଧିକାଂଶ, ପାହାଡ଼ ତାଳୁରେ ଯୋଡ଼ିଏ କୋଠା । ସମୁଦାୟ କାଜୁ ବସ୍ତିଟି ଗୋଟିଏ ବୈଜ୍ଞାନିକ ଗବେଷଣା କେନ୍ଦ୍ର ବା ଲାବୋରେଟରି । ସେଥିପାଇଁ ଯେଉଁଠି ସବୁପ୍ରକାର ବ୍ୟବସ୍ଥା ରହିଛି, ତା'ର ନିରାପତ୍ତା ପାଇଁ ବି ବ୍ୟବସ୍ଥା ରହିଛି ।

ଦେଶର ନାନା ସ୍ଥାନରେ ତ ପ୍ରକାର ପ୍ରକାର ବୈଜ୍ଞାନିକ ଗବେଷଣାକେନ୍ଦ୍ରମାନ ଅଛି, ଆଗ୍ରହୀ ବୈଜ୍ଞାନିକମାନେ ବୁଝିଥିବେ କେଉଁଠି କ'ଣ କାମ ହୁଏ, ସାଧାରଣ ଲୋକେ ଜାଣନ୍ତି ନାହିଁ । କେଉଁ କେନ୍ଦ୍ରର କାମ ବିଷୟରେ ଖବରକାଗଜରେ କି ଅନ୍ୟ ପ୍ରକାରେ କିଛି କିଛି ପ୍ରଚାର ହୁଏ, କାହା ବିଷୟରେ ତା' ବି ନୁହେଁ, କାଜୁ କେନ୍ଦ୍ର ଯେହି ଦ୍ୱିତୀୟ ପ୍ରକାରର ଥିଲା । ପଚିଶି ବର୍ଷ ତଳେ ବିଦେଶରୁ ଡକାଡ଼ିକା ହୋଇ ବୃଦ୍ଧ

ଆସିଥିଲେ ପାଞ୍ଚଜଣ ବିଖ୍ୟାତ ଭାରତୀୟ ବୈଜ୍ଞାନିକ, ଓଡ଼ିଶା ସମେତ ଭାରତର ଆଉ ଗୁଟିଏ ପ୍ରାନ୍ତରୁ, ସେମାନଙ୍କ ପଛରେ ଥିଲ ବିଦେଶରେ ନାନା ଦେଶରେ ବ୍ୟବସାୟ କରୁଥିବା ବିଖ୍ୟାତ କୋଟିପତି ଶ୍ରୀଯୁକ୍ତ କାମପାଳଙ୍କର ଆର୍ଥିକ ସାହାଯ୍ୟ ଲାଗି ଦୃଢ଼ ପ୍ରତିଶ୍ରୁତି, ଯେ ପୃଥିବୀରେ ମନୁଷ୍ୟ ଜାତିର ଶାନ୍ତି ସୁଖ ବଢ଼ାଇବା ଉଦ୍ଦେଶ୍ୟରେ ଗବେଷଣା କରିବାକୁ କୋଟି କୋଟି ଟଙ୍କା ସେ ସାହାଯ୍ୟ କରିବାକୁ ପ୍ରସ୍ତୁତ । ଭାରତ ସରକାରଙ୍କ ସହିତ ସେମାନେ ଯାଇ କଥାଭାଷା କଲେ, ଭାରତ ସରକାର ରାଜି ହେଲେ, ସବୁପ୍ରକାର ସାହାଯ୍ୟ ଦେଲେ ଓ ଗବେଷଣା କେନ୍ଦ୍ରଟି ଠିଆହେଲ । ମୂଳରୁ ହିଁ ସର୍ତ୍ତ ରହିଥିଲ ଯେ ଗବେଷଣା କେନ୍ଦ୍ରର ପରିଚାଳନା ରହିବ ସେହି ପାଞ୍ଚଜଣିଆଁ ବୈଜ୍ଞାନିକମଣ୍ଡଳୀ ହାତରେ, ଯୋଜନା ହେବ ତାହାଙ୍କ ଦ୍ୱାରା, କାର୍ଯ୍ୟ ହେବ ତାହାଙ୍କ ନିର୍ଦ୍ଦେଶରେ, ସେମାନେ କେବଳ ମନୁଷ୍ୟର ଶାନ୍ତି ସୁଖ ବିଧାୟକ ନାନା ଉପାୟ ଆବିଷ୍କାର ପାଇଁ ଗବେଷଣା କରିବେ ।

ସେମାନେ କାର୍ଯ୍ୟ ଆରମ୍ଭ କରିଦେଲେ, ସେମାନଙ୍କ ମତ ଓ ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରିବାକୁ ବାଛି ବାଛି ଆହୁରି କୋଡ଼ିଏଜଣ ବୈଜ୍ଞାନିକମାନଙ୍କୁ ସେଠି ନିଯୁକ୍ତ କଲେ ।

ପୃଥିବୀରେ ବିଭିନ୍ନ ଦେଶରେ ହେଉଥିବା ନାନା ଗବେଷଣା କାର୍ଯ୍ୟ ସହିତ ସେମାନେ ସମ୍ପର୍କ ରଖିଥାନ୍ତି, ମଝିରେ ମଝିରେ ବିଦେଶ ଯା'ଆସ କରୁଥାନ୍ତି, ତହିଁରୁ କିଏ କେଉଁଠି ବକ୍ତୃତା ଦିଅନ୍ତି, ଆଲୋଚନା କରନ୍ତି ବା ସନ୍ଦର୍ଭ ପଢ଼ନ୍ତି, କେଉଁଠି ବା କେଉଁ ମାର୍ଗରେ କାହା ଦ୍ୱାରା ଗବେଷଣା କରନ୍ତି । କିନ୍ତୁ ସେମାନଙ୍କ ମୁଖ୍ୟ କର୍ମସ୍ଥଳୀ ଓ ଧ୍ୟାନପୀଠ ହୋଇଥାଏ କାଜୁ ।

ଗବେଷଣା ପାଇଁ ନାନା ଯନ୍ତ୍ରପାତି ନାନାଆଡ଼ୁ ଅଣା ହୋଇଥାଏ । ସେମାନଙ୍କ ନିର୍ଦ୍ଦେଶ ଅନୁସାରେ ଆହୁରି ନାନା ଉପାଦାନ ଦେଶର ନାନା ସ୍ଥାନରେ ତିଆରି ହୋଇ ଗବେଷଣାକେନ୍ଦ୍ରକୁ ଅଣାଯାଏ, ସେଠି ସେଗୁଡ଼ିକ ସେମାନଙ୍କ ନିର୍ଦ୍ଦେଶ ଅନୁସାରେ ଖଞ୍ଜାଯାଇ ସେମାନଙ୍କ

ଉଦ୍ଦିଷ୍ଟ ଯନ୍ତ୍ରିମାନ ବଶିଷ୍ଟ ଗବେଷଣା ପାଇଁ ତଆର କରାଯାଇଥାଏ । ଆବଶ୍ୟକ ପଡ଼ିଲେ କୌଣସି ପରୀକ୍ଷା, ପର୍ଯ୍ୟବେକ୍ଷଣ କ ତଥ୍ୟ ଆହରଣ ପାଇଁ ସେମାନେ ଦେଶର ଅନ୍ୟ କୌଣସି ଅନୁଷ୍ଠାନର ଯନ୍ତ୍ରପାତି ବ ବ୍ୟବହାର କରନ୍ତି, କେତେବେଳେ ପ୍ରୟୋଜନ ପଡ଼ିଲେ ସେପରି କୌଣସି ଆବଶ୍ୟକତାକୁ ବିଦେଶକୁ ଯାଇ ମଧ୍ୟ ମେଣ୍ଟାଇ ନଅନ୍ତି । କନ୍ତୁ ଗବେଷଣାର ଯାହା ଅସଲ କାମ, ଚନ୍ତନ, ପରିକଳ୍ପନା, ସାମୂହିକ ଗବେଷଣା, ପରୀକ୍ଷା ନରୀକ୍ଷା, ବଗ୍ଭର ଆଦ୍ଧ କର କର ଶେଷରେ ଉଦ୍ଭାବନ ଯେ ସବୁ ଘଟିଥାଏ ଏହି କେନ୍ଦ୍ରରେ ।

ବାଇଶିଟି ବର୍ଷ ଏ କାର୍ଯ୍ୟରେ ବତାଇବା ଭିତରେ ସେମାନେ କେତୋଟି ଚମତ୍କାର ଉଦ୍ଭାବନ କରିଯାଇଥିଲେ । ଗୋଟିଏ ଥିଲା— ବାୟୁକୁ ଓ ବାୟୁମଣ୍ଡଳକୁ ବିଷମୁକ୍ତ ଓ ନର୍ମଳ କରିବା ଉପାୟ । ଆଉ ଗୋଟିଏ ଥିଲା, ଯେ କୌଣସି ଜଳାଶୟ, ନଦୀ, ନାଳ ସମୁଦ୍ର ଆଦିର ଜଳକୁ ବିଷମୁକ୍ତ କରିବା ଉପାୟ । ଆଉ ଗୋଟିଏ ଥିଲା—ବର୍ଷା କରାଇବା ଉପାୟ, ଆଉ ଗୋଟିଏ—ତୋଫାନର ବେଗକୁ କମେଇ ଦେବା ଉପାୟ । ରାସାୟନକ ସାର ନ ଦେଇ କେବଳ ଗୋଟିଏ ସ୍ଥାନରେ ଥାଇ ଗୋଟିଏ ବଶିଷ୍ଟ ଯନ୍ତ୍ରରୁ ଅଶ୍ରୁତ ଶବ୍ଦତରଙ୍ଗ ଛାଡ଼ି କପରି ଫୁଲ, ଫଳ ଓ ଫସଲର ଉନ୍ନତି ହୋଇପାରୁଥିବ, ଅଧିକ ଉତ୍ପାଦନ ହେବ, ମାଟି ବ ଉର୍ବର ହେବ ସେଥିପାଇଁ ମଧ୍ୟ ସେମାନେ ଉପାୟ ବାହାର କରିଥିଲେ ।

ଉଦ୍ଭାବନଗୁଡ଼ିକ ଯେ କେବଳ ଅତ୍ୟନ୍ତ ଅଭିନବ, ବିସ୍ମୟକର ଥିଲା ଓ ତା'ର ପରିଣାମ ଅତି କଲ୍ୟାଣକର ଥିଲା ସେତିକ ନୁହେଁ, ତାକୁ କାର୍ଯ୍ୟରେ ଲଗାଇବା ପାଇଁ ଯେଉଁ ଅର୍ଥବ୍ୟୟ କରିବା ଦରକାର ପଡ଼ୁଥିଲା ତାହା ଆଦୌ ଅତି ଅଧିକ ନଥିଲା, ସେଗୁଡ଼ିକ ସାଧାରଣ ଲୋକଙ୍କ ବ୍ୟବହାର ଓ ଉପକାର ପାଇଁ ଉଦ୍ଦିଷ୍ଟ ହୋଇଥିଲା । ସେମାନେ ସେଗୁଡ଼ିକୁ ଜନସାଧାରଣଙ୍କ କଲ୍ୟାଣ ଲାଗି, ବ୍ୟବହାର କରାଇବା ଲାଗି ଭାରତ ସରକାରଙ୍କୁ ଦେଇ ଦେଇଥିଲେ, ସର୍ତ୍ତ ରଖିଥିଲେ ଯେ ଭାରତ ରାଷ୍ଟ୍ରର ଉଦ୍ଭାବନ ବୋଲି ସେ ଜ୍ଞାନ ପୃଥିବୀର ସର୍ବତ୍ର ବ୍ୟବହାର ହେବା ଲାଗି ପ୍ରକାଶ କରାଯିବ, କନ୍ତୁ ଆବିଷ୍କାରକଙ୍କ ନାମ ଗୋପନ ରଖାଯିବ । ଏଭଳି

ଗବେଷକମାନଙ୍କୁ ଯେଉଁ ବହୁ ମାନ, ଆଦର, ଆସନ ଓ ପ୍ରତିଷ୍ଠା ମିଳେ, ଗୃହଆଡ଼େ ସେମାନଙ୍କ ନାଁରେ ଯେପରି ଭୁର ଚଢ଼ଯାଏ—ନିଜ ମତ ଓ ସାଧନା ଲାଗି ତାହା ଅବାନ୍ତର ଓ ହାନିକର ଭାବି ସେମାନେ ସେ ସମ୍ପର୍କରେ ନିଜର ନାମ ଲୁଚେଇ ଥିଲେ । ସେମାନଙ୍କ ଉଦ୍ଭାବନଗୁଡ଼ିକ କାଳକ୍ରମେ ଗୃହଆଡ଼େ ବ୍ୟବହାର କରାଯାଉଥିଲା । ଭାରତ ସରକାର ତ ପ୍ରସ୍ତୁତ ଥିଲେ, ସେମାନଙ୍କ ଗବେଷଣା କେନ୍ଦ୍ରକୁ ବିପୁଳ ଅର୍ଥ ସାହାଯ୍ୟ କରି ବିଶାଳରୁ ବିଶାଳତର କରି ଦେବାକୁ, ସେମାନଙ୍କ ଅଧୀନରେ ଦେଶର ନାନା ସ୍ଥାନରେ ନାନା ଗବେଷଣା କେନ୍ଦ୍ର ଖୋଲି ଦେବାକୁ, ସେମାନଙ୍କୁ ନାନା ପ୍ରକାର ପ୍ରତିଷ୍ଠା, କର୍ତ୍ତୃତ୍ୱ ଓ ଧନ ସମ୍ପତ୍ତି ଦେବାକୁ । କିନ୍ତୁ ସେମାନେ ସେସବୁ ମନା କରି ଦେଇଥିଲେ; କେବଳ ଯେଉଁ କ୍ଷେତ୍ରରେ ଯେତିକି ସାହାଯ୍ୟ ଦରକାର ବୋଲି ଭାବୁଥିଲେ, ସେତିକି ଲୋଡ଼ୁଥିଲେ ଓ ନେଉଥିଲେ ।

ତାହାପରେ ସେଦିନ ।

ଶୀତ ସରି ସରି ଲୁଚିଲୁଚି ବସନ୍ତ ଆସି ପହଞ୍ଚୁଥାଏ । କାଜୁ ପଟର ତାଳୁରେ ଥିବା ଗୋଟିଏ କୋଠାର ପିଣ୍ଡା ଉପରେ ଦିନ ଦଶଟା ବେଳେ ଠିଆ ହୋଇଥିଲେ ପାଞ୍ଚଜଣ ବୈଜ୍ଞାନିକ, ସମସ୍ତିଙ୍କ ବୟସ ଷାଠିଏ ଉପରେ, ସେହିମାନେ ପଚିଶି ବର୍ଷ ତଳେ ଏକାଠି ଭାରତରେ ଏଭଳି ଗୋଟିଏ କେନ୍ଦ୍ର ଖୋଲି ଗବେଷଣା ଆରମ୍ଭ କରିବେ ବୋଲି ନିଷ୍ପତ୍ତି କରି ବିଦେଶରୁ ଫେରି ଆସି କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । କାଜୁ କେନ୍ଦ୍ରରେ ବୈଜ୍ଞାନିକମାନଙ୍କ ଭିତରେ ସେହିମାନେ ମୁଖ୍ୟ, ସେହିମାନେ ମିଶି ପରିଚାଳନା ମଣ୍ଡଳୀ, ସେମାନଙ୍କ ଭିତରେ ଯେ ମୁଖ୍ୟ, ଅଧ୍ୟକ୍ଷ, ସେ ଡକ୍ଟର ଲୋକବନ୍ଧୁ । ନିଜର ଜାତି ବା ବଂଶ ସୂଚଉଥିବା ସଂଜ୍ଞା ନିଜ ନାଁରୁ ସେମାନେ ବହୁକାଳରୁ କାଟି ସାରିଛନ୍ତି । ଲୋକବନ୍ଧୁଙ୍କ ବୟସ ସତୁରି ପାଖ ହେଲାଣି, ହାଲୁକା ସାବନା ରଙ୍ଗର ସରୁଆ ଗଢ଼ଣ ସାଢ଼େ ପାଞ୍ଚଫୁଟ ଉଚ୍ଚ ମଣିଷଟିଏ, ଟିକିଏ ଲମ୍ବା ହାଡ଼ୁଆ ମୁହଁ, ଓସାର ଉଚ୍ଚ କପାଳ, ଦମ୍ଭ ଓ ଉଚ୍ଚ ନାକ, ବଡ଼ବଡ଼ ଆଖି, ଆଖିରେ ଚଷମା, ବଡ଼ବଡ଼ କାନ, ଦମ୍ଭ ଚିବୁକ, ଏବେ ବି ସଳଖ ଦମ୍ଭ ଠିଆ ଠାଣି, ମୁଣ୍ଡବାଳ ପାଚି ନାହିଁ ।

ବସ୍ତୁମ ସବେ ଯେପରି ତାଙ୍କ ଚେହେରାରେ ଗତ ତିରିଶି ବର୍ଷ ଭିତରେ କିଛି ପରିବର୍ତ୍ତନ କରିପାରି ନାହିଁ । ଅନ୍ୟମାନେ କିଏ ଡେଙ୍ଗା, କିଏ ଟିକିଏ ଅଳ୍ପ ଉଚ, କାହା ରଙ୍ଗ ଗୋରା, କାହାର କଳା, କିଏ ପାତଳ କିଏ ମୋଟା ।

ସେହି ଉଚରୁ ଦିଶୁଥାଏ ଦିଗ୍‌ବଳୟ ବନ୍ଧା ପଡ଼ିଛି ସ୍ତରସ୍ତର ହୋଇ ତଳୁ ଉପରକୁ ସଜା ହୋଇ ଉଠିଥିବା ଧଳୁ ପର ପର୍ବତ ପାଚେରୀରେ, ତା ତଳେ ବଣ ଭର୍ତ୍ତି ଗମ୍ଭୀର ଉପତ୍ୟକା, ହାଲୁକା ଧୂଆଁ ପରି କୁହୁଡ଼ି ଦୂରକୁ ଦୂରକୁ ଘୁଞ୍ଚୁଘୁଞ୍ଚ ଯାଉଥାଏ, ସ୍ଥାନେ ସ୍ଥାନେ ବିଭିନ୍ନ ବର୍ଣ୍ଣରେ ସମୁଦ୍ରାୟ ଦୃଶ୍ୟପଟଟି ରଞ୍ଜିତ ହୋଇଥାଏ, ଉପରେ ଆକାଶ, ଅଳ୍ପ ପାଉଁଶିଆ ମିଶା ଶାଗୁଆ-ନେଳି, ସକାଳର ଖରା ଝଲସୁଛି, ଖରଆଉ ଗୁପ୍‌ଗୁପ୍ । ପାଞ୍ଚ ମିନିଟ ପରେ ଡକ୍ଟର ଲୋକବନ୍ଧୁଙ୍କ ସ୍ୱତନ୍ତ୍ର କକ୍ଷ ଆଡ଼କୁ ସମସ୍ତେ ଚାଲିଲେ । ଲୋକବନ୍ଧୁ ନିଜ ଚାବିରେ କକ୍ଷଟି ଖୋଲିଲେ, ସମସ୍ତେ ଭିତରକୁ ଗଲେ, ତା'ପରେ ସେ ନିଜେ ଭିତରୁ କବାଟ ବନ୍ଦ କରିଦେଲେ । ସମସ୍ତଙ୍କୁ ବସାଇଦେଇ ଡକ୍ଟର ଲୋକବନ୍ଧୁ କହିଲେ—

"ଗୋଟିଏ ଅତି ଗୁରୁତର ବିଷୟ ପକାଶେ ମୁଁ ଆପଣମାନଙ୍କୁ ଏଠିକି ଡାକି ଆଣିଛି । ପଚିଶି ବର୍ଷ ତଳେ ଆମେ ପାଞ୍ଚଜଣ ଏକାଠି ଯେଉଁ ସ୍ୱପ୍ନ ଦେଖୁଥିଲେ, ଯେଉଁ ଉଦ୍ଦେଶ୍ୟରେ ଏକମତ ହୋଇ କାର୍ଯ୍ୟ ଆରମ୍ଭ କରିଥିଲେ, ମୋର ଦୃଢ଼ ବିଶ୍ୱାସ ଆସିଛି ଯେ ସେ ଦିଗରେ ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ କାର୍ଯ୍ୟ ସଫଳ କରିବା ଲାଗି ଉପାୟ ବର୍ତ୍ତମାନ ଆମ ହାତ-ମୁଠାକୁ ଆସିଯାଇଛି । ଉପାୟଟି କାର୍ଯ୍ୟକାରୀ କରିହେବ ଯୋଡ଼ିଏ ଯନ୍ତ୍ର ସାହାଯ୍ୟରେ । ଯନ୍ତ୍ର ଯୋଡ଼ିକ ଆକାରରେ କ୍ଷୁଦ୍ର ଓ ଏପରି ଯେ ସହଜରେ ତାକୁ ଯେ କୌଣସି ସ୍ଥାନକୁ ନେଇହେବ ଓ ସେଠି ବ୍ୟବହାର କରିପାରିବ । ଗୋଟିକୁ ଚଳାଇଦେଲେ ସଙ୍ଗେ ସଙ୍ଗେ ତହିଁରେ ଦିଶିଯିବ ଏ ପୃଥିବୀରେ କେଉଁ ଦେଶରେ କେଉଁ ସ୍ଥାନରେ ପରମାଣୁ ବୋମା ଗଚ୍ଛିତ ହୋଇ ବ୍ୟବହାର ପାଇଁ ରହିଛି, ସେ ଆକାଶରେ ବ୍ୟୋମଯାନରେ ଥାଉ ବା ସମୁଦ୍ରରେ ଜାହାଜରେ କି ପାଣି ଭିତରେ ଥାଉ, ଭୂଗର୍ଭରେ ମାଟି ଉପରେ କି ଯେଉଁ ଗମ୍ଭୀରରେ ରଖା ହୋଇଥାଉ, କିଛି ଛପି ପାରିବ

ନାହିଁ, ସବୁ ଦଶିଯିବ, ଏତେ ଶୀଘ୍ର ଦଶିବ ଯେ ସେ ବେଗକୁ ମନୁଷ୍ୟର ଇଚ୍ଛାର ବେଗ ସହିତ ସମାନ ବୋଲି କୁହାଯାଇପାରେ । ସଙ୍ଗେ ସଙ୍ଗେ ଆ.ର ଯନ୍ତ୍ରଟିକୁ ଚଳାଇ ଦେଇ ନିର୍ଦ୍ଦେଶ ଦେଲେ ସେ ମୁହୂର୍ତ୍ତକେ ପ୍ରଥମ ଯନ୍ତ୍ର ସାହାଯ୍ୟରେ ଦିଶୁଥିବା ପରମାଣୁ ବୋମା ରକ୍ଷିତ ଥିବା ସ୍ଥାନରୁ ଯେ କୌଣସି ସ୍ଥାନ ଉପରେ ରହିଁଲେ ସବୁ ସ୍ଥାନ ଉପରେ ତା ପ୍ରଭାବ ଦେଖାଇ ପାରିବ ଓ ପରମାଣୁ ବୋମା ଭିତରର ସମୁଦାୟ ଉପାଦାନ ବଦଳାଇ ଦେବ, ତାକୁ ସମ୍ପୂର୍ଣ୍ଣ ଅକାମୀ କରିଦେବ, କିନ୍ତୁ ଅନ୍ୟ କୌଣସି କ୍ଷତି ବା କାହାରି କ୍ଷତି କରିବ ନାହିଁ । ସବୁ ହେବ ନିଃଶବ୍ଦରେ, ଅଦୃଶ୍ୟ-ଭାବେ, ସେତେବେଳେ କିଛି ଜଣାପଡ଼ିବ ନାହିଁ, କେହି ସେ ପରମାଣୁ ବୋମାକୁ ପରଖିଲେ ତେବେ ବୁଝିବ ।

ଯେଉଁ ତତ୍ତ୍ୱଟିର ବୈଜ୍ଞାନିକ ଆବିଷ୍କାର ଯୋଗୁଁ ଏ ଉପାୟଟି ସମ୍ଭବ ହେଲା ତା' ବିଷୟରେ ମୁଁ ଆଗରୁ ଆପଣମାନଙ୍କ ସଙ୍ଗେ ଆଲୋଚନା କରିଛି । ମୋର ଧାରଣା ହେଲା ଯେ ସୃଷ୍ଟିର ପ୍ରତ୍ୟେକ ପ୍ରକାର ପ୍ରତ୍ୟେକ ଉପାଦାନର ମୂଳସ୍ୱରୂପ ହୋଇ ରହିଛି ଆଉ ଗୋଟିଏ ଉପାଦାନ, ସେ ଅବିଭାଜ୍ୟ, ଅବିନାଶୀ—ସବୁଥିରେ ସେ ଅଛି, ତହିଁରେ ସବୁ ରହିଛି, ପ୍ରତ୍ୟେକ ଜାତ ଉପାଦାନ ଯେପରିକି ତାହାର ଏକ ପ୍ରକାର, ସବୁ ତହିଁରୁ ଉତ୍ପନ୍ନ ହୁଏ, ତହିଁରେ ରହେ, ତହିଁରେ ଲୀନ ହୋଇଯାଏ, ସେ ଶୂନ୍ୟ ଅଥଚ ପୂର୍ଣ୍ଣ, ସେ ଗୁଣାତୀତ ପୁଣି ସଗୁଣ, ସବୁ ଶକ୍ତିର ହେତୁ ସେ । ବେଦ ଉପନିଷଦ୍‌ରେ ତାକୁ ହିଁ କ'ଣ ବ୍ରହ୍ମ କି ଆତ୍ମା କୁହାଯାଉଥିଲା ? ମୁଁ ନାହିଁ । ସେ ଦିଗରେ ମୋର ଅଧ୍ୟୟନ ନାହିଁ । ମୋର ସୀମିତ ବୈଜ୍ଞାନିକ ଗବେଷଣାରେ ମୁଁ ଯେତିକି ସିଦ୍ଧାନ୍ତ କରିପାରିଛି ସେତିକି । ସେହି ତତ୍ତ୍ୱର ଗୋଟିଏ ସଫଳ ପ୍ରୟୋଗକଲ୍ପେ ଏ ଯୋଡ଼ିଏ ଯନ୍ତ୍ରର ଉଦ୍ଭାବନ ।

ଯଦି ପରମାଣୁ ବୋମା ଭିତରର ଉପାଦାନ ବଦଳାଇ ଦେଇ ହେବ ତେବେ ଅନ୍ୟ ଯେକୌଣସି ଉଦ୍ଭାବିତ ମାରଣାସ୍ତ୍ର, ଯୁଦ୍ଧରେ ବ୍ୟବହାର ଉପଯୋଗୀ ବିସ୍ଫୋରକ ବସ୍ତୁର ଉପାଦାନ କ'ଣ ବଦଳାଇ-ଦେଇ ତାକୁ ନିଷ୍କ୍ରିୟ କରିହେବ ନାହିଁ ? ମୋର ବିଶ୍ୱାସ ତା'ହି

ସମ୍ଭବ । ସେଥିପାଇଁ ସ୍ୱତନ୍ତ୍ର ଗବେଷଣା ଆବଶ୍ୟକ, ଅନ୍ୟ ଯନ୍ତ୍ର ଉଦ୍ଭାବନ ହୋଇପାରିବ । ତନ୍ତ୍ରର ପ୍ରୟୋଗ ପାଇଁ କ୍ଷେତ୍ର ତ ଅକଳନ ଓ ଏକ ପକ୍ଷରେ, ଜଗତର କଲ୍ୟାଣସାଧନ ଲାଗି ଯେପରି ଏହାର ପ୍ରୟୋଗ କରିବା ସମ୍ଭବ, ଅପର ପକ୍ଷରେ, ସ୍ୱାର୍ଥପର ସର୍ବଗ୍ରାସୀ ପିଶାଚ ଭଳି ବ୍ୟକ୍ତି ବା ଗୋଷ୍ଠୀଙ୍କୁ ଏ ତନ୍ତ୍ର ପ୍ରୟୋଗର ଉପାୟ ମିଳିଗଲେ ଜନପ୍ରାଣୀଙ୍କର ଅଶେଷ ପ୍ରକାର ଦୁଃଖଯନ୍ତ୍ରଣା ବର୍ଦ୍ଧିପିକା ସୃଷ୍ଟି ବା ଧ୍ୱଂସସାଧନ ଉଦ୍ଦେଶ୍ୟରେ ଏହାର ପ୍ରୟୋଗ କରିପାରିବା ବି ସମ୍ଭବ ।

କିନ୍ତୁ ସେସବୁ ନୁହେଁ, କି ଅନ୍ୟ ଉଦ୍ଦେଶ୍ୟ ନୁହେଁ, କେବଳ ପରମାଣୁ ବୋମାକୁ ନିଷ୍କ୍ରିୟ କରିବାକୁ ଏ ଯନ୍ତ୍ର ଦୁଇଟି ଉଦ୍ଦିଷ୍ଟ । ସେହି ତ ପୃଥିବୀ ଉପରେ ପ୍ରଧାନ ଆତଙ୍କ ହୋଇ ଝୁଲିରହିଛି ଏତେ ବର୍ଷ ହେଲା । ଏପରି ହଜାର ହଜାର ସଂଖ୍ୟାରେ ବିଭିନ୍ନ ରାଷ୍ଟ୍ରର ବିପକ୍ଷ ରାଷ୍ଟ୍ର ଉଦ୍ଦେଶ୍ୟରେ ଖଞ୍ଜା ହୋଇ ଥୁଆଯାଇଛି ଯେ ପ୍ରତି ମୁହୂର୍ତ୍ତରେ ଆତଙ୍କ ଭୁଲରେ ହେଉପଛେ କାଳେ କିଏ କେଉଁଠି ତାକୁ ଚଳେଇବା ଆରମ୍ଭ କରିଦେବ, ତାହେଲେ ଆଉପଛକୁ ବି ଫୋପଡ଼ା ହେବ, ହୁଏତ ସମଗ୍ର ପୃଥିବୀର ଜନପ୍ରାଣୀ ଉଦ୍ଭିଦ ସବୁ ଧ୍ୱଂସ ହୋଇଯିବ, ପୃଥିବୀ ହିଁ ଧ୍ୱଂସ ପାଇଯିବ । ସେଗୁଡ଼ାକ ସଂଖ୍ୟାରେ ଏତେ ଯେ ତହିଁରେ ସାରା ପୃଥିବୀର ଜନପ୍ରାଣୀ ଦଶଥର ବି ଧ୍ୱଂସ ହୁଅନ୍ତେ ଓ ଗୋଟାକ ଲେଖାଁ ହିରୋସିମା-ଧ୍ୱଂସକାରୀ ପରମାଣୁ ବୋମା ଅପେକ୍ଷା ଦଶଗୁଣ ପନ୍ଦରଗୁଣ ଅଧିକ ଧ୍ୱଂସକାରୀ !

ଏ ଯନ୍ତ୍ର ସାହାଯ୍ୟରେ ଥରେ ସେସବୁ ନିଷ୍କ୍ରିୟ କରିଦେଲେ ଆଉ ପରମାଣୁ ବୋମା କେହି ଗଢ଼ିପାରିବେ ନାହିଁ ତା' ନୁହେଁ, କିନ୍ତୁ ଏ ପରିସ୍ଥିତି ଆତଙ୍କ ଦୂରହେବ ଓ ତାହାପରେ, ଯେତେବେଳେ ଇଚ୍ଛା ପୁଣି ଏ ଯନ୍ତ୍ର ବ୍ୟବହାର କରାଯାଇ ଏ କାର୍ଯ୍ୟ କରିହେବ । ଯାହାଙ୍କୁ ଏ ବିଦ୍ୟା ଏ କୌଶଳ ବତାଇବା ସେ ଏପରି ଯନ୍ତ୍ର କରାଇ ଏ କାର୍ଯ୍ୟ କରିପାରିବେ, ଆମେ ସଂସାରରେ ନଥିଲେ ବି ତା' ଅଟକିବ ନାହିଁ । କିନ୍ତୁ ଏ ବିଦ୍ୟା କ'ଣ ପ୍ରକଟ କରିଦେବା ?

ଆମ ଆଗରେ ବର୍ତ୍ତମାନ ପ୍ରଥମେ ସେହି ଗୁରୁତର ପ୍ରଶ୍ନ । ମୋର ମତ, ତା' କଦାପି କରିବା ନାହିଁ, ଅପାତ୍ରରେ ପଡ଼ିଲେ ଏଥିରୁ ଅନର୍ଥ ସୃଷ୍ଟି ହେବ । ଧରାଯାଉ, ଗୋଟାଏ ବସ୍ତୁକୁ ଆମେ ଏ ବିଦ୍ୟାଟି ଦେଇଦେବା, କାହାକୁ ଆଉ ? ଆମରି ଭାରତ ବସ୍ତୁକୁ ଅର୍ଥାତ୍ ଭାରତ ସରକାରଙ୍କୁ । ଏପର୍ଯ୍ୟନ୍ତ ଆମେ ଆମର ସବୁ ଉଦ୍ଭାବନ ତାଙ୍କୁ ହିଁ ଦେଇଛୁ ।

କିନ୍ତୁ ବର୍ତ୍ତମାନ ଏ ଯେଉଁ ବିଷୟ ଏଥିରେ ସମଗ୍ର ପୃଥିବୀର ସ୍ୱାର୍ଥ ଆହୁରି ଘନିଷ୍ଠତର ଭାବେ ଜଡ଼ିତ । ଶାସକମାନେ ଯେ ସମଗ୍ର ମାନବଜାତି ପ୍ରତି ସମଦୃଷ୍ଟିସମ୍ପନ୍ନ ଓ କଲ୍ୟାଣକର ହୋଇ ରହିଥିବେ ଏହାର କୌଣସି କାରଣ ଅଛି ? କେବଳ ଗୋଟିଏ ବସ୍ତୁ ଏ ବିଦ୍ୟା ଜାଣିବ, ବ୍ୟବହାର କରିବ, ଅନ୍ୟ ସମସ୍ତିଙ୍କ ପରମାଣୁ ବୋମା ନିଷ୍କ୍ରିୟ କରିବ, ନିଜେ ଗଢ଼ିବ, ରଖିବ ଓ ତାକୁ ଦେଖାଇ ଅନ୍ୟମାନଙ୍କୁ ଭୟଭୀତ କରାଇବ ବା ନିଜର ସ୍ୱାର୍ଥପାଇଁ ଅନ୍ୟମାନଙ୍କୁ ଶୋଷଣ କରିବ । ଏପରି କ'ଣ କେବେ ସମ୍ଭବ ନୁହେଁ ? ହେଲେ କ'ଣ ତହିଁରେ ମାନବଜାତିର ସୁଖଶାନ୍ତି ବଢ଼ିବ ?

ତେଣୁ ମୋ ବିଚାରରେ ତା' କରିବା ନାହିଁ, ଗୁପ୍ତହିଁ ରଖିବା । କେବଳ ସେହି ଅଳ୍ପ କତିପୟ ଶିଷ୍ୟଙ୍କୁ ଶିଖାଇବା ନାନା ପରୀକ୍ଷା କରି ସାରି ଯାହାକୁ ଆମେ ବିଚାରିବା ଏଥିପାଇଁ ଯୋଗ୍ୟ ବୋଲି । ସେ ଭଳି ବ୍ୟକ୍ତି ବି କ୍ୱଚିତ୍ ମିଳିବେ, ନ ମିଳିଲେ କ୍ଷତି ନାହିଁ । ବରଂ ଆମ ଅନ୍ତେ ଏ ଉଦ୍ଭାବନ ବୁଡ଼ିଯାଉ, କିନ୍ତୁ ଅଯୋଗ୍ୟ ହାତରେ ନପଡ଼ୁ । ତାହେଲେ ସେ ଏହା ସାହାଯ୍ୟରେ ନାନା ଅନର୍ଥ କରିବ । ଯେ ଏହାକୁ ଶିଖିବାକୁ ଯୋଗ୍ୟ ହେବ ସେ ଆଗ ଆଦର୍ଶ ଚରିତ୍ରର ମନୁଷ୍ୟ ହୋଇଥିବା ଦରକାର । ସେ ଯେପରି ଏହାକୁ ନିଜ ସ୍ୱାର୍ଥସିଦ୍ଧି ଲାଗି ପ୍ରୟୋଗ ନକରେ । ସେ ନିଃସ୍ୱାର୍ଥପର, ନିର୍ଲୋଭ, ପରୋପକାରୀ, ଅହିଂସ, ଶାନ୍ତିକାମୀ, ସମ୍ବେଦନଶୀଳ, ବିଶ୍ୱରବନ୍ଧୁ ଓ ମାନବପ୍ରେମୀ ହୋଇଥିବ, ତା'ର ଅନ୍ତର ବାହାର ଶୁଦ୍ଧ ଥିବ, ସେହିପରି ବ୍ୟକ୍ତି ହିଁ ଏ ବିଦ୍ୟାର ଅଧିକାରୀ ହେବାକୁ ଯୋଗ୍ୟ । ଅନ୍ୟ କେହି ନୁହେଁ । ଅତୀତରେ ଅପାତ୍ର ହାତରେ ପଡ଼ି ବିଜ୍ଞାନର ନାନା ଉଦ୍ଭାବନ ଧ୍ୱଂସ ଓ ନାନା ଅନର୍ଥ କରିବାକୁ ବ୍ୟବହୃତ ହୋଇଛି । ବୃଥା

ବିଜ୍ଞାନ ହିଁ କଳଙ୍କିତ ହୋଇଛି । ବର୍ତ୍ତମାନ ଏ ବିଷୟରେ ଆପଣମାନେ ନିଜ ନିଜ ମତ କହନ୍ତୁ ।”

ସ୍ବରଜଣ ବୈଜ୍ଞାନିକ ଗୌରବରେ ମନଧ୍ୟାନ ଦେଇ ତାଙ୍କ କଥାକୁ ଶୁଣିଯାଉଥିଲେ ଏଥର କଥା କହିଲେ । ତାଙ୍କୁ ଉଚ୍ଛ୍ୱସିତ ପ୍ରଶଂସା ଜଣାଇଲେ । ଡକ୍ଟର ଲୋକବନ୍ଧୁଙ୍କ ପ୍ରତି ସେମାନଙ୍କର ସମସ୍ତଙ୍କର ସ୍ନେହ ଓ ସମ୍ମାନ । ଡକ୍ଟର ଲୋକବନ୍ଧୁ କ’ଣ ଶୂନ୍ୟବ୍ରହ୍ମ ବିଷୟରେ ବହୁଦିନରୁ ଗବେଷଣା କରୁଥିଲେ ବୋଲି ସେମାନେ ଜାଣିଥିଲେ, ତା’ର କେତେ ବିଷୟରେ ସେମାନଙ୍କ ସଙ୍ଗେ ତାଙ୍କର ଆଲୋଚନା ହୋଇଥିଲା; କିନ୍ତୁ ସେମାନେ ଜାଣିନଥିଲେ ଯେ ତହିଁରେ ସେ ଏତେ ବାଟ ଗଲେଣି । ଅବଶ୍ୟ ସେ ଯାହା କହିଲେ ସେ ଗବେଷଣା ବିଷୟରେ ସେମାନଙ୍କର ତାଙ୍କୁ ନାନା ପ୍ରଶ୍ନ କରିବାର ଅଛି, ନିଜେ ତା’ର ନାନା ଦିଗ ପରୀକ୍ଷା କରିବାର ଅଛି । ବୈଜ୍ଞାନିକ ଉଦ୍ଭାବନ ଏପରି ଜିନିଷ ନୁହେଁ ଯେ କହି-ଦେଲେ ହିଁ ତାହା ଗୃହୀତ ହୋଇଯିବ । କିନ୍ତୁ ସେମାନେ ଜାଣନ୍ତି ଯେ କିଛି ସୁସିଦ୍ଧି ନ ହୋଇଥିଲେ ସେ ତାହା ପ୍ରକାଶ କରନ୍ତି ନାହିଁ ଓ ଏ କ୍ଷେତ୍ରରେ ସେ ତା’ର ପ୍ରମାଣ ଦେବାକୁ ମଧ୍ୟ ପ୍ରସ୍ତୁତ ଅଛନ୍ତି ।

ଉଦ୍ଭାବନଟି ଗୁପ୍ତ ରଖିବା ବିଷୟରେ ତାଙ୍କର ସେହି ସ୍ବରଜଣ ବୈଜ୍ଞାନିକ ସହକର୍ମୀ ତାଙ୍କ ସଙ୍ଗେ ସମ୍ପୂର୍ଣ୍ଣ ଏକମତ ହେଲେ ଓ ସେହିପରି ମଧ୍ୟ, ଉପଯୁକ୍ତ ଶିଷ୍ୟ ବାଛି ଶିକ୍ଷା ଦେବା ପ୍ରସ୍ତାବ ବିଷୟରେ ।

ଲୋକବନ୍ଧୁ ପୁଣି କହିଲେ ଏ ଯେଉଁ ଉଦ୍ଭାବନଟି ହେଲା ସେଥି-ପାଇଁ ଆପଣମାନେ ବିଭିନ୍ନ ବିଷୟରେ କାର୍ଯ୍ୟ କରି ମତେ ଉପାଦାନ ଯୋଗାଇଛନ୍ତି । କୌଣସି ବୈଜ୍ଞାନିକ ଆବିଷ୍କାର ଅନ୍ୟମାନଙ୍କ ସାହାଯ୍ୟ ବିନା ଜଣେ କେହି କରି ଦେଇପାରେ ନାହିଁ, ଏହାଛଡ଼ା ତାହା ପଛରେ ତାକୁ ସାହାଯ୍ୟ କରିବାକୁ ଥାଏ ସମ୍ପ୍ରଦାୟ ବିଜ୍ଞାନର ବିବିଧ ଆବିଷ୍କାର, ବିବିଧ ତତ୍ତ୍ୱ । ଯେଉଁ ଦୁଇଟି ଯନ୍ତ୍ର ପ୍ରସ୍ତୁତ ହୋଇଛି ତା’ର ବିଭିନ୍ନ ଅଂଶ ବିଭିନ୍ନ ସ୍ଥାନରେ ବିଭିନ୍ନ ହାତରେ ତିଆରି ହୋଇ ଆସି ଏକାଠି କରା-ଯାଇଛି, ଯଦିଚ ତାହା ଏହି କାର୍ଯ୍ୟରେ ଲାଗିବ ବୋଲି ସେମାନେ ଜାଣି ନଥିଲେ ।

ତାହାହେଉ, ବର୍ତ୍ତମାନ ଦୃଶ୍ୟମୁ ବଷୟରେ ଆପଣମାନଙ୍କ ମତାମତ ଜାଣିଲୁଁ । ମୋର ଲକ୍ଷ୍ୟ କେବଳ ଯନ୍ତ୍ର ଯୋଡ଼ିକ ଦେଖାଇ ତା'ର କାର୍ଯ୍ୟ ବିଷୟରେ କହିବା ପରିବର୍ତ୍ତେ ଆପଣମାନଙ୍କ ଆଗରେ ବର୍ତ୍ତମାନହିଁ ମୁଁ ଯେ ଦୁଇଟିକୁ ପ୍ରୟୋଗ କରିଦେବି ଓ ଆମେ ସମସ୍ତେ ଦେଖିଥିବାବେଳେ ଆମ ଆଗରେ ଆମେରିକା, ରୁଷ, ଫ୍ରାନ୍ସ, ଚୀନ୍, ଦକ୍ଷିଣ ଆଫ୍ରିକା, ଅଷ୍ଟ୍ରେଲିଆ, ପାକିସ୍ତାନ, ଭାରତ ସମେତ ପୃଥିବୀର ସବୁ ରାଷ୍ଟ୍ରର ସବୁଠି ରହିଥିବା ପରମାଣୁ ବୋମା ସମ୍ପୂର୍ଣ୍ଣ ରୂପେ କାମକାଜକୁ ଅକାମୀ ହୋଇଯିବ, ସେ ଆଉ ଫୁଟିବ ନାହିଁ କି ତହିଁରେ ଆଉ କାହାର କୌଣସି କ୍ଷତି ହେବ ନାହିଁ, କେଉଁଠି ପଡ଼ିଲେ ଯେମିତିପରି ହେବ ଯେମିତି ଶୁଖିଲା ମାଟି ପୁଳାଏ ପଡ଼ିଲା । ଆଉ ଅପେକ୍ଷା କରିବାକୁ ମୋର ମତ ନୁହେଁ, କହନ୍ତୁ ଆପଣମାନେ ଠିକ ?

ସେମାନେ ସମସ୍ତେ କହିଲେ, 'ହଁ ଠିକ ।'

ଡକ୍ଟର ଲୋକବନ୍ଧୁ ସେମାନଙ୍କ ଆଗରେ ଯୋଡ଼ାଏ ଯନ୍ତ୍ରର ଘୋଡ଼ଣୀ ଖୋଲିଲେ । ଯନ୍ତ୍ର ଯୋଡ଼ିକ ଗୁରକୋଣିଆ ବାକ୍ସ ପରି, ଗୋଟିକ ହାତେ ଉଚ୍ଚ ହେବ, ପ୍ରାୟ ଫୁଟେ ଓସାର, ଫୁଟେ ମୋଟା । କକ୍ଷଟିର ଆଲୁଅ ନିଭେଇ ଅନ୍ଧାର କରାଗଲା । ଡକ୍ଟର ଲୋକବନ୍ଧୁ ଗୋଟିଏ ଯନ୍ତ୍ରର କଳ ଟିପିଲେ, ଯନ୍ତ୍ରରେ ଗୁଡ଼ାଗୁଡ଼ାଏ ଖଞ୍ଜା ହୋଇଥିବା ସ୍ଥାନ ଆଲୋକିତ ହୋଇଗଲା । ସେ ଗୋଟିଏ ସ୍ୱିଚ ଚିପିଦେଲେ, ସଙ୍ଗେ ସଙ୍ଗେ ସାମ୍ନାରେ ଲଗା ହୋଇଥିବା ଗୋଟିଏ ପର୍ଦ୍ଦା ଉପରେ ଯୁକ୍ତରାଷ୍ଟ୍ର ଆମେରିକାର ମାନଚିତ୍ର ଫୁଟିଉଠିଲା, ବଦଳିଯାଇ ଗୋଟିଏ ଅଞ୍ଚଳରେ କେତୋଟି ସ୍ଥାନ ଚିହ୍ନିତ ହୋଇଗଲା । ଡକ୍ଟର ଲୋକବନ୍ଧୁ ବୁଝାଇଲେ—

"ଚିହ୍ନିତ ସ୍ଥାନଗୁଡ଼ିକରେ ପରମାଣୁ ବୋମା ଅଛି, ଏପରି ଅନେକ ସ୍ଥାନ ଦିଶୁଥିବ ସାରା ପୃଥିବୀଯାକ ଦେଖାଇ ଦେଖାଇ ଫିଲ୍ମ ଚାଲୁଥିବ । କିନ୍ତୁ ଖାଲି ଦେଖି କ'ଣ ହେବ ? ନେଇ ମୁଁ ଏହା ସହିତ ଆଉ ଯନ୍ତ୍ରଟି ପ୍ରୟୋଗ କଲି । ଏଥର ଆଉ ଯନ୍ତ୍ରରୁ ଶୂନ୍ୟଶକ୍ତି ଆପେ ଆପେ ଯାଇ ଏ ଯନ୍ତ୍ରରେ ଚିହ୍ନିତ ହେଉଥିବା ସ୍ଥାନମାନଙ୍କରେ ପରମାଣୁ ବୋମାକୁ

ଅକାମୀ କରୁଥିବ, ଗୋଟିଏ ସ୍ଥାନର ପରମାଣୁ ବୋମାତକ ଧ୍ୱଂସ ହେବା ସଙ୍ଗେ ସଙ୍ଗେ ଆପଣମାନେ ଏଇ ଧ୍ୱଂସକାରୀ ଯନ୍ତ୍ରର ଡାହାଣ କରରେ ଗୋଟିଏ ଶାଗୁଆ ବନ୍ଦୁ ଫୁଟିବାର ଦେଖିପାରିବେ । ଆରପାଖ ଯନ୍ତ୍ରରେ ସ୍ଥାନ ଚହ୍ନିତ ହୋଇ ଫିଲ୍ମ ଗୁଳିବା ସଙ୍ଗେ ସଙ୍ଗେ ଏପାଖ ଯନ୍ତ୍ରରେ ଗୋଟାକ ପରେ ବନ୍ଦୁ ଏ ଲେଖାଁ ଶାଗୁଆ ଆଲୁଅ ଦଶିଯାଉଥିବ ।"

ସେ ପୁଣି ଲେଉଟି ଆସିଲେ । ଯୋଡ଼ିକଯାକ ଯନ୍ତ୍ର ଆପେ ଆପେ ଚୁପ୍‌ଚାପ୍ ଗୁଳିଥାଏ । ପର୍ଦ୍ଦାରେ ତରତର ହୋଇ ବଭିନ୍ନ ଦେଶରେ ବଭିନ୍ନ ସ୍ଥାନର ସଙ୍କେତ ଦେଇଦେଇ ଗୁଳିଥାଏ ଫିଲ୍ମ, ତେଣେ ଗୋଟିଏ ଯନ୍ତ୍ରରେ ଶାଗୁଆ ଆଲୁଅ ବୁନ୍ଦାଗୁଡ଼ିଏ ଗୋଟାଏ ପରେ ଗୋଟାଏ ଦଶି ଗୁଳିଥାଏ, ତା' ବ ଏଡ଼େ ଚଞ୍ଚଳ ଯେ ବେଳେବେଳେ ଶାଗୁଆ ଆଲୁଅ ସ୍ଥିର ହୋଇ ରହିଲା ପରି ଦଶେ ।

ଡକ୍ଟର ଲୋକବନ୍ଧୁ ଧୀରେ ଧୀରେ କହିଲେ, ଦୁଇ ଯନ୍ତ୍ର ସମାନ ଛନ୍ଦରେ ନଜ ନଜ କାମ କରି ଗୁଳିଛନ୍ତି, ଗୋଟିଏ ଲକ୍ଷ୍ୟସ୍ଥଳରେ ନର୍ଦ୍ଦେଶ ଦେଉଛି, ଆରଟି ଲକ୍ଷ୍ୟସ୍ଥଳରେ ଥିବା ସବୁ ପ୍ରକାରର ପରମାଣୁ ବୋମା ଭିତରର ଉପାଦାନକୁ ବଦଳାଇ ଦେଇ ତାକୁ ଅକାମୀ କରି ଦେଉଛି, ସମ୍ପୂର୍ଣ୍ଣ ନଷ୍ଟ କରି ଦେଉଛି । ମୋ ହିସାବ ଅନୁସାର ଆଉ ପଇଁଗୁଳିଶ ମିନିଟରେ ପୃଥିବୀସାରା ଯେଉଁଠି ଯେଉଁ ପରମାଣୁ ବୋମା ଥାଉ, ସେ ବୋମା ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବ । ସେତେବେଳେ ଦେଖିବେ, ଦୁଇ ଯନ୍ତ୍ର ଆପେ ଆପେ ବନ୍ଦ ହୋଇଯିବ, ଆଉ ଏପଟେ ଫିଲ୍ମ ଦଶିବ ନାହିଁ କ ସେପଟେ ଶାଗୁଆ ଆଲୁଅ ବନ୍ଦୁ ଦଶିବ ନାହିଁ । ଅବଶ୍ୟ – ଆମେ ଯଦ ଗୁହିଁବା କେଉଁ ଦେଶର କେଉଁଠି ଥିବା ପରମାଣୁ ବୋମା ନଷ୍ଟ ନ ହେଉ, ଯନ୍ତ୍ରକୁ ନର୍ଦ୍ଦେଶ ଦେଲେ ସେ ତାକୁ ନଷ୍ଟ କରିବ ନାହିଁ, କନ୍ତୁ କାହିଁକ ? ଆମେ ତ ଗୁହୁଁନୁ ଯେ ସେହିଁରୁ ଗୋଟାଏ ବ ବାକ ରହୁ—ସେଗୁଡ଼ା ଯାହା ଯେଉଁଠି ଅଛି ସବୁ ଧ୍ୱଂସ ହେଉ । ପୁଣି ଭବଷ୍ୟତରେ କେହି ତଆରି କରି ରଖିଲେ ଏ ଦୁଇ ଯନ୍ତ୍ରଦ୍ୱାରା ସେହି କାର୍ଯ୍ୟ ହେବ ।

ଆପଣମାନଙ୍କ ମନରେ ଗୋଟିଏ ପ୍ରଶ୍ନ ଉଠୁଥିବ । ଯନ୍ତ୍ର ଦୁଇଟା ଗୁଳୁଛି ସିନା ଦଶୁଛି, ପ୍ରକୃତରେ ପରମାଣୁ ବୋମାଗୁଡ଼ାକ ଧ୍ୱଂସ ହୋଇ

ଯାଉଛି କି ନାହିଁ ତା'ର ପ୍ରମାଣ କ'ଣ ? ସେଇଟା ସିନା ଜଣାପଡ଼ିବ ପରୀକ୍ଷା କଲେ, ନ ହେଲେ କେମିତି ?

ମୁଁ ତ ପରୀକ୍ଷା କରିଯାଇଛି, ନ ହେଲେ କାହିଁକି ବା ଏ ସବୁ ଯନ୍ତ୍ରର ଉଦ୍ଭାବନ ହୋଇଥାନ୍ତା ଓ ସେ ପ୍ରଣାଳୀ ବି ଆପଣମାନଙ୍କୁ ଅଲଗା ବୁଝାଇ ଦେବି । ଆପଣମାନେ ଶୀଘ୍ର ସମ୍ବାଦ ପାଇପିବେ ଯେ ଯେଉଁମାନେ ସବୁ ପ୍ରକାର ଯତ୍ନ ଓ ସତର୍କତା ସହିତ ନିଜ ନିଜ ପରମାଣୁ ବୋମା ଭବିଷ୍ୟତରେ କାର୍ଯ୍ୟକାରୀ କରିବେ ବୋଲି ସଜାଇ ରଖିଛନ୍ତି ସେମାନେ ହିଁ ପରୀକ୍ଷା କରିବେ ଓ ଜାଣିବେ ଓ ସେଣୁ ହାଉଯାଉ ପଡ଼ିଯିବ । ଆମର, ଏ କାର୍ଯ୍ୟ ଶେଷ ହେଲେ ପରେ ଆମେ ଆମର ଗୁପ୍ତ ଆକାଶ-ବାଣୀ ଯନ୍ତ୍ରରେ ବାରମ୍ବାର ଜଣାଇ ଦେବା ଯେ ଆମର ଅଭିନବ ବୈଜ୍ଞାନିକ ଉପାୟ ବଳରେ ଆମେ ସବୁ ପରମାଣୁ ବୋମା ଭିତରର ଉପାଦାନକୁ ବଦଳାଇ ଦେଇଛୁ । ସେମାନେ ପରୀକ୍ଷା କରି ଦେଖନ୍ତୁ ଓ ଭବିଷ୍ୟତରେ ଏଇଆ ଆମେ କରୁଥିବୁ । ଆମ ଆକାଶୀ ପ୍ରଚୁର ଖବରକାଗଜରେ ବି ବାହାରିବ, ରେଡ଼ିଓରୁ ତ ସହଜେ ଶୁଭୁଥିବ । ସେମାନେ ଯେ ଯେତେ ଚେଷ୍ଟା କରନ୍ତୁ, ଆଦୌ ଜାଣିପାରିବେ ନାହିଁ । ପ୍ରଚୁର କେଉଁଠୁ ଆସୁଛି, କିଏ କରୁଛି । କାହାରି ବିଶ୍ୱାସ ହେବନାହିଁ, କିନ୍ତୁ କୁତୂହଳୀ ହୋଇ କେହି କେହି ପରୀକ୍ଷା ବି କରିବେ ଓ ସେତେବେଳେ ବିଶ୍ୱାସ କରିବେ । ଏ କଥା ସତ ଯେ ବିଭିନ୍ନ ରାଷ୍ଟ୍ରର ଶାସକଗୋଷ୍ଠୀ ସେ ଦେଶରେ ଯୁଦ୍ଧ ସରଞ୍ଜାମ ବିଷୟ ଅତି ଗୋପନୀୟ କରି ରଖନ୍ତି, କିନ୍ତୁ ଏ କ୍ଷେତ୍ରରେ ସମସ୍ତଙ୍କର ତ ଏକା ପ୍ରକାର ଅଭିଜ୍ଞତା ଆସିବ ଓ ଏଥିରେ ବହୁତ ବୈଜ୍ଞାନିକ ସଂପୃକ୍ତ,— କଥାଟା ପଦାରେ ପଡ଼ିବହିଁ ।

ଖାଲି ପରମାଣୁ ବୋମାହିଁ ମାରଣାସ୍ତ୍ର ଉଦ୍ଭାବନର ଶେଷ କାର୍ଯ୍ୟ ନୁହେଁ, ସେ ଚାଲିଥିବ ଓ ତାକୁ ପଣ୍ଡ କରିବାକୁ ଆମ ଗବେଷଣା ଆମ କାର୍ଯ୍ୟ ବି ଚାଲିଥିବ ।

ଆମର ଏଇ ଉଦ୍ଭାବନରେ ଯେ କାଲି କାଲିକୁ ପୃଥିବୀରେ ଯୁଦ୍ଧ ବନ୍ଦ ହୋଇଯିବ ତା' ନୁହେଁ, ଯୁଦ୍ଧ ପାଇଁ କାରଣ ତ ମଣିଷଙ୍କଠି, ତାଙ୍କ

ସମାଜଟି ହିଁ ରହିଛି । କିନ୍ତୁ ପ୍ରତି ଦେଶରେ ଲୋକେ ବେଶୀ ବେଶୀ ସଂଖ୍ୟାରେ ତୁଣ୍ଡ ଖୋଲୁଛନ୍ତି ଯେ ସେମାନେ ଯୁଦ୍ଧ ଚାହାନ୍ତି ନାହିଁ, ଶୋଷଣ ଚାହାନ୍ତି ନାହିଁ, ହିଂସା ଚାହାନ୍ତି ନାହିଁ । ଆମେ ଆଶା କରିବା ଯେ ଆମର ଉଦ୍ୟମ ସେମାନଙ୍କ ସ୍ୱରକୁ ଆହୁରି ବଳ ଦେବ ଓ ରାଷ୍ଟ୍ର ବା ଗୋଷ୍ଠୀମାନଙ୍କୁ ଯୁଦ୍ଧରୁ ନିବର୍ତ୍ତାଇବାକୁ ସାହାଯ୍ୟ କରିବ ।

ପ୍ରାୟ ପଇଁତିରିଶି ମିନିଟ୍ ପରେ ଦୁଇଟିଯାକ ଯନ୍ତ୍ର ଆପେ ଆପେ ବନ୍ଦ ହୋଇଗଲା, ଆଉ ଫିଲ୍ମ ଦିଶିଲା ନାହିଁ କି ଶାଗୁଆ ଆଲୁଅ ଦିଶିଲା ନାହିଁ ।

ରତ୍ନଗୁପ୍ତ ସମସ୍ତେ ବସି ଦେଖୁଥିଲେ । ଡକ୍ଟର ଲୋକବନ୍ଧୁ କହିଲେ ସରିଲା । କୋଟି କୋଟି ଟଙ୍କା ଅଜାଡ଼ି ଦେଇ ରାଷ୍ଟ୍ରମାନେ ବର୍ଷ ବର୍ଷ ଲାଗି ଯେଉଁ ପରମାଣୁବୋମା ଗଢ଼ି ରଖିଥିଲେ ସବୁ ଧ୍ୱଂସ ହୋଇଗଲା ।

ଆଜି ମନେପଡୁଛି ସେହିଦିନର କଥା, ୧୯୪୫ ସାଲର ଜୁଲାଇ ମାସ ତା ୧୬ରିଖ, ସ୍ଥାନ—ଯୁକ୍ତରାଷ୍ଟ୍ର ଆମେରିକାର ନିଉ ମେକ୍ସିକୋ ପ୍ରଦେଶର ଅଲାମୋଗୋର୍ଦୋ ବୋଲି ସ୍ଥାନ, ମରୁଭୂମିରେ ପରୀକ୍ଷା ହେବାକୁ ଫୁଟାଗଲା ପୃଥିବୀରେ ତିଆରି ପ୍ରଥମ ପାରମାଣୁବୋମା, ବୈଜ୍ଞାନିକ ଓପେନ୍‌ହାଇମାରଙ୍କ ଆବିଷ୍କାର, ଲସ୍ ଆଲାମସ୍ ସାମରିକ ଗବେଷଣା-ଗାରରେ ଯେ ଅଧ୍ୟକ୍ଷ ଥାଇ ଶହ ଶହ ବୈଜ୍ଞାନିକଙ୍କୁ ନିର୍ଦ୍ଦେଶ ଦେଇ ତିନି ହଜାର କର୍ମୀ ଲଗାଇ ଯେହି ଉଦ୍ଭାବନ ସମ୍ପୂର୍ଣ୍ଣ କରିଥିଲେ । ସେହିଦିନୁ ପୃଥିବୀକୁ ଗ୍ରାସ କରିବାକୁ ଆରମ୍ଭ ହେଲା ପରମାଣୁବୋମା ଦ୍ୱାରା ଧ୍ୱଂସର ଆତଙ୍କ । ମଣିଷ ଉପରେ ତାକୁ ପ୍ରଥମେ ପ୍ରୟୋଗ କରାଗଲା ଯେତେବେଳେ ସେହିବର୍ଷ ଦ୍ୱିତୀୟ ମହାଯୁଦ୍ଧର ପ୍ରାୟ ଶେଷାଶେଷି ବେଳେ ଆମେରିକାର ଉଡ଼ାଜାହାଜ ଆଗ ହିରୋସିମା ଉପରେ ଓ ତା'ପରେ ନାଗାସାକି ଉପରେ ସେହିପରି ଯୋଡ଼ାଏ ପରମାଣୁବୋମା ଆକାଶରୁ ପୋପାଡ଼ିଲା ।

ଅମୃତମୟ ବିଜ୍ଞାନର ସେହି କଳଙ୍କିତ ପ୍ରୟୋଗର ଆତଙ୍କ ଆଜି ଆପଣମାନେ ଏଠି ଥାଇ ଦୂର ହେଲା । ସମସ୍ତେ ଠିଆ ହେଲେ । ପଦାକୁ ଆସିଲେ । ଡକ୍ଟର ଲୋକବନ୍ଧୁ କବାଟ ବନ୍ଦ କଲେ । ନୀରବରେ ଧୀରେ ଧୀରେ ସମସ୍ତେ ଫେରିଗଲେ ।

'ଇସ୍ତାହାର' ପୂଜାସଂଖ୍ୟା ୧୯୮୫

# ଉତ୍ସବ ଦିନ

ଡେଙ୍ଗା, ସରୁଆ, କାଳିଆ ଯୁବକଟିଏ ବାରି ହୋଇଯାଉଛି ତା’ ପୋଷାକରୁ । ଖଇରି ହାଫ୍ ପ୍ୟାଣ୍ଟ୍, ତା’ଉପରେ ଗୋଲାପୀ ଅଧା-ହାତ ବୁସ୍‌ସାର୍ଟ—ଏ ଅଞ୍ଚଳରେ ଲୋକେ ପିନ୍ଧନ୍ତି ଯାନ, ମଇଳା ଲୁଗା । କାହା କାନ୍ଧରେ ଖଣ୍ଡେ ନାଲିଆ କି ମାଟିଆ ଗାମୁଛା, ଏ ମାଟି ସଙ୍ଗେ ଖାପିଯାଆନ୍ତି । ସେ ପିନ୍ଧିଥାଏ ଡେଣାର ହାତ କଟଟି ଉପରେ ଧଳା ହାତ-ଘଣ୍ଟା, ଛାତି ପକେଟରେ ଦୁଇଟା ଝରକଲମ ଦେଖାଯିଥାଏ, ଗୋଟାଏ ନାଲିଆ, ଆଉଟା ଧଳା । ଚଟିହଳେ ମାଡ଼ିଥାଏ, କାନ୍ଧରୁ ଓହଳିଥାଏ ଗୋଟାଏ ନସିଆ କଳାମୁଣି । ହାତରେ ଗୋଟାଏ ଛତା । ତା’ ମୁଣ୍ଡବାଳ ତେଲ ଜକଜକ, ବାଁପଟକୁ ସିଧା ଫିରେଇ, ମୁହଁରେ ଗାରେ ନଶ, ନ ହେଲେ ସବୁ ଚିକ୍କଣିଆ । ସେମାନଙ୍କ ମୁଣ୍ଡବାଳ ନୁଖୁରା ଫୁରୁଫୁରୁ, ନ ହେଲେ ବେକପଛକୁ ଓଟରି ହୋଇ ଗଣ୍ଠି ପଡ଼ିଥାଏ । କିନ୍ତୁ ତା’ ମୁହଁର ଗଢ଼ଣ ସେ ଅଞ୍ଚଳର ଲୋକଙ୍କ ମୁହଁଠୁ ଯେତେ କିଛି ଅସ୍ୱାଭାବିକ ନ ହେଲେ ଅଣଓସାର କପାଳ, ଗାଲର ହାଡ଼ ଉଚ୍ଚ, ବସିଲା ପରି ନାକଦଣ୍ଡା, ଓସାର ମୁଣ୍ଡା ନାକ, ମୋଟା ମୋଟା ଓଠ, ହାଡୁଆ ଥୋମଣି, ପଟାପରି ଗାଲ ।

ସକାଳ ଆଠଟା ବାଜୁଛି, ଝରି ଟାଣ ଆସୁଛି, ଧୂଆ ପୋଛା ଚକ୍‌କଣ ନେଳି ଆକାଶ, ଖଣ୍ଡ ଖଣ୍ଡ ପୁଳାପୁଳା ଧଳା, ପାଉଁଶିଆ, କାଳିଆ ବଉଦ ଦୂରେଇ ଦୂରେଇ ବସୁଛନ୍ତି । ଏକାଠି ମିଶି ମାଡ଼ିଯିବେ କି ଲୁଆଡ଼େ ଅପସରିଯିବେ ବାରିହେଉ ନାହିଁ । ଖାଁ ଖାଁ ଖାଲି କ୍ଷେତ ଲଣ୍ଡା ଟାଙ୍ଗର ପଡ଼ିଆବାଟେ ଡେଙ୍ଗା ଗୋଡ଼ରେ ଲମ୍ବା ଲମ୍ବା ପାହୁଣ୍ଡ ପକାଇ ଯୁବକଟି ହାଲୁକା ଉଠାଣିଟାଏ ଚଢ଼ି ଆସି ଅଟକିଲା ଗୋଟିଏ ଗୋଟିଳିଆ

ଖପରଛୁଆଣି ଘର ଆଗରେ ଖଣ୍ଡେ ଦୂରରେ । ମୁଣିରୁ ଗାମୁଛା କାଢ଼ି ଝାଳ ପୋଛିଲା, ଅନାଇଁଲା, କେହି କୁଆଡ଼େ ନାହାଁନ୍ତି । ଡାହାଣପଟେ ଖଣ୍ଡେ ଦୂରରେ ଦିଶୁଛି ତେନ୍ତୁଳି ଗଛ, ଆମ୍ବଗଛ, ତା' ସେପଟେ ହଜାପୁଟ ଗାଁ ବସ୍ତିର ଏପଟରୁ କିଛି । କିନ୍ତୁ ଚଳପ୍ରଚଳ ଦିଶାରେ ପଡ଼ୁନାହିଁ । ଖାଲି ଏଠି ସେଠି କେଉଁଠି କେଉଁଠି ଛେଳି, ଗୋରୁ ଚରୁଛନ୍ତି । ଗୋରୁଗୁଡ଼ାକଙ୍କ ଧେଣ୍ଡପଡ଼ୁଛି, ଖାଲି ହାଡ଼ ଚମ । ଶ୍ରାବଣ ସରିବାକୁ ହେଲା । ଅଳ୍ପ କେତୋଟା ଦିନ ଗୁଡ଼ି ଗୁଡ଼ି ଅସରାଏ ଅସରାଏ ହାଲୁକା ବର୍ଷା ହୋଇଥିଲା, ତେଣୁ କିଛି କିଛି ଘାସ ଗଜୁରୁଛି । ବୁଲି ବୁଲି ସେଇଆକୁ ହାଣ୍ଟୋଉ ଥିବେ । ସୁବକଣ୍ଠି ଭାବିଲା—"ଅକାଳ ପଡ଼ୁଛି, ଲଗେ ଲଗେ ଦୁ'ବର୍ଷ ମରୁଡ଼ି, ଏ ଅଞ୍ଚଳରୁ ଲକ୍ଷ୍ମୀ ଗୁଡ଼ିପାଇଛି ।" ଯେଉଁ ଉତ୍ସାହରେ ସେ ଚାରି ମାଇଲ ଦୂରରୁ ଭୁକ୍ତାହାଣ୍ଡି ଗାଁରୁ ଚାଲି ଚାଲି ଆସିଥିଲା ତା' ଏଠି ଅଟକିଗଲା ।

ସାମ୍ନାରେ ଏ ଘରଟି ହଜାପୁଟର ପ୍ରାଥମିକ ବିଦ୍ୟାଳୟ, ଦୁଇ ବର୍ଷ ହେଲା ଏଠି ସେ ଶିକ୍ଷକ । ନାଁ ଶାମଘନ ବାଘ । ହରିଜନ ଜାତିର ଲୋକ ବୋଲି ସରକାରୀ ସାହାଯ୍ୟ ପାଇ ପାଇ ସରକାରୀ ଆବାସିକ ବିଦ୍ୟାଳୟରେ ପଢ଼ି ମାଟ୍ରିକୁଲେସନ୍ ପାସ୍ କରିଥିଲା । ତା'ପରେ ଶିକ୍ଷକ ହୋଇ ନିଯୁକ୍ତି ପାଇ ଏଠିକି ଆସିଲା । ଆଗ କିଛିଦିନ ଏଠୁ ଅଧ-ମାଇଲେ ଦୂରରେ କେନ୍ଦୁମୁଣ୍ଡି ଗାଁରେ ତା'ନିଜ ଜାତିର ଲୋକଙ୍କ ବସ୍ତିରେ ଜଣକ ପିଣ୍ଡାରେ ଖିଆ ବସାକରି ରହିଥିଲା, ତା' ଜନେତନ ଘର-ମାଲିକର ଘରେ ହିଁ ରହିଦିଏ, କିନ୍ତୁ ଦେଢ଼ବର୍ଷ ତଳେ, ଭୁକ୍ତାହାଣ୍ଡି ଗାଁରେ ସେ କୁଳଧର ଗଣ୍ଡା'ର ଏକମାତ୍ର ସନ୍ତାନ ସରସ୍ୱତୀକୁ ବିଭା ହେଲାପରେ ତାହାରି ଘରେ ରହି ସେଠୁ ଯା'ଆସ କରେ । ଏଠୁ ବାଟ ଚାରିମାଇଲ୍ । ଆଗେ ଚାଲି ଚାଲି ଆସୁଥିଲା, ତାକୁ ପାଖ ପାଖ ଦୁଇ ଘଣ୍ଟା ଲାଗେ । କିନ୍ତୁ ବର୍ଷେ ହେଲା ଶ୍ୱଶୁରର ଟଙ୍କାରେ ସେ ଖଣ୍ଡେ ପୁରୁଣା ସାଇକେଲ କିଣିଲାଣି, ଯଦିଚ ଖଣ୍ଡେ ଖଣ୍ଡେ ବାଟ ସାଇକଲଟାକୁ ଘୋଷାରିବାକୁ କି ଟେକିବାକୁ ପଡ଼େ । ଆଜି ସାଇକଲଟା ବି ଖରାପ ହୋଇଛି, ତହିଁରେ କୁଟିଦିନ । ସହଜେ ତ ଗୁଇତାଳେ ରହି, ଇସ୍କୁଲରେ ପାଠପଢ଼ି, ସେ ତା' ବାପଭାଇ ବନ୍ଧୁବାନ୍ଧବଙ୍କ ପରି ଖରାକାକର

ମାଟିକାଦୁଅରେ ବୁଲି କଠିନ ଦେହଶ୍ରମ କରିବାକୁ ଅଭ୍ୟସ୍ତ ନୁହେଁ କି ସେଥିପାଇଁ ତା' ଦେହ କି ମନ ପାଗ ହୋଇପାରି ନାହିଁ । ତା' ଛୁଟି ବି ସେତିକି ନୁହେଁ,—ତହିଁରେ ପୁଣି, ସାଇକଲ ଆଶ୍ରା ଧରିବା ଉପରୁ ସେ ମାଇଲିଏ ବାଟ ବି ଚାଲି ଚାଲି ଯିବାକୁ କୁଣ୍ଠ କୁଣ୍ଠ ହୁଏ । କିନ୍ତୁ ଆଜି ସେ ଖୁବ୍ ଉତ୍ସାହରେ ଚାଲି ଚାଲି ତା' ସ୍କୁଲକୁ ଆସିଥିଲି, କାରଣ ଆଜି ଅଗଷ୍ଟ ୧୫, ଭାରତର ସ୍ୱାଧୀନତା ଦିବସ । ଓ ତେଣୁ ଧାଇଁଆସିଛି, ଏଠି ପତାକା ଟେକିବ ବୋଲି । ଆଜି ସକାଳୁ ତା'ର ମନେପଡ଼ିଯାଉଛି, ପାଠ ପଢ଼ିବା ବେଳେ ସହରରେ ଆଜି ସେ ଯାହା ହେବାର ଦେଖିଛି, ବଡ଼ ସହରରେ ବି ଦି'ଥର ଦେଖିଛି, ଯାହା ହୁଏ ବୋଲି ରେଡ଼ିଓରୁ ଶୁଣିଛି, ଖବର-କାଗଜରେ ପଢ଼ିଛି ମନେ ମନେ ନିଜ କଳ୍ପନାରେ ନାନା ପ୍ରକାରରେ ରଙ୍ଗେଇ ବଢ଼େଇଚଆଁ ସ୍ୱପ୍ନ ଦେଖିଛି । ଉତ୍ସବ ଗହଳି, ବାଜା, ପଟୁଆର, ପ୍ୟାରେଡ୍, ପତାକା, ଭାଷଣ, ଆଶା, ସାହସ, ମୁକ୍ତି, ଅଭୟ, ଆନନ୍ଦ, ଉତ୍ତେଜନା । "ଜନଗଣମନ ଅଧିନାୟକ ହେ" ହିମାଳୟଠୁଁ କୁମାରିକା । ପୃଥିବୀର ବୃହତ୍ତମ ସ୍ୱାଧୀନ ଗଣତନ୍ତ୍ର ରାଷ୍ଟ୍ର । ସତୁରି କୋଟି ଭାରତୀୟ । ସ୍ୱାଧୀନ, ସ୍ୱାଧୀନ, ସ୍ୱାଧୀନ ।

ଭାରତରେ ଇଂରେଜ୍ ଶାସନ ଯୁଗ କେମିତି ଥିଲି ସେ ଦେଖିନାହିଁ । ସେ ଜନ୍ମ ହେବାର ଚଉଦ ବର୍ଷ ପୂର୍ବରୁ ସେ ଯୁଗ ସରିଥିଲି । ଓଡ଼ିଶାର ଗୋଟିଏ ଗଡ଼୍‌ଜାତ ଜିଲ୍ଲାରେ ତା' ଘର, କିନ୍ତୁ ରାଜୁଡ଼ା ଶାସନ ବି ସେ ଦେଖିନାହିଁ । ରାଜାଙ୍କ ପ୍ରଜା କେବେ ହୋଇନାହିଁ । ଶୁଣିଛି ତ କେତେ କଥା, ଆଗେ ଥିଲି, ତା' ଥିଲି ନା ସେକାଳର ଦୁନିଆଁ ତାକୁ କାହାଣୀ ପରି ଲାଗେ । ସତୁରି କୋଟି କ'ଣ ଲକ୍ଷେ ଲୋକଙ୍କୁ ଏକାଠି ସେ କେବେ ଦେଖିନାହିଁ । ତା' ଜିଲ୍ଲାମହକୁମା ଦେଖିଛି, ଜିଲ୍ଲା ବାହାରକୁ କେବେ ଯାଇନାହିଁ । କିନ୍ତୁ ପଢ଼ି ଶୁଣି ଜାଣିଛି ବାହାର ବିଷୟରେ । ସେ ଜାଣିଛି ଆଜି ଦେଶରେ ଗୋଟାଏ ଯୁଗ ବଦଳିଥିଲି, ଆଜି ଗୋଟିଏ ପତାକା ତଳେ ଠିଆହେଲା ଗୋଟିଏ ବିଶାଳ, ସ୍ୱାଧୀନ ରାଷ୍ଟ୍ର ।

ଆଉ ସେ ମନେ ମନେ ଦେଖୁଥିଲି ସେପରିକି ତା' ପ୍ରାଥମିକ ବିଦ୍ୟାଳୟ ଆଗରେ କେଉଁଠି ଖୋଲା ଜାଗାରେ ବାଉଁଶଟିଏ ପୋତା

ହୋଇ ଜାଣିପୁ ପତାକାଟିଏ ଉଡ଼ା ହେବ । ସେହି ପତାକାତଳେ ସେହି ବିଶାଳ ସ୍ୱାଧୀନ ଗଣତନ୍ତ୍ର ରାଷ୍ଟ୍ରର ପ୍ରତିନିଧି ହୋଇ ଠିଆହେବ ସେ । ଶିକ୍ଷକ ଶାମଘନ ବାବୁ, ତା' ଆଗରେ ଧାଡ଼ିକି ଧାଡ଼ି ହୋଇ ଠିଆ ହୋଇଥିବେ ସାନ ସାନ ପିଲମାନେ । ଲୋକେ ଦେଖୁଥିବେ, ସମ୍ପ୍ରଦାୟ ଭାରତ ମହାନ ସେଠି ସେମାନେ ଏକ ଧ୍ୟାନରେ ମିଳିତ ହେବେ । ପତାକାକୁ ସମ୍ମାନ ଜଣାଇଁ ଦେଶରେ ମଙ୍ଗଳ ପାଇଁ ଭଗବାନଙ୍କୁ ଡାକିବେ । ତେଣୁ ସେ ଉତ୍ସାହ ଓ ଉଚ୍ଛ୍ୱାସରେ ଧାଇଁ ଆସିଥିଲା । କିନ୍ତୁ ଏଠି ପହଞ୍ଚି ଦେଖୁଛି କେହି କୁଆଡ଼େ ନାହାନ୍ତି, କାହିଁ ଆମ୍ରତୋରଣ ? କାହିଁ ପତାକା ଟାଙ୍ଗିବାକୁ ଖଣ୍ଡେ ବାଉଁଶ ବି ?

ସେ ସ୍କୁଲ ଘର ପିଣ୍ଡାକୁ ଉଠିଗଲା, ତାଲା ଖୋଲିଲା, କବାଟ ଝରକା ଖୋଲିଲା । ଅନ୍ୟଦିନ ଏତେବେଳେ ଆଗରୁ ପିଣ୍ଡା ଉପରେ, ପିଣ୍ଡାତଳେ ରୁଣ୍ଡିଥାନ୍ତି ତା ଆଠ । ସେ ଆସିବ ବୋଲି ଅପେକ୍ଷା କରି ରହି ପାଟିତୁଣ୍ଡ କରୁଥାନ୍ତି । ସେହିମାନେ ଘର ଭିତର ଓ ପିଣ୍ଡା ଓଳାନ୍ତି । ଏକାଠି ଠିଆହୋଇ ପ୍ରାର୍ଥନା ଗୀତ ବୋଲନ୍ତି । ସେ ତାଙ୍କୁ ଗୀତ ବୋଲାଏ, ପଢ଼ାଏ, ଖେଳାଏ, କେବେ ପିଠେ ନାହିଁ କି ଗାଳି ଦିଏ ନାହିଁ, କେତେ ପ୍ରକାରେ ବୁଝାଏ, କେତେ ଗପ କହେ, ଖେଳ ଶିଖାଏ, ସେମାନେ ତାକୁ ଭଲ ପାଉଥିଲେ ।

ସେ ଏଠିକି ଆସିଲାବେଳେ ପଢ଼ିବାକୁ ଆସୁଥିଲେ ଚାଳିଶି ଡିରିଶିଟି ପିଲା, କିନ୍ତୁ କ୍ରମେ କ୍ରମେ ଦେଖୁଛି, ପିଲା କମୁଛନ୍ତି । ଯେତିକି ଯେତିକି ଅଞ୍ଚଳଯାକ ମରୁଡ଼ି ଓ ଅଭାବର ଦାଉ ବେଶି ବେଶି ବାଧୁଛି ସେତିକି ସେତିକି ସେମାନେ କମୁଛନ୍ତି । କାରଣ ବି ସେ ଜାଣେ, ପିଲାଙ୍କୁ ଡାକିବାକୁ ତାଙ୍କ ବାପ ମା'ଙ୍କୁ ଦେଖେଇବାକୁ, ମଝିରେ ମଝିରେ ସେ ଗାଁ ଗାଁ ବୁଲେ । ସେମାନେ ଖାଦ୍ୟ ଖୋଜିବାକୁ କୁଆଡ଼େ କୁଆଡ଼େ ଚାଲିଯାଆନ୍ତି, ନହେଲେ ବଡ଼ ବଡ଼ମାନେ ଗଲେ ପିଲାଙ୍କୁ ଜଗେଇ ଦେଇଯାଆନ୍ତି ସାନ ଛୁଆଙ୍କୁ, ବା କିଛି ବୋଲି ବରଗି ଦେଇଯାଆନ୍ତି ଯହିଁରେ ପରିବାର ଲାଗି ଖାଦ୍ୟ ସଂଗ୍ରହ ପାଇଁ ଯାହା କିଛି ହେଲେ ସାହାଯ୍ୟ ମିଳିବ । ବୁଲି ବୁଲି କେଉଁଠୁ ଶାଗଟାଏ, ପତ୍ରଟାଏ, ଫଳଟାଏ ତୋଳି, କି ମୂଳଟାଏ ଖୋଳି,

ଯାହାକର । ଲୋକ ଜଳୁଥିଲେ କଏ ଯାଏ ପାଠ ପଢ଼ି ? ବଜାପୁର, ବୃନ୍ଦଲ ଓ ଭଲୁଟଖାଲ ଏମିତି ପାଖ ପାଖର ତିନୋଟି ଗାଁରୁ ପିଲା ଏଠିକି ପଢ଼ିବାକୁ ଆସନ୍ତି । ଅଧିକାଂଶ ଲୋକ ଗରିବ, ଭୂମିହୀନ, ସାନ ଚାଷୀ, ଭାଗ ଚାଷୀ, କ୍ଷେତମଜୁରିଆ ସେମାନେ । ପ୍ରାୟ ସମସ୍ତେ ହରିଜନ ବା ଆଦିବାସୀ । ଅଳ୍ପ କେତେଜଣଙ୍କର ହିଁ ବେଶି ଜମି, ପାଞ୍ଚ ଛ' ଘର ଶୁଣ୍ଡି ମହାଜନ, ବନ୍ଦଘର ଶୋକଖଣ୍ଡିଆ ମଉଡ଼, ଗୁରୁ ପାଞ୍ଚ ଘର ଚଷା ଜାତିର, ମେଣ୍ଡକ । ସାତ ଆଠଟି ପିଲା ସେହିମାନଙ୍କ ଘରୁ ଆସନ୍ତି, ବେଶି ଥର ଅନୁପସ୍ଥିତ ରହନ୍ତି ନାହିଁ ।

ଆଜ ଦିନଟି ବିଷୟରେ ଆଗରୁ ସେ କହିଛି, କାଲି ବି ଯେଉଁ ଆଠଟି ପିଲାଥିଲେ ତାଙ୍କୁ ସେ କହିଥିଲା । ଅନ୍ୟପିଲାଙ୍କୁ କହିବାକୁ ଗାଁରେ ସମସ୍ତିଙ୍କୁ କହିବାକୁ ତାଙ୍କୁ ବରଗିଥିଲା । ତା' ଆଗରୁ ନିଜେ ଗାଁମାନଙ୍କରେ ବୁଲି ବୁଲି ଲୋକଙ୍କୁ ବୁଝାଇଥିଲା, "ପତାକା ଉଠାହେବ, ଆସିବ ସମସ୍ତେ । ଯେଇଠି ଏକାଠି ପର୍ବ କରିବ । ଆରେ, ଅକାଳ ତ ପଡ଼ିଛି, ଏମିତି କେତେ ଅକାଳ ଯାଇଛି, ଭଗବାନ ଦୟା କଲେ ଆଉ ବି ଦିନେ ନଥିବ । ଲୋକ କାହିଁକି ସରକାରଙ୍କୁ ବାଧିଛି । ତା' ବୋଲି ଆମ ମା'କୁ ଭୁଲିଯିବା ? ଆମ ଦେଶକୁ ଭୁଲିଯିବା ? ପତାକା ଉଡ଼େଇଣ ସେହି ଆମ ଦେଶ ମା'ର ପୂଜାହେବ । ଆମ ସ୍ୱାଧୀନତାର ପୂଜା । ଦେଶଟା ସ୍ୱାଧୀନ ହେଲାର ବୋଲି ଆମେ ସମସ୍ତେ ମଣିଷ ବୋଲି ଗଣା ହେଉଛୁ । ତା' ଆଗରୁ ସବୁ ତ ଅନ୍ଧାର ଥିଲା, ବିଦେଶୀ ଇଂରେଜ ଶାସନ ଥିଲା, ଦେଶୀ ରଜା ମହାରଜା ଜମିଦାର ଗୌନ୍ତିଆଙ୍କ ରାଜୁତି ଥିଲା । ସମସ୍ତଙ୍କୁ ସେମାନେ ଚେପି କରି ରଖିଥିଲେ, ଖାଲି ଲୁଟୁଥିଲେ, ଶୋଷୁଥିଲେ, ଅତ୍ୟାଗୁର କରୁଥିଲେ । ଦେଶ ସ୍ୱାଧୀନ ହେବାରୁ ଯିନା ଆମର ଯାହାକିଛି ଭଲ ହେଲା, ଆହୁରି ହେବ, କେତେ କ'ଣ ହେବ । ଦେଶ ଆମର ହେଲା, ଆମେ ଭୋଟ ଦେଉଁ, ଆମର ଭୋଟରେ ସରକାର, ଏତେ କ୍ଷମତା ଏତେ ଅଧିକାର ଆମ୍ଭକୁ ସେହି ସ୍ୱାଧୀନ ପତାକା ତ ଆଣିଦେଲା, ଆଉ କଏ ?"

"ହଇ ହଇ" "ସତ ସତ" କେହି କେହି କହିଥିଲେ । "ଆଉ ଏ ଯେଉଁ ଇସ୍କୁଲଟି ବସିଛି, ସେଇଟା ଜାଣ ତମର ବଡ଼ ମର୍ଯ୍ୟାଦା, ସେଇ

ରଖିଛୁ ତମ ଟେକ । ପାଠ ନ ପଢ଼ିଲେ ବୁଦ୍ଧି ହେବ ନାହିଁ, ଆଖି ଫିଟିବ ନାହିଁ । ପାଠପଢ଼ି ସିନା ସମସ୍ତେ ବଡ଼ ହୁଅନ୍ତି, ତୁମ ପିଲାଏ ବ ହେବେ । କିଛି ନଥିଲା, କେତେଜଣ ତ ବାହାରିଲେ । ଆସ୍ତେ ଆସ୍ତେ ଆଲୁଅ ଫିଟିବ ।"

"ହୋଇ ହୋଇ, ସତ ସତ, ହେଲେ ଗୁରୁ ଯାହା ଅବା ଟିକିଏ ଚଳୁଥିଲା, ଏବେ ବ ଘରେ ଖାଇବାକୁ କିଛି ନାହିଁ । ହାଣ୍ଡି ଖାଲି । କେତେ କେତେ ଲୋକ ଦିନ ଦିନ ଉପାସ । ନା କାମ ଧନ୍ଦା ମିଳୁଛି, ନା କେହି ମାଗିଲେ ଦେଉଛି, ଶୁଖି ଶୁଖି ମରିବା କଥା ସିନା । ଘର ଘର କୁଆଡ଼େ କୁଆଡ଼େ ପଳାଇ ବସିଲେଣି ।"—ଏପରି ବ କେତେ ଲୋକ କହୁଥିଲେ । ସେମାନେ ଆସିବେ ନାହିଁ, କିନ୍ତୁ ତା' ବୋଲି କେହି ଆସିଲେ ନାହିଁ ।

ନାଃ ! ସତେ ଯେମିତି ଉତ୍ସବଟା ତାର ! ଏମାନଙ୍କର କୁହେଁ । ତା' ମନରେ ଅଭିମାନ ଆସିଲା ।

ଘର ଭିତରେ ଗୁଞ୍ଜୁଣିଟିଏ ଥିଲା । ସେ ନିଜେ ଚଟାଣଟି ଓଳେଇ, ପିଣ୍ଡା ଓଳେଇଲା । ଘର ଭିତରେ କାଠ ବାକ୍ସଟିଏ ଥିଲା, ତାକୁ ଖୋଲି ତା' ଭିତରୁ ଛୋଟ କାଗଜ ପତାକାଟିଏ କାଢ଼ିଲା । ତାକୁ ଧରି ମୁଣ୍ଡରେ ଲଗାଇ, ଠିଆହୋଇ ସାମ୍ନାକୁ ଚାହିଁ ଧୀରେ ଧୀରେ ବୋଲିଲା, "ଜନଗଣମନ ଅଧିନାୟକ ହେ—" । ଥୋଇଦେଇ ଗୋଡ଼ତଳେ ପଡ଼ିଲା । ମନ ମାନିଲା ନାହିଁ । ପତାକାଟିକୁ ସେ ଟେକିବ । ବାଜିଣ ନାହିଁ ? ଖୋଲିବାକୁ କ'ଣ କାହିଁ ? ସେ ପତାକାକୁ ବାକ୍ସରେ ଥୋଇଦେଲା । କବାଟ କିଳି ଚାଲିଲା ବଜାପୁଟ୍ ଗାଁକୁ ।

ଗାଁ ଏ ମୁଣ୍ଡରୁ କେଉଁ ସ୍ତ୍ରୀଲୋକର ବିକଳ କାନ୍ଦଣା ଶୁଭୁଛି । ଘରେ ଘରେ ତାଟି ପଡ଼ୁଛି, କେହି ନାହାନ୍ତି । ଗୋଟିଏ ଘର ଆଗରେ ତିନି ଚାରିଜଣ ବୁଢ଼ୀ ଜଣେ ବୁଢ଼ା ଗହଳ କରିଛନ୍ତି । ଘର ଭିତରୁ ଶୁଭୁଛି କାନ୍ଦଣା । "କ'ଣ ହେଲା ମଉସା ?"

"ଆଉ କ'ଣ ହେବ ? ତା' ପୁଅ ପାଏନ୍‌ବୁଢ଼ି ଆଜ ସକାଳୁ ମରିଗଲା । କାଲି ବିହେଳରେ ରକ୍ତଝାଡ଼ା ଧରିଲା, ଆଜ ସବୁ ସରିଗଲା ।"

"ଶିବର ପୁଅ ପାଏନ୍‌ବୁଢ଼ି ? ଇସ୍କୁଲରେ ତ ପଢ଼ୁଥିଲା, ଏବେ କେତେଦିନ୍ଦୁ ଆସି ନ ଥିଲା । କେତେଥର ମୁଁ ଡକେଇ ପଠେଇଲି ସେ ପିଲାଏ କହିଲେ 'ତା' ଭେଟ ପାଇଲେ ନାହିଁ । ତା' ବାପକୁ ବ ପାଇଲି ନାହିଁ । ସେଇ ପାଇନ୍‌ବୁଢ଼ ମରିଗଲା ! ଆହା ।"

"ସେଇ ବାବୁ । ଦେଖୁଚ ତ, କେଡ଼େ ଅକାଳ ପଡ଼ିଚ, କୋଉଠୁ କ'ଣ ଖାଇବାକୁ ମିଳୁଚ ? ନା କ'ଣ କାମଧନ୍ଦା ମିଳୁଚ ଯେ ମୂଲ ଆଣି କୋଉଠୁ କିଣି ଖାଇହବ ? ସକାଳୁ ଉଠିଲେ ଖୋଜ ବୁଲ, କୋଉଠୁ କ'ଣ ମିଳିଲେ ପେଟରେ ଯାହାହେଲେ ପଡ଼ିବ, ପତ୍ର କ ଡାଳ କ ମୂଳ, ଯାହା କିଛି । ସେଥିଲାଗି ପିଲା ବ କୁଆଡ଼େ କୁଆଡ଼େ ବୁଲୁଛନ୍ତି, ବଡ଼ ତ ସହଜେ । ଏବେ ଦେଖ ଯେ ତା ବାପ କ'ଣ ଖୋଜ ଆଣିବ ବୋଲି ପାଞ୍ଚ-ଦିନ ହେଲା ଗଲାଣି ଯେ ଯେ ସିଆଡ଼େ । ଆଉ ଏ ପିଲାଟା, ଶିବ, ଯେମିତ ବୁଲୁଥିଲା । ଠାଏ କୋଉଠି ଦେଖିଲା ଯେ କେତେଜଣ ବସି ବଲୁଅକଦା ସିଝାଉଥିଲେ । ବଡ଼ ଖରାପ ସେଇଟା ବାବୁ । ସହଜେ ତା' ବିଷ ଯାଏ ନାହିଁ, ଖାଇଲେ ରକ୍ତଝାଡ଼ା ହୁଏ । ବଣବୁଦାରେ ଖାଇବା କନ୍ଦାବ ତ ମିଳୁନାହିଁ, ଖୋଳ ଖୋଳ ସବୁ ସରିଲାଣି । ପାଇନ୍‌ବୁଢ଼ ପିଲା ବ ସେ ଲୋକଙ୍କ ପାଖେ ବସିରହିଲା, ସେଇ ବଲୁଅକଦା ସିଝାରୁ ପୂରାଏ ଖାଇଥିଲା, ଘରକୁ ଆସି ରକ୍ତଝାଡ଼ା ଧରିଲା । ଦି'ଟା ଦିନ ତ, ଆଜ ସକାଳୁ ସବୁ ସରିଗଲା ।"

ବୁଢ଼ାଟି କଂକାଳସାର, ନଇଁ ପଡ଼ିଲାଣି; ବୁଢ଼ୀ ଡନାଟି ବ ହାଡ଼ ଚମର ପ୍ରେତରୂପ, ମୁହଁରେ କଥା ନାହିଁ, ଖାଲି ନବୋଧ ଆଖିରେ ତା' ମୁହଁକୁ ଅନାଇଁ ରହିଛନ୍ତି ।

ବୁଢ଼ା ଟିକଏ ରହି ପୁଣି କହିଲା, "କ'ଣ ଅଛି ଖାଇବାକୁ ଦବୁ କ ଗୁରୁ ? ଦି'ଦିନ ହବ ମୋ ପେଟରେ କିଛି ପଡ଼ି ନାଇଁ, ଭୁକ୍ତା ପାଣି

ପିଇ ପିଇ ଏ ପ୍ରାଣ ରହୁନାହିଁ । ବଳ ତ ପାଉ ନାହିଁ, ନଇଲେ ବି ନୂଆଦେଉ ପଳାନ୍ତିଣି ।”

ଶାମଘନ ଦୀର୍ଘଶ୍ୱାସ ପକାଇ ବୁଲିପଡ଼ି କହିଲା, “କଷ୍ଟ ଆଣି ନାହିଁ ବୁଡ଼ା ।” ସେ ଚାଲିଆସିଲା । ମରିଥିବା ପିଲାଟିର ମୁହଁ, ତା’ ଚେହେରା ଆଖି ଆଗେ ଆଗେ ଥାଏ, ପଛରେ ଥାଏ ତା ମା’ର ବିକଳ କାନ୍ଦଣା । ତା’ ମନରେ ଶୋକ ଘୋଟିଥାଏ, ତା’ ସହିତ ଘୁଙ୍ଗାରୁଥାଏ ନିଜେ କ’ଣ ଗୁରୁତର ଅପରାଧ କରିଥିଲା ଭଳି ଅନୁଶୋଚନା, ଲଜ୍ଜା ଓ ଭୟ । ଆଉ ମନ ନଥାଏ ସେ ଯିବ ପତାକା ଟେକିବାକୁ ଲୋକଙ୍କ କ ବାଉଁଶ ଓ ଖାବଳ ମାଗି । ସେ ସ୍କୁଲଘର ଆଡ଼କୁ ଲେଉଟି ଚାଲିଲା । ଲାଗୁଥାଏ ଯେପରି ପଛରୁ ତଣ୍ଟି ଆମାରି ତାକୁ ତଡ଼ୁଛି କ’ଣ ଗୋଟିଏ ପରାଜୟର ଗ୍ଲାନି, ହତାଶା । ତା’ ପାଇଁ ସେ ସକାଳଟା ପାଲଟିଗଲା ମଗ୍ଣଟିଆ, ରଙ୍କାଳିଆ, ଖୋଲାମରା ଜ୍ୟେଷ୍ଠର ଦିପହର ।

ସେ ସ୍କୁଲ୍ ଘରର ଝରକା କବାଟ ବନ୍ଦକଲା । ପତାକାଟିକୁ ସଯତ୍ନରେ ବାକ୍ସରେ ଥୋଇ ଦେଇଛି । ଘଣ୍ଟା ଦେଖିଲା, ସାଢ଼େ ନଅଟା । ମନେପଡ଼ିଲା, ଆଜିର ପ୍ୟାରେଡ଼୍ ସରିଥିବ, ଦେଶର ଚାରିଆଡ଼େ ଉଡ଼ୁଥିବ ସ୍ୱାଧୀନ ଭାରତର ପତାକା, ଧୁମ୍‌ଧାମ୍, ହର୍ଷୋଲ୍ଲାସ କେତେଠି ଲାଗି ରହିଥିବ ।

ସେ ପିଣ୍ଡାରୁ ଓହ୍ଲାଇ ଚାଲିଲା, ତା’ ଶ୍ୱଶୁର ଘରକୁ ଏଠୁ ଚାରି-ମାଇଲ୍ ଦୂର ଚକ୍ରାହାଣ୍ଡି ଗାଁକୁ ଫେରିଯିବ । ମନେପଡ଼ିଲା, ସବୁଦିନ ପରି ଆଜି ବି ତା’ ଶ୍ୱଶୁର କୁଳଧର ଗଣ୍ଡା ଘରେ ନଥିବ । ତା’ର ଚାରିମାଣ ଜମି, ହଳେ ବଳଦ, ଶୁଖାମରୁଡ଼ି ଯୋଗୁଁ ତା’ର ଚାଷ ବନ୍ଦ ଅଛି ସତ, କିନ୍ତୁ ଚାଷଛଡ଼ା ମଲାଗୋରୁ ଚମଡ଼ା ସଂଗ୍ରହ କରି ବୁହାଇ ନେଇ ବେପାରୀ ଗୋଦାମରେ ବିକିବା ବି ତା’ର ଗୋଟିଏ ଧନ୍ଦା । ଖାଇବାକୁ ନ ପାଇ ଯହୁଁ ଯହୁଁ ବେଶି ବେଶି ଗୋରୁଗାଈ ମରୁଛନ୍ତି ତା’ର ସେ ବେଉସା ସାଜିଛି । ଘରେ ଥିବେ ଶାଶୁ ଓ ସରସତୀ । ସରସତୀ ଏଥର ମା’ ହେବାକୁ

ବସିଲ୍‌ଣି । ସେ ହେବ ବାପ । ତା'ର ଗୃକର ଖଣ୍ଡିକ ଅଛି, ତା' ପାଇଁ କୁଳଧନର ଯାହାକଛି ସପତ୍ତିବାଡ଼ ଅଛି । ତା'ର ଆଶ୍ରୟ ଅଛି ।

ସ୍କୁଲଘରୁ ଡ଼ିପ ଉପରୁ ତଳକୁ ଓହ୍ଲାଉ ଓହ୍ଲାଉ ତାକୁ ମନେ ମନେ ବଣିଗଲା ଯେପରି ପିଲାଏ ପଢ଼ିବାକୁ ଆସୁଛନ୍ତି, ଆଗେ ଆଗେ କୁଦା ମାର ମାର ଆସୁଛି ଚାଇନ୍‌ବୁଢ଼ । ଶାମଘନ ଚରତର ହୋଇ ବାଟ ଧରିଲା ।

'ଅମୃତାୟନ' ପୂଜାସଙ୍ଖ୍ୟା ୧୯୮୫



# ବଂଶଧର

ସୁରର ଦ କାନ୍ଧ ଥରଉଠିଲା; ପିଠି ଉଠିଲା ପଡ଼ିଲା, ସେ ଆହୁରି ତଳକୁ ଝୁଙ୍କି ପଡ଼ିଲା ।

ତା ବୋଉ ସୁନାଦେଈ ପାଟିକରି କହିଲେ, "ଥାଉ ଥାଉ ବହୁତ କହିଲଣି: ଆସ ଖାଇବ ଆସ, ମୁଁ କାମ ସାରେ ।"

"ନା ମୁଁ ଯିବନାହିଁ । କୁଆଡ଼େ ଗଲା ସତ, ସଚ୍ଚୋଟପଣ, ସଚ୍ଚରିତ୍ରତା, ସାଧୁତା, କର୍ତ୍ତବ୍ୟନିଷ୍ଠା, ନା ମୋ ପୁଅ ହବ"—

ସୁନାଦେଈ ରାଗରେ ଗର୍ଜିଲେ, ହ—ଉ ତେବେ ଖାଅ ତାକୁ, କେଣ୍ଟା କେଣ୍ଟା କରି ଖାଅ । ମତେ ବି ମାରିପକା । ଛୁଆପିଲାଗୁଡ଼ାଙ୍କ ନଣ୍ଟି ଚିପିଦିଅ । ଘରକୁ ଜାଳିଦିଅ, ନଇଲେ ତୁମର ତୁମେସବୁ ଥାଉ; ମୁଁ କୁଆଡ଼େ ଯାଉଛି ।

ସୁର ବେକ ଟେକିଲା, ତଥାପି ପଛକୁ ଅନାଇଲା ନାହିଁ । ହରିବାବୁ ବକର ବକର ହୋଇ ଚାଲିଗଲେ ।

ସୁନାଦେଈ ସୁରର ପିଠି ଆଉଁସି ଆଉଁସି କହିଲେ—

"ଆରେ ସୁର, ଖାଇବୁ ଆ—"

ସୁର କିଛି କହିଲା ନାହିଁ ।

"ଆସିଲୁ ? ଉଠ୍ ଲୁଗା ବଦଳ । ଆ—"

ସୁର ବି' ଧଇଲା ପରି କହିଲା—"ନାଇଁ-ନାଇଁ-ନାଇଁ ।"

"ଆରେ ବାପାଙ୍କ କଥାରେ ରୁଷ୍‌ନା ରେ ସୁର ! ରାଗିଲେ ସେ ଯାହା ମନ ତା କହିପକାନ୍ତି, ଆଉ ପରକୁ କଛି ମନେ ନ ଥାଏ । କେବେ ଅନାନ୍ତି ନାହିଁଟି, ପୁଣି ଦନେ ଦନେ କ'ଣ ହୋଇଯାଏ ଯେ ଅବତରନ୍ତି । ଆଜ ଅଫିସ୍‌ରେ କ'ଣ ହୋଇଥିବ; ମନ ବ୍ୟସ୍ତ ଅଛି କଏ ଜାଣେ ? ଭୁ ଆ—"

ସୁର ଠିଆହୋଇପଡ଼ି ତା ବୋଉକୁ ଅନାଇଁଲା । ଲମ୍ବା ବାଳ ତା ଗୋଲ ମାଉଁସିଆ ମୁହଁ ଉପରେ ବଞ୍ଚିହୋଇ ପଡ଼ିଛି । ଆଖି କଯର କଯର । ପାଗଳର ମୁହଁପରି ମୁହଁ ଥମଥମ ଦଶୁଛି । ଯେତେ ଯେମିତ କୁଆଡ଼କୁ ଦୃଷ୍ଟି ନାହିଁ, ଖାଲି ନଜ ଭିତରକୁ । ଏବେ ବି ପିନ୍ଧିଛି ଚପା ପ୍ୟାଣ୍ଟ୍, ହାଓ୍ୱାଇନ୍, ଯେଉଁ ବେଶରେ କଲେଜରୁ ଫେରିଥିଲା, ସେହି ବେଶରେ ବୁଲି ଯାଇଥିଲା । ହୃଷ୍ଟପୁଷ୍ଟ ଢେଙ୍ଗା ଯୁଆନ୍ ସୁର । ସୁନାଦେଈ ଦେଖୁଥିଲେ—ପଚିଶି ବର୍ଷ ତଳେ ତା ବାପା ବି ଦଶୁଥିଲେ ଠିକ୍ ଏମିତ ।

ସୁର ଭିତରକୁ ହୋଇ ଚାଲି ଯାଉ ଯାଉ କହିଲା, "ମୁଁ ଖାଇବି ନାହିଁ, ମୁଁ ଶୋଇବି ।"

ସୁନାଦେଈ ମୁହଁ ଶୁଖାଇ ତାଙ୍କ ସ୍ୱାମୀଙ୍କ ପାଖକୁ ଚାଲିଗଲେ ।

ଶୋଇବାଘର ଅନ୍ଧାର କରି ସୁର ବଛଣାରେ ପଡ଼ିଥାଏ । ସେ ପଙ୍ଖା ବି ଖୋଲି ନାହିଁ, ମଶା କାମୁଡ଼ୁଥାନ୍ତି । ସେ ଆପଣା ମନର ଯନ୍ତ୍ରଣାରେ ଛଟପଟ ହେଉଥାଏ । ଲାଗୁଥାଏ ସେ ଅତ୍ୟାଚାରିତ, ଅପମାନିତ, ଆଉ ସେ ସହିପାରିବ ନାହିଁ । କ'ଣ କାହାର ସେ କଲା ? କେବେ ? ଖାଲି ବଞ୍ଚିବା ବି ଅପରାଧ ! କେହି ତେବେ ସ୍ୱୀକାର କରନ୍ତି ନାହିଁ ଯେ ଆଦୌ ଅଛି ବୋଲି । ଯତେ ଯେମିତ ସେ ପବନରେ ଏକର-ସେକର ହେଉଥିବା ଛିଣ୍ଡାକାଗଜ ଖଣ୍ଡେ ! ଥିଲେ କି ଗଲେ କାହାର କଛି ଯାଏଆସେ ନାହିଁ ।

ସେ ଅଛି ବୋଲି ଦୁନଆଁ ଭାବିବ ଖାଲି ତାକୁ ଛିଣ୍ଡା ଅଳିଆ କାଗଜ ବୋଲି କହିବା ପାଇଁ, ତାକୁ ଦୋଷଦେବା ପାଇଁ, ଗାଳିଦେବା ପାଇଁ,—ଏଇ ବାପା ହିଁ ତ ସେ ଦୁନଆର ମୁଖପାତ୍ର !

କ'ଣ ଅଛି ଏପରି ଜୀବନରେ ? ମଣିଷ କାହିଁକି ବଞ୍ଚିବ ? କାହାକୁ ବିଶ୍ୱାସ ? କେଉଁ ସୁଖ ? କେଉଁ ଆଶା ? କିଏ ଭଲ ? କିଏ ଖାଣ୍ଟି ?

ସୁରର ଆଖି ଆଗରେ ବାରମ୍ବାର ତା'ର ଅଠର ବର୍ଷର ଅନୁଭୂତିରେ ଗଢ଼ା ଜୀବନ—ଅନୁଭୂତିର ମୂଲ୍ୟାଙ୍କନ ଘଟୁଥିଲା, ଲାଗୁଥିଲା ସବୁ ତୁଚ୍ଛ, ନିରର୍ଥକ, ଜଞ୍ଜାଳ । ଏ ଜୀବନ ଗଲେ ଭଲ ।

ତା ମୁଣ୍ଡ ଭିତର ଝାଇଁ ଝାଇଁ ହୋଇଯାଉଥାଏ । କାନରେ ବାଜିଲା, ଆର ଘରେ ତା ବୋଉ ତା ବାପାଙ୍କ ଆଗରେ କହୁଛି, "ହଉ, ତୁମେ ଯାହା ଧରିଥିବ ସେଇଆ, ମୋ କଥା ତ ତୁମକୁ ରୁଚିଲା ନାହିଁ, ପଛେ ବୁଝିବ ସେ !"

"କଣ ଆଉ ବୁଝିବ ?"

"ବିନା ଦୋଷରେ ତେମେ ପିଲାଟାକୁ ଯାହାପାରି ତା କହିଗଲ; ମଜଫୁଲରେ ତେମେ ପୋକ ପକାଇବ ! ରାଗିଲେ ତ ତୁମେ ଅନ୍ଧ । ସବୁ ପିଲା ବୁଲନ୍ତି ଖେଳନ୍ତି ନା ସେ ଏକୁଟିଆ ? ସାନପିଲା ହୋଇଛି ? ମୋ ପରି ବି. ଏ. ପଢ଼ିଲାଣି, ତାର ମାନସମ୍ମାନ ନାହିଁ ? ବୁଦ୍ଧିବିବେକ ନାହିଁ ? ସେ ତାର ଦାୟିତ୍ୱ ଭୁଲେଇବ ନାହିଁ । ମଣିଷ ହେବ ନାହିଁ ? ସେ କ'ଣ ପଢ଼ୁନାହିଁ ?" ସୁର କାନ ଡେରିଲା ।

"ହଃ ! ପଢ଼ିଲେ ହେଇଗଲା ! ଫେଲ୍‌ଫାଲ୍ ହୋଇ କ'ଣ ହେବ ସେ !"

"ତା କର୍ମରେ ଯାହା ଥିବ, ହେବ । ନ ହେଲେ ଦେଖ ଦେଖ ପିଲା ତ ପାସ୍ କରି ନିକମା ହୋଇ ବସିଛନ୍ତି । ତୁମେ ଆମେ କର୍ମ ଦେଇ-ପାରିବା ? ତୁମେ ଯେ ଏଡ଼େ ଟାଣ ଟାଣ କଥାଗୁଡ଼ାଏ ତାକୁ କହୁଚ, ସେଥିରେ ତାର କି ଉପକାର ହେବ ?"

"ଚରିତ୍ର—"

"ରଖ ସେ ଚରିତ୍ର-ଫରିତ୍ର ଲମ୍ବା ଲମ୍ବା କଥା । ପିଲାଙ୍କର କ'ଣ ଆଖି ନାହିଁ, କାନ ନାହିଁ ! ବଡ଼ଠୁ ସାନ ଯାକେ କେଇଟା ମଣିଷଙ୍କ ଚରିତ୍ର ଦେଖି ତାଙ୍କର ଭକ୍ତ ହେଉଛି । ତୁମେ ପରି ନିଜେ କହ ।"

"ମୁଁ କହେ !"

"ଆଉ କଣ ମୁଁ କହେ । ପଦା ହାଲଗୁଲ ସବୁ ତ ଗୋଟି ଗୋଟି କରି କହ; ଆମେ ଶୁଣୁଁ । ସବୁ ସତ, ସତକଥା । ଯେତେ ବଡ଼ ବଡ଼-ଲୋକେ, ଯାହାଙ୍କଠୁ ଅନ୍ୟମାନେ ଶିଖନ୍ତେ, ତାଙ୍କ ସଇତାନ କଥା ତୁମେ ଏତେଥର ବୁଝେଇଚ, ଆଉ ଆଜ କହୁଚ ! ମା ଲୋ ! ଏ ଦୁନଆରେ ଯେମିତି କ ମିଛ, ଟେଣ୍ଟ ସଇତାନ ନ କରି କେହି ବଞ୍ଚି ପାରୁନାହିଁ ! ଆଉ ଯେ ସେ ବାଟେ ନଯିବ,—ଯେମିତି ତୁମେ,—ତାକୁ ସମସ୍ତେ ଏକଘରକିଆ କଲଭଳ କରିବେ, ସବୁ ପାହାର ତାରି ମୁଣ୍ଡ ଉପରେ । ହେଲ, ଆମ କର୍ମ । କଳଯୁଗ ଯେ !"

"ତା ହେଲେ ମୋ ସୁର ଚଲ୍କ ଯିବ ?"

"କାହିଁକି ତୁମେ ବୁଝିପାରୁନା ? ତାର କେଉଁ ଗୁଣ ଖରାପ ? ମୁଁ ତ ଜାଣେ ଆଜକାଲିକା ପିଲାଙ୍କ ତୁଳନାରେ ସେ ଶତେ ଗୁଣ ଭଲ । ପିଲାଲୋକ, ଟିକିଏ ମନ ଚଞ୍ଚଳ କରୁଛି, ବଳେ ବୁଝିଯିବ ନାଇଁ !"

'ମୁଁ ପଚାରୁଚ, ପାଠ ଆଡ଼କୁ ତା ମନ ନ ଯାଉଛି କାହିଁକି ?"

"ନ ଗଲେ ସେ ପଢ଼ୁଥାନ୍ତା କାହିଁକି ?"

"ସ୍ତ୍ରୀକୁ କ'ଣ ପଢ଼ା କହନ୍ତି ? ଆମବେଳେ—"

"ତମବେଳ ଆଉ ଅଛି ନା ? ତେମେ ଚାସ୍ କଲ, ଗୁକରି ପାଇଲ୍, ତୁମେ ପରି ବଳେ ବୁଝେଇଚ, ଆଉ ସେଦ୍ଦନ ନାହିଁ । ପଢ଼ି କେତେ ନପଢ଼ି କେତେ ? ଯେଉଁମାନେ ଯେତେ ଯେତେ ଜାଗାରେ ବଡ଼ ହେଇଛନ୍ତି, ଯେଉଁମାନେ ଧନୀ ହୋଇଛନ୍ତି, ସେମାନେ କଣ ପାଠପଢ଼ି ପଇସା ରୋଜଗାର କରୁଛନ୍ତି ?"

"ଡକାଏତ୍, ସଇତାନ, ଧପ୍‌ପାବାଜ୍—"

"ଓହୋ, ରହ ରହ, ତାଙ୍କ ଭିତରୁ କିଏ ତମର ଖାଉନ୍ଦ, କିଏ ତମ ଗୁରୁଗୋସେଇଁ, କିଏ ତମ ମହାଜନ, ଦରକାର ପଡ଼ିଲେ ତୁମେ ବି ତାଙ୍କ ଗୋଡ ଧରିବାକୁ ତାଙ୍କ ପାଖେ ଦାନ୍ତ ନିକୁଟିବାକୁ ଯିବ ।"

"ମୁଁ !"

"ସେଥିରେ ଲଜକଥା କଣ ଅଛି ? ଗୁହାରି କରିବାକୁ ଯାଉ ନା । ବଡ଼ଲୋ ବନ୍ଧ ହଉ, ଗୃହକଣରେ ଉନ୍ନତ ହଉ, ପଇସା ସରିଲେ ଉଧାର ମାଗିବାକୁ ଯିବ, ଯାଉଚ, କଏ ସେମାନେ ? ତୁମେ ପରା ତାଙ୍କ ଗଇ ସତରଥର ଖୋଲିଥିବ ! ସମସ୍ତେ ତ ପାପୀ; ସବୁ ତ ପାପ-ଧନ, ପାପ-କ୍ଷମତା, ପାପ-ବଡ଼ଲୋକ ! ସବୁ ତ ଅନାଚାର । ତଥାପି ସେଠିକି ତୁମେ ଯାଅ, ଦାନ୍ତନକୁଟ ନ କର ତୁମର ଗୃଣା କଣ ? ସେମିତିଆ ଯୁଗରେ ତାଙ୍କର ରାଜ୍ୟରେ ତୁମେ ଆମେ ରହିଥାଇଁ । ଓଲଟି ତୁମେ ମତେ ଚିଡ଼, ମୁଁ ସେମାନଙ୍କ ଘରକୁ ନଗଲି ବୋଲି । ମୁଁ ତ ମଫସଲ ମାଇପିଜାତି । କାହା ଘରଲୋକଙ୍କ ସଙ୍ଗରେ କଥା କହି ମତେ ଆସିବ ନା ମତେ ତା ଭଲଲାଗିବ ଯେ ମୁଁ ଯାଆନ୍ତି ? ମୋର ବାହାଦୁରୀ ନୁହେଁ ଓଲାପଣ ମୁଁ ଜାଣିଛି ଯେ ମତେ ତ ଆସେ ନାହିଁ ।"

"ତେବେ ତୁମେ ଚାହଁ ସୁର ବି ଅସତ୍‌ମାର୍ଗ ଧରି ରୋଜଗାର କରିବ, ସେଇଥିରେ ନିଜେ ବଞ୍ଚିବ, ଆମ୍ଭକୁ ପୋଷିବ ।"

"ମୁଁ କାହିଁକି ଚାହିଁବି ଏତେ ଖରାପ କଥା । ତେବେ ମୁଁ ଜାଣେ ଯେଉଁ ଭଗବାନ୍ ତାକୁ ଜନ୍ମଦେଇଚି, ସେ ତା ଜଉଁଣା ପାଇଁ କ'ଣ ବାଟ ରଖିଥିବ, ବଳେ ସେ ସେବାଟ ଧରିବ ।"

ସୁରର କାନକୁ ତା ବୋଉ କଥା ଶୁଭୁଥିଲା ଅମୃତ ପରି, ଠିକ୍ ଠିକ୍, ସବୁ ତା ମନକଥା, ସତ କଥା । ବାପା କଥା କହି ଜିତିପାରିବେ ନାହିଁ, ମିଛ ଜିତି ପାରିବ ନାହିଁ, ଭୟ ଜିତିପାରିବ ନାହିଁ ।

ବାପାଙ୍କ ପ୍ରତି ଜଳି ଉଠିଥିବା ରାଗ କ୍ରମେ ଘୃଣାରେ ପରିଣତ ହେଉଥାଏ ।

କେତେ କଥା ମନେପଡ଼ିଯାଉଛି ।

ଚରିତ୍ର, ସୁନୀତି, ସଂଯମ, ଦୟା-ଦାକ୍ଷିଣ୍ୟ ଶାସ୍ତ୍ରରେ ଲେଖା ହୋଇଥିବା କେତେକଥା ସେ ସବୁଦିନେ ଶୁଣାଇଛନ୍ତି, ସତ । କହିଲାବେଳେ କେଡ଼େ ଉଜ୍ଜ୍ୱଳ ଦିଶେ ତାଙ୍କ ମୁହଁ ! ଆଖି ଓଦା ଓଦା ଦିଶେ । ଜକ୍

ଜିକ୍ କରେ । କିନ୍ତୁ ନିଜେ ସେ ତ ଶୁଣିଛୁ, ପ୍ରିୟବାବୁ ଡାକ୍ତର ଗମ୍ଭୀର ହୋଇ ଶୁଣାଇଦେଇ ଯାଇଥିଲେ—"ହରବାବୁ, ସାବଧାନ ! ଆପଣଙ୍କ ସ୍ତ୍ରୀଙ୍କ ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିବା ଉପରେ । ସାତଟି ସନ୍ତାନ ହେଲେଣି, ଦେହରେ ରକ୍ତ ନାହିଁ, ଘର କାମସବୁ କରିବାକୁ ପଡ଼ୁଛି । ଯା ପରେ ଆଉ ହେଲେ କହିପାରିବି ନାହିଁ କ'ଣ ହେବ ।"

ସେ—ସୁର, ମାଳା, ମୋହନ, ରୁକ୍ମିଣୀ, ପୀର, ବାବୁ, ବୁଢ଼ା—ସାତ । କେତେଥର ଘାଡଅଧରେ ସୁରର ନିଦ ଭାଙ୍ଗି ଯାଏ, ଅତି ଅସ୍ୱାଭାବିକ ବ୍ୟସ୍ତ ବସିଲି ବସିଲି, ଖସ୍ ଖସ୍ ଅଥଚ ତୀବ୍ର ଶବ୍ଦ କାନରେ ବାଜେ—"ସୁନା-ସୁନା—"

ସୁର ଭୁନ ହୋଇ କାନ୍ଦୁଥାଏ । ଭୟରେ । ସତକୁ ସତ ପୁଣି ବୋଉର କୁଆ ହେବ—ସେ ଶୁଣିଲା । ସେତେବେଳେ ବାପାଙ୍କର ବି ପରିବର୍ତ୍ତନ ! ମୁହଁରେ ହସ ନାହିଁ । ସକାଳେ ସଞ୍ଜରେ ଦି'ଥର ଘଣ୍ଟାଏ ଲେଖାଁ ବନ୍ଦ ପାଟିକରି ଠାକୁର ଘରେ ପୂଜା, ଅଫିସରୁ ଫେରି ଗୁମ୍‌ହୋଇ ବସିଥାନ୍ତି; କ'ଣ ଭାବୁଥାନ୍ତି । ବାରମ୍ବାର ଡାକ୍ତର ପାଖକୁ ଯା'ଆସ । ଆପେ ସେ ବୋଉ କଥାରେ ଯୁକ୍ତି କରୁଥିଲେ, କିନ୍ତୁ ସବୁ ଯୁକ୍ତି କୁଆଡ଼େ ପାଣି ଫାଟିଗଲା, ବୋଉ ପାଖେ ସେ ହେଲେ ମୂଷା । ଗୋରା ଡେଙ୍ଗା ଲୋକ, ଲମ୍ବା ମୁହଁ, ମୁହଁରେ ହାଡ଼ ବାରିହେଲା, କପାଳରେ ଗାର ପଡ଼ିଗଲା । ସୁରର ତାଙ୍କ ପ୍ରତି ଦୟା ହେଲା । ଯାହାହେଉ, ଶୁନ ଜନ୍ମ ହେଲା, ବୋଉ ବି ବଞ୍ଚିଗଲା । ବଡ଼ ଟେମେଡ଼ା ଜୀବନ । ତେଣୁ ବଞ୍ଚିଲା । ବାପାଙ୍କ ପାଇଁ ନୁହେଁ ।

ପାଟିରେ କହିହେବ ନାହିଁ ସିନା, ବୁଝି କ'ଣ ହୁଏ ନାହିଁ !

ସତ୍ୟ, ସାଧୁତା, ସଚ୍ଚରିତ୍ରତା ।

କାହିଁ ସେ ସବୁ ?

ସତେ ନିଜେ ସେ ଯେଉଆ ।

ପିଲାଦିନୁଁ ଦେଖିଛୁ, ତା ପାଇଁ, ତା ଭାଇଭଉଣୀଙ୍କ ପାଇଁ ବାପା କାମରୁ ଫେରିଲାବେଳେ କେତେଥର କାଗଜ ପେନ୍‌ସିଲ୍ ଧେନିଆସନ୍ତି ।

ସେ ବାରେଇଦିଅନ୍ତି "ପେନ୍‌ସିଲ୍‌ର ଆଗ ଏଇମୁଣ୍ଡରୁ କାଟି ବ୍ୟବହାର କର, ବିଶେଷତଃ ଏ ଯେଉଁ ଲେଖା ଦେଖୁଛ, ତାକୁ ଠିକ୍‌ଏ ଛେଲଦେବା ଦରକାର।" ମୁଁ ମନେ ସେ ବୁଝିଲା, ଯେସବୁ କଣ୍ଠା ଜିନିଷ ନୁହେଁ, କଣ୍ଠା ବି କିଛି ହୁଏ, ସବୁ ନୁହେଁ। ସେ କ'ଣ ସାଧୁତାର ଚିହ୍ନ ?

ମନେପଡ଼ୁଛି, ପଗୁରିଥିଲି ଦିନେ—"ବାପା, ଏ ସବୁ ଆଣୁଛ, କେହି କିଛି କହିବେ ନାହିଁ।"

"ଆରେ ନାହିଁ, ଏସବୁ ମୋ ଜିନିଷ, ନେଣୁ ଚୋର।" ମନ ମାନିଲା ନାହିଁ, ପୁଣି ପଚେଇ ହୋଇଥିଲି, ସେ ବୁଝାଇ ଦେଇଥିଲେ "ଆରେ ଏସବୁ ନ ନିମନ୍ତେ ନିଅନ୍ତି, ଅନ୍ତ ସାନସାନ କଥା, ଏମିତ ବାଛିଲେ ବାଛିଲେ ତୁ ମଣିଷ ହେବୁ ?" କିନ୍ତୁ ତା ମନରେ ସନ୍ଦେହ ରହି ଯାଇଥିଲା। ସେ ଭାବିଥିଲା। ତା ପରେ ମଝିରେ ମଝିରେ ଗାଡ଼ି ଚଢ଼ିବା କଥା। ଜିପ୍ ଚଢ଼ି ସେମାନେ ବେଳେ ବେଳେ ବୁଲିଯାଆନ୍ତି, ରାତିରେ। ତଥାପି ବାପା ଡ୍ରାଇଭର ଉପରେ ଚିଡ଼ନ୍ତି, ତା ଆଗରେ ନୁହେଁ, ଘରେ। କହନ୍ତି, "ଲୋକଟା କେଡ଼େ ଅକୃତଜ୍ଞ ଦେଖ, ଯେମିତ ଗାଡ଼ିରୁ ନେଇ ପେଟ୍ରୋଲ୍ ବିକେ, ନାନା ଲଦିଫନ୍ଦି କରେ।

ମୁଁ ତା ଦୋଷ ଧରାକୁ ପକାଇଦେଲେ ସେ ଜେଲ୍ ଯାଆନ୍ତା, ମୁଁ ଚଳେଇ ନିଏ ବୋଲି ସିନା ! ତଥାପି ମୁଁ ଯଦି କେବେ କହିବି ରାତିକି ଆଣିବୁ ଠିକ୍‌ଏ ପିଲାଏ ଠାକୁର ଦର୍ଶନକୁ ଯିବେ। ମନେ ମିଛରେ ଦେଲେ କହିବ, 'ଗାଡ଼ିକି ପ୍ରରମିଟ୍ ଅଛି କି।' ଦରକାର ନାହିଁ ସେ ଗାଡ଼ି। ଯାଉନ୍ତୁ ସେ ଗାଡ଼ି ଚଢ଼ି ଲୋକେ ବଜାର ସଉଦା କରି, ବନ୍ଧୁ ଫଖୋଳି, ନଦେଉ ମତେ, ଦେଖିବା ନାହିଁ କି !"

ସେ ବି କ'ଣ ସାଧୁତା ! ସଚ୍ଚୋଟପଣ !

ଏ ତ ସାମାନ୍ୟ କଥା। ଆହୁରି ବି ଅଛି। ଲୋକେ ଆସନ୍ତି। ସେ ଥିଲେ ବାପା ପଠାନ୍ତି ତାଙ୍କ ପାଇଁ ଗୁ ଆଣି, ପାନ ଆଣି। କେତେଥର ଦେଖିଛି ସେମାନେ ଗଲେଗଲେ ବାପା ହସ ହସ ହୋଇ ଘରଭିତରକୁ ଯାଆନ୍ତି। ବୋଉ ବାକ୍‌ସ ଖୋଲେ ବନ୍ଦ କରେ।

"କ'ଣ ହେଲା କି ବୋଉ ?"

"ଯା ଘୁଞ୍ଚ୍, ତୋ କାମରେ ଯା, ପିଲାଏ ଏଥିରୁ କ'ଣ ପାଇବ ରେ।" ସୁର ବୁଝେ, କିଛି କହେ ନାହିଁ।

ତା' ବୋଉ ଅଭିଯୋଗ ବଖାଣେ, "କି କାଳ ହେଲା ! କେଡ଼େ ମହଙ୍ଗା କାଳ ! ଆମର ସବୁ ଜିନିଷ କିଣା। ପିଲାଏ ମୋର କ'ଣ ଖାଇ ବଞ୍ଚିବେ ?"

ତା' ବାପା ମତ ବଖାଣନ୍ତି, "ଭଗବାନ ଯାହା ଦେଉଛନ୍ତି ଆମେ ସେତିକରେ ସନ୍ତୁଷ୍ଟ ରହିବା। ଆମେ ସତରେ ଅଛୁଁ, ସେହି ଆମକୁ ରକ୍ଷା କରିବ।"

ସୁରର ଧାରଣା ହୋଇଥିଲା, ସଂସାରି ଲୋକ ଯାହା କରୁଥାଉ ପଛେ, ଭୁଣ୍ଡରେ ଏହିପରି କହିବା ବିଧି।

ତା' ବାପା ଅନ୍ୟମାନଙ୍କ ମିଛ, ଚୋରି, ଦୁର୍ନୀତି ବିଷୟରେ ବିଦ୍ରୁପ କହନ୍ତି। ସେଥିରୁ କେତେଲୋକ ସେମାନଙ୍କ ନିଜ ବନ୍ଧୁ-ବାନ୍ଧବ, କେତେ ଅବହେଳା କିନ୍ତୁ ଉପସଂହାର ସେହି ଗୋଟିଏ,—ଏ ଯୁଗରେ ଆଉ ସତ ନାହିଁ।

ଛାତ୍ରମାନେ ନିଜ ଭିତରେ ସେହି କଥା ଆଲୋଚନା କରନ୍ତି, କେତେ ଉଦାହରଣ କୁହାକୋହି ହୁଅନ୍ତି। ସେ ଲୋକେ ରାଜନୀତି, ବେପାର, ଚାକିରି, ସମାଜର ସବୁ କ୍ଷେତ୍ରର। ସେମାନେ ବି ଉପସଂହାର କରନ୍ତି, ଏ ଯୁଗରେ, ଏ ଦୁନିଆଁରେ ସତ ଓ ସାଧୁତା କାହିଁ କ୍ୱଚିତ୍ ମିଳେ। ଯେଉଁମାନେ ସମାଜର ନାନା ସ୍ଥାନରେ ଥାଇ ଛାତ୍ରମାନଙ୍କଠୁ ପାଆନ୍ତି ଶ୍ରଦ୍ଧା, ସମ୍ମାନ, ଆଦର୍ଶ ହୁଅନ୍ତେ, ସେହିମାନଙ୍କ ଛିଦ୍ର ହିଁ ବେଶି ଆଲୋଚିତ ହୁଏ। ପିଲାମାନେ କୁହାକୋହି ହୁଅନ୍ତି, ଆପଣା ଲାଭ ପାଇଁ ସ୍ୱାର୍ଥ ପାଇଁ ଲୋକେ ସବୁପ୍ରକାର ପାପ, ଅନୀତି, ଠକାମି, ଅନ୍ୟାୟ, ବର୍ବରତା କରିପାରନ୍ତି। ସେମାନେ ଯୋଗ୍ୟକୁ ଅଯୋଗ୍ୟ, ଅଯୋଗ୍ୟକୁ ଯୋଗ୍ୟ କରିପାରନ୍ତି, ପାସ୍‌କୁ ଫେଲ୍ ଫେଲ୍‌କୁ ପାସ୍ କରିପାରନ୍ତି, ଏପରିକି ଅର ନିଜ ମତ, ନିଜ ଦଳ ବଦଳାଇ ପାରନ୍ତି, ବନ୍ଧୁ ପ୍ରତି ଶତ୍ରୁତା କରି-ପାରନ୍ତି, ସବୁ ସମ୍ଭବ, କରିପାରିଲେ ହିଁ ହେଲା।

ଖାଲି ଶୁଣା କଥା ବି ନୁହେଁ, ନିଜ ନିଜ ଅଭିଜ୍ଞତା କୁହାକୋହି ହୁଅନ୍ତି ।

ଅନ୍ୟାୟ, ଦୁର୍ନୀତି ଆଦି ପ୍ରତି ସୁର ଯେ କେବେ ବିଶେଷ ଭାବେ ଆକୃଷ୍ଟ ହୋଇଥିଲା ତା' ନୁହେଁ । ସେ ଧରି ନେଇଥିଲା ଯେ ଜୀବନରେ ଓ ଦୁନିଆଁରେ ନ୍ୟାୟ, ନୀତି ଓ ସଦ୍‌ଗୁଣର ସାର୍ଟିଫିକେଟ୍ ଖୋଜିବା ଅଦରକାରୀ ଓ ହାସ୍ୟାସ୍ପଦ, ନମିଳିଲେ ଦୁଃଖ କରିବାର ନାହିଁ, ମିଳିଲେ ସବୁବେଳେ ତା' ସତ ହେବ ନାହିଁ । ସେ ନିଜେ ଅସତ୍ୟ, ମିଛ ଓ ଠକାମିକୁ ଘୃଣା କରୁଥିଲା, ଆଉ କୌଣସି କାରଣ ଲାଗି ନୁହେଁ, ତହିଁରେ ତା' ଆତ୍ମାଭିମାନ କ୍ଷୁଣ୍ଣ ହେବ ବୋଲି । ନିଜେ ସେ ପାଠପଢ଼ି ସାରି କ'ଣ ହେବ ସେ ବିଷୟରେ ତା'ର କୌଣସି ଧାରଣା ନଥିଲା, ସେଥିପାଇଁ ସେ ବ୍ୟାକୁଳ ନଥିଲା, ସେ ଖାଲି ଜାଣିଥିଲା ଯେ ତା' ଦ୍ୱାରା କୌଣସି ନାଁ ରଖିଲା ଭଳି କାମ ହୋଇପାରିବ ନାହିଁ, ସେ ଯେତେବାଟ ଯାକେ ଭାବି ପାରୁଛି, ସେ ନିଜେ ତା' ବାପାଙ୍କ ଆର୍ଥିକ ସ୍ତରକୁ କେବେ ଉଠିପାରିବ କି କେବେ ସାଧାରଣ ସଫଳକାମ ଗୃହସ୍ଥଟିଏ ଭଳିଆ ହୋଇପାରିବ ସେଭଳି ସମ୍ଭାବନା ବି ନଥିଲା ।

ଏତିକି ବୁଝିଥିଲା, ଜୀବନରୁ ପାଇଲାଭଳିଆ ବେଶି କିଛି ନାହିଁ, ଅତି ଗୁରୁଗମ୍ଭୀର ନ ହୋଇ ହାଲୁକା ହୋଇ ଚଳି ହସଖୁସି ଗପ ବନ୍ଧୁମେଳ ଓ ଖେଳରେ ଖେଳରେ ଜୀବନଟା ବିତେଇ ଦିଆଯାଇପାରେ ।

"ସୁରରେ, ଉଠିବୁ ନାହିଁ ? ଖାଇବୁ ନାହିଁ ?"
ତା' ବୋଉ ଡାକୁଛି ।
ମନ ହେଉଥାଏ, ଝାଡ଼ଝୁଡ଼ି ହୋଇ ଉଠିପଡ଼ିବ ।
ପୁଣି ମନଭିତରେ ଦୁଇ ଫାଙ୍କ୍ । ନା, ସେ ଖାଇବ ନାହିଁ ।
ସେ କରଲେଉଟାଇ ଆଖିବୁଜି ପଡ଼ି ରହିଲା ।

ପ୍ରକୃତରେ ଭୋକ ବି ସେତେ ନଥାଏ । ସେ ପେଟପୂରି ଜଳଖିଆ ଖାଇଆସିଛି ।

ସକାଳକୁ ତା'ର ନିଦ ଭାଙ୍ଗିଥିଲା ସବା ଆଗ, ସେ ଉଠିପଡ଼ି ଟେକା ମଢ଼ୁଲି ପକାଇ ବିଛଣାରେ ବସିଲା । କିଛି ବେଳ ଆଖିବୁଜି ରହିଲା । ସତେ ଯେମିତି ସେ କ'ଣ ଧ୍ୟାନ କରୁଛି । ଆଖି ଖୋଲିଲା, ସାମ୍ନାରେ କାନ୍ଥ ଉପରେ ଦେଖିଲା ଯୋଡ଼ାଏ ଛବି—ଗୋଟିଏ ମହାତ୍ମା ଗାନ୍ଧିଙ୍କର, ଆଉ ଗୋଟିଏ କ୍ୟାଲେଣ୍ଡର ଉପରେ ଅଧା-ଲଙ୍ଗୁଳୀ ଝିଅର । କାନ୍ଥରେ ଯେ ଛବି ଟଙ୍ଗାଯାଏ ସେ ସତେକି ଖାଲି କାନ୍ଥର ଶୋଭାବର୍ଦ୍ଧନ ପାଇଁ, ଟଙ୍ଗା ହେଲା ଦିନ ଛଡ଼ା ଆଉ କେଉଁବେଳେ ସେ ତେଣେ ଅନାଇଁ ଥାଏ କ୍ୱଚିତ୍, କିନ୍ତୁ ସେଦିନ ସକାଳେ ସେ କୁତୂହଳରେ ତେଣେ ନଠେଇ ନଠେଇ ଅନାଇଁଲା, ଲାଗିଲା, ସେ ତହିଁରୁ କିଛି ନୂଆ ଅର୍ଥ ପାଉଛି, ଯେ ଏ ଉଭୟେ କେହି ରହିବେ ନାହିଁ । ମହାତ୍ମାଜୀ ଦେବତା ହୋଇ ସାରିଲେଣି, ତାଙ୍କ ଲେଖାରେ ତାଙ୍କ ଭାଷଣରେ ଯେତେବେଳେ ଯାହା ଅବା ଲାଗୁଥିଲା ସାଧାରଣ ଜୀବନରେ ଯେ କେହି ଅନୁସରଣ କରିଭରି, ଶତବାର୍ଷିକୀର ସମାରୋହ ପରେ ତା ବି ସତେ ଯେପରି ଦୂରେଇ ଦୂରେଇ ଗଲା, ଯେମିତି ଶାସ୍ତ୍ରପୁରାଣର ପବିତ୍ର ବାଣୀ ସେ, ପଢ଼ିଲେ ଶୁଣିଲେ କାନ ପବିତ୍ର ହୁଏ, ସେତିକି । ଆଉ ସେ ଅଧାଲଙ୍ଗୁଳୀ ଛବିଟି—ସେ ବି ବହୁତ ପୁରୁଣା ଦୃଶ୍ୟ, ଆଖି ସପସ୍ ହେଲାଣି, ଆଉ କୁତୂହଳ ନାହିଁ ।

କ'ଣ ତା'ହେଲେ ଅଛି ଆଉ ?

କଳ ପରି ଜୀବନ, ଆଖି କାନ ଚିନ୍ତା ସବୁ ବୁଜିଦେଇ, ମଣିଷ ଅଚେତ ହୋଇଥିବ ଅଥଚ ହାତଗୋଡ଼ ଗୃଳୁଥିବ, ମଝିରେ ମଝିରେ ଚେତାହେଲେ ଅନୁଭବ କରୁଥିବ ଅଶାନ୍ତି ।

ଗୋଟାଏ ସତ୍ୟ ଆବିଷ୍କାର କଲାପରି ଆଖି ଜକଜକ କରି ସେ କାନ୍ଥ ଆଡ଼କୁ ଅନାଇଁଲା, ସେଇଠି ତାର ଅଦୃଶ୍ୟ ଶ୍ରୋତାମାନେ, ମନେ ମନେ ସେହିମାନଙ୍କୁ ସେ କହିଲା—

ମୃତ୍ୟୁ ହିଁ ସତ୍ୟ, ଯାତନାହିଁ ସତ୍ୟ, ଅଶାନ୍ତି ହିଁ ସତ୍ୟ, ବାକି ସବୁ ମିଥ୍ୟା । ଜୀବନର ଏଇ ତିନୋଟି ସତ୍ୟ—ମୃତ୍ୟୁ-ଯାତନା-ଅଶାନ୍ତି, ଛୁଏଁ ସେ ଜନ୍ମେ —ସ୍ୱୟମ୍-ଭୂ, ଏଇ ଆଡ଼କୁ ବଢ଼ାଇବାକୁ ପଡ଼ିବ ।

ସେ କାର୍ଯ୍ୟକର୍ମ ସାରୁ ସାରୁ ତା ବୋଉ ତା ପାଇଁ ଚୁଡ଼ା, ଦହି, ଚିନି ଗୋଳାଇ ଆଣି ଦହଣ୍ଟାଇ ଦେଲେ । ପାଟିରେ ଗୁଣ୍ଡା ପୁରାଇ ସେ ତା ବୋଉକୁ କହିଲା "ମୃତ୍ୟୁ-ଯାତନା-ଅଶାନ୍ତି" ।

"ସକାଳୁ କ'ଣ ଏଗୁଡ଼ା ଅଲକ୍ଷଣା କଥା କହୁଚୁରେ ସୁର ?"

"ଅଲକ୍ଷଣା ନୁହେଁ, ଏଇ ସତ୍ୟ । ବାକି ସବୁ ମିଥ୍ୟା ।"

"ଖା, ଖା, ଆଉ ଦେବି ?"

"ଏ ଯୁଗର ସତ୍ୟକୁ ତୁମେ ତୁଣ୍ଡରେ ଧରିବାକୁ ଡରୁଛ, ରହୁଛ ଏ ଯୁଗରେ, ଚଳୁଛ ଏ ଯୁଗ ପ୍ରକାରେ, ଭାବୁଛ କେବେ—ନଥିଲା ଯୁଗରେ ଭାଷା କହି ।"

"କଣ ଏଗୁଡ଼ା କହୁଚୁ ?"

"ତେରକଥିବୁ ତେରକୁ, ଚଉଦ ପନ୍ଦର କେହି ନ ରହିବେ ସତ ଉପୁଜିବ ସତରକୁ । ସେ ସତ ଉପୁଜିଲାଣି । ଯାହା କହିଲି ସେଇଆ ।"

"ତୋ ମୁଣ୍ଡ ବିଗିଡ଼ିଲାଣି ।"

"ଯେତେ ଯାହା କର, କେହି ବଞ୍ଚିବେ ? ପରମାଣୁ ବୋମା ପଡ଼ିବ, ସବୁ ଧ୍ୱଂସ ହେବ । ସେ ପର୍ଯ୍ୟନ୍ତ, ଜଣେ ଜଣକୁ ମାରୁଥିବ, ତାକୁ ଆଉ ଜଣେ । ତାକୁ ଆଉଜଣେ । କାହା ସମ୍ପତ୍ତି ରହିବ ଭାବୁଚୁ ? ଜଣେ ଛଡ଼େଇ ନେବ, ତାଠୁଁ ଆଉ ଜଣେ, ତାଠୁଁ ଆଉ ଜଣେ, ତାଠୁଁ ଆଉ ଜଣେ । ତେମେ ବି ଜାଣିଥିଲ, ସେଥିପାଇଁ କହୁଥିଲ ଲକ୍ଷ୍ମୀ ଚଞ୍ଚଳା ।"

'ତୋର କଣ ହୋଇଚି କରେ ?'

"ମୁଁ ବୋଧିପ୍ରାପ୍ତ ହୋଇଚୁ । ଦରକାର ଆଗ ଭକ୍ଷକ ଓ ତପୁସ୍ୟ, ତୁ ହେବ ଭକ୍ଷୁକ ।"

"ହଉ ହଉ ମୁଁ ତ ତୋ ଭାଲୁ ଆଉ କଏ କି ?"

ବୋଉ ଓଯାର ବାଙ୍ଗର, କଳା, ନଥର ପସର ହୋଇ ଗୁଲେ । କାଲୁ ସେ କଣ ତା କହିଲା ?

"ଶାଲୁ ନୋହୁଁ, ଭକ୍ଷୁକ । ବୁଦ୍ଧଙ୍କର ଆଗ ଯୋଡ଼ଏ ଶିଷ୍ୟଙ୍କ ଭିତରୁ ଜଣେ ନିଜ ଅଙ୍ଗ ନିଭେଇବା କଥା ମନେ ପକା—ଖାଲି ଯାତନା, ଅଶାନ୍ତି, ଯେଉଁ ଟୋ ଜୀବନ, ବାକି ସବୁ ମନଭୁଲା ମିଛ କଥା, ତାପରେ ଶେଷ ସତ୍ୟଟି ଆସିବ—ମୃତ୍ୟୁ ।"

ମୁନାଦେଈ ବଲବଲ କରି ପୁଅ ମୁହଁକୁ ଅନାଇଁଲେ । ଯେଠି କୌଣସି ଭାବର ଚିହ୍ନବର୍ଣ୍ଣ ନାହିଁ । ନିଶ୍ଚୟ ସେ ମନେ ମନେ କାଲିକା କଥା ଭାବି ଲୁହୁକୁଛି ।

"ବୁଝିଲୁ ବୋଉ, ବାପାଙ୍କୁ କହିବୁ, ମୁଁ ଆଉ କୁଳାଙ୍ଗାର ନୁହେଁ, ମୁଁ ବୋଧିପ୍ରାପ୍ତ ।"

"ବୋଧି ନା ଗୋଧି ତୁରେ ?"

ସେ ହସିଲା ନାହିଁ, ଉଠି ଚାଲିଗଲା ।

ବନ୍ଧ ଖୋଲିଲା ।

କିନ୍ତୁ ଭାବନା, ପଢ଼ିବ କାହିଁକି ? ଯାତନା-ଅଶାନ୍ତି-ମୃତ୍ୟୁ, ବଦଳାଇ ହେବ କ୍ୟୁ ?

ପଢ଼ିଲେ ବି ଖେଳେଣାଟାଏ ମିଳିବ, ହେଇ ପାସ୍ କାଗଜ ? ମୋ ଖାତା ଯାହା ପାଖେ ପଡ଼ିବ ସେ ଯେ ଖାଲି ପ୍ରଥମ ପୃଷ୍ଠାଟା ଓଲଟାଇ ଦେଇ ମନଇଚ୍ଛା ନମ୍ବର ନଥୋଇ ଦେବ ନା କିଏ କହିବ ? ଚୁଣ୍ଟ ଦେଖାଇ ଡରାଇ କପି କରି ବି ଲୋକେ ନମ୍ବର ପାଇବାର ବି ତ ଶୁଣାଅଛୁ ? ସ୍ତୁତି କରି ଲୋକେ ନମ୍ବର ପାଇବାର ଶୁଣାଅଛୁ ତ ? ଠାକୁରମାନେ ଭୋଗ-ରାଗ ଦେଲେ ବର ଦିଅନ୍ତି, ପ୍ରାର୍ଥନା ମଞ୍ଜୁର କରନ୍ତି ବୋଲି ଯେଉଁ ସମାଜ ବିଶ୍ୱାସ କରେ ସେ ତ ବହୁ ଯୁଗରୁ ଆପଣା ହାତରେ ଆପେ ଗଢ଼ି ରଖିଛି ତାର ଅନ୍ୟାୟ, ଦୁର୍ନୀତି, ଫାଙ୍କି ଫିସାଦର ଯୁଗ, ନୂଆ ବା କେଉଁ କଥା ?

ଧର୍ମ-ଅର୍ଥ-କାମ-ମୋକ୍ଷ, ପାଠ ପଢ଼ିଲେ ଏଥିରୁ କେଉଁ ଗୋଟାକ ମିଳିବ ? ଯେତେ ଯେତେ ମତବାଦର ଦଳର ଯେତେ ଯେତେ ଲୋକ ମନ୍ତ୍ରୀ

ହେଲେ, ନେତା ହେଲେ, ବଡ଼ ଶିଳ୍ପପତି, ବ୍ୟବସାୟୀ, ମହାଜନ ହେଲେ, ଯେତେ ଯେତେ ଲୋକ ପଇସା ଉପରେ ଚାଲିଲେ, କ୍ଷମତା ବଳରେ ଶହ ଶହ ହଜାର ହଜାର ଲୋକଙ୍କୁ ନଚେଇଲେ, କିଣିଲେ, ବିକିଲେ, କେତେ-ଜଣ ତାଙ୍କରୁ ଉଚ୍ଚଶିକ୍ଷା ପାଇଥିଲେ ?

ସେ ବହି ବନ୍ଦ କଲା, ଖିଆଲ୍ ନାହିଁ ତାର କେତେବେଳ ଟେବୁଲ ପାଖେ ବସି ବସି କଟିଥିଲା । ଘଣ୍ଟାକୁ ଚାହିଁ ଉଡ଼ ପଡ଼ିଲା ।

"ବୋଉ, ଭାତ, ନହେଲେ ମୁଁ ଚାଲିଲି ଡେରି ହେଲା ।"

"ଆରେ ଆ-ଆ-ହେଲାଣି-ବସିଲେ ବାଢ଼ିବି ।"

ଖାଇଲାବେଳେ ବଲବଲୋଉ ଥାଏ ।

"ବୋଧି,—ବିସତ୍ୟ—ମୃତ୍ୟୁ-ଯାତନା-ଅଶାନ୍ତ ।"

"ଭଲକରି ଖାଉନୁ, ଚଢ଼େଇ ପରି ଖୁମ୍ପୁଚୁ, କ'ଣ ଏମିତି ବଲବଲୋଉଚୁ ?

"ହୁଁ, କ'ଣ ତୁ ବୁଝିବୁ ! ସେ ବୋଧି ।"

ତୁନି ହୋଇ ସାଇକେଲ ଧରି କଲେଜ୍ ଚାଲିଗଲା ।

ହରବାବୁ ହସି ହସି ସ୍ତ୍ରୀଙ୍କୁ କହିଲେ । "ଦେଖିଲ ତ ?"

"କ'ଣ ?"

"କାଲି ରାତିର ଔଷଧ କାମ କରିଛି । ପୁଅ ଆଜ ସକାଳୁ ଉଠି ପଢ଼ୁଛି, ତୁଣ୍ଡ ମୁଣ୍ଡ ନାହିଁ, ଟେବୁଲ୍ ପାଖେ ବସିଲା, ପୂରା ତିନିଘଣ୍ଟା ପଢ଼ିଲା, ଏକଦମ୍ ତନ୍ମୟ । ମଝିରେ ଉଠି ସାହିବୁଲି ପକାଏ, ଆଜ ତା' ବି ନାହିଁ । ଏମିତି ପଦେ ପଦେ କଥାରେ ମଣିଷର ଜୀବନର ଗତି ବଦଳିଯାଏ । ତୁମେ ଧରିନିଅ ସେ ତା' ପରୀକ୍ଷାରେ ଖୁବ୍ ଭଲ ରକମ୍ ପାସ୍ କରିବ । ସେଇଠୁ ଯିବା, ଧରାଧରି କରିବା, ଏତେ ଶହାଜଣା ଅଛନ୍ତି, ଗୋଟାଏ ଭଲ ଚାକିରି ମିଳିଯିବ ।"

"ହଁ ।"

"ହ କ'ଣ କହୁଚ, ଦେଖିବ ଦେଖିବ, ମଝିରେ ମଝିରେ ଟାଣ ନହେଲେ ସବୁ ବଗିଡ଼ିଯାଏ । ତୁମର ଭୁଲହୁଏ ଯେତେବେଳେ ତୁମେ ତା' ପଛ ନିଅ ତାକୁ ମୁହଁ ଦିଅ ।"

"ହଉ, ତୁମେ ଖାଇବ ତ ?"

କଲେଜ ବାଟଘର ସାମ୍ନାରେ ବହୁତ ପିଲା ଜମା ହୋଇଛନ୍ତି । ସେମୁଣ୍ଡରେ ଗୋଟିଏ କଳି ଆରମ୍ଭ ହୋଇଯାଇଛି । କଲେଜ୍ ଅଫିସ୍ ଭିତରେ ହଠାତ୍ ଛାତ୍ରଙ୍କ ଗହଳି ହୋଇଥିଲା ଓ ଜଣେ କିରାନି ଚଢ଼ିଯାଇ ଜଣେ ଛାତ୍ରକୁ କହିଥିଲେ, 'ଗେଟ୍ ଆଉଟ୍, ସେଥିକରୁ ଚଡ଼ାଚଡ଼ି ହୋଇ ପାଟିତୁଣ୍ଡ କରି ଦୁହେଁ ବାଟ ଘରଯାଏ ଚାଲିଆସିଛନ୍ତି, ପାଟିଶୁଣି ବହୁତ ପିଲା ଓ କେତେଜଣ ଅଧ୍ୟାପକ ଜମା ହୋଇଛନ୍ତି । ପାଟି ଶୁଭୁଛି ।

"ଆଗ କ୍ଷମା ମାଗନ୍ତୁ ।"

"ଗୋଡ଼ତଳେ ପଡ଼ନ୍ତୁ ।"

"କ୍ଷମା ମାଗନ୍ତୁ ।"

ଅଧ୍ୟାପକଦଳ ରହ ରହ, ଶୁଣ ଶୁଣ କହୁ କହୁ ଓଲଟି ସେମାନଙ୍କ ବିରୁଦ୍ଧରେ ନାନା ଅଭିଯୋଗ ଉଠିକରି କୁହା ହେଉଛି, ଯେମିତି କେତେ କ'ଣ କହିବାକୁ ଥିଲ, ହଠାତ୍ ଏକା ସଙ୍ଗରେ ବାହାରି ପଡ଼ୁଛି ।

"ଆମର ବସିବାକୁ ଜାଗା ନାହିଁ ।"

"ଆମର ଖେଳିବାକୁ ପଡ଼ିଆ ନାହିଁ ।"

"ଆମର ଲାଇବ୍ରେରିରେ ବହି ନାହିଁ ।"

"ଆମ ସାଇକଲ ଖରା ଖାଉଛି ।"

"ଆମର ପରିସ୍ରା-ଘର ନାହିଁ ।"

"ଆମର ଲାବୋରେଟରିରେ ଯନ୍ତ୍ରପାତି ନାହିଁ ।"

"କ୍ଷମା ମାଗନ୍ତୁ ।"

ତା'ପରେ କ'ଣ ଘଟିଲା ବାରିହେଲା ନାହିଁ, ଲାଗିଗଲା ଥୋଡ଼ାଏ ଠେଲାପେଲା, ପାଟିତୁଣ୍ଡ । ତା' ପରେ ସୁର ଉଡ଼ି ଗଲା ।

"ଆମର ଦାବି ପୂରଣ ହେଉ ।" ସଙ୍ଗେ ସଙ୍ଗେ ଏକାଠି ଉଠିଲା ଐକ୍ୟତାନ । "ଆମର ଦାବି ପୂରଣ ହେଉ ।"

ସୁର ଉଠିଲା "ବିପ୍ଳବ ଦୀର୍ଘଜୀବୀ ହେଉ ।"

ଜନତା ଉଠିଲେ "ବିପ୍ଳବ ଦୀର୍ଘଜୀବୀ ହେଉ ।"

"ବନ୍ଦୀକର ।"

"ବନ୍ଦୀକର ।"

"ବିଗୃହ ହେବ ।"

"ବିଗୃହ ହେବ ।"

"ଭାଙ୍ଗ-ଜାଳ ।"

"ଭାଙ୍ଗ-ଜାଳ ।"

"ଚାଲ ଲାଇବ୍ରେରି ଜାଳିବା ।"

"ଚାଲ ଚାଲ ।"

"ଦଳେ ଯାଅ ଲାବୋରେଟରି ଧ୍ୱଂସକର ।"

"ଚାଲ ଚାଲ ।"

ଛାତ୍ର ୟୁନିଅନ୍ ପ୍ରେସିଡେଣ୍ଟ୍ ଖେମେଶ୍ୱର ପାହାଡ଼୍ସିଂ ଗମ୍ଭୀର ସ୍ୱରରେ ବକ୍ତୃତା ଆରମ୍ଭ କଲାଣି, 'ଭାଇମାନେ ଆପଣମାନେ, ହଠାତ୍ ଏସୁ କ'ଣ କରୁଛନ୍ତି ? କେଉଁକଥାରୁ କେଉଁକଥା ଉଠୁଛି ? ଯେ ଦୋଷ କରିଥିବ ତା'ର ବିଗୃହ ହେବ, ସେଥିପାଇଁ ଏ ବିଶୃଙ୍ଖଳା କାହିଁକି ? ଏ ଉତ୍ତେଜନା କାହିଁକି ?'

"ଲାଞ୍ଚ ଖାଇଛି ।"

"ପକେଟ୍ ଗରମ୍ ।"

"ଟାଉଟର ।"

"ସ୍ୱେର ।"

"ମାର ମାର ।"

"ଭାଙ୍ଗ ଜାଳ ।"

"ଇନ୍‌କଲାବ୍ ଜନ୍ଦାବାଦ୍ ।"

"ମାର ମାର ।"

"ଭାଇମାନେ, ଏ ହୀନ ଷଡ଼୍‌ଯନ୍ତ୍ର ପଣ୍ଡକର, ଯୋଡ଼ାଏ ବିପଥଗାମୀ ଭାଇ ଆମ ଛାତ୍ର ଆନ୍ଦୋଳନକୁ ଧ୍ୱଂସ କରିବାପାଇଁ କୁଚକ୍ର କରି ହଠାତ୍ ଗୁଣ୍ଡାଏ ଲଗାଇଲା କରିବାକୁ ବାହାରିଛନ୍ତି, ଫଳ ପାଇଁ ଆମେ ସମସ୍ତେ ନନ୍ଦିତ ହେବା ।"

"ଟାଉଟରଙ୍କୁ ଧର ।"

"ହେଇଁ ! ଟାଉଟର ! ମାର ମାର ।"

ଲାଗିଗଲା ଦୁଇଦଳ ଛାତ୍ରଙ୍କ ଭିତରେ ମାଡ଼ପିଟାପିଟି । ଚାଲିଲା ଇଟାପଥର । ଯେପଟେ ଲାଇବ୍ରେରି ଭିତରୁ ଧୂଆଁ ବାହାରୁଛି । ଅଧଘଣ୍ଟାଏ ପରେ ଗୋଳମାଳ ଭୁନି ପଡ଼ିଯାଇଥିଲା । ଛାତ୍ରମାନେ ଘରକୁ ଚାଲିଯାଇ-ଥିଲେ ।

ପାହାଡ଼ସିଂ ସୁରକୁ ରିକ୍‌ସାରେ ବସାଇ ଆଉଜାଇ ଧରି ଡାକ୍ତର-ଖାନାକୁ ନେଉଥିଲା, ତା'ର ମୁଣ୍ଡଫାଟି ଲହୁଲୁହାଣ, କାମିଜ୍ ଚିରିଛି, ରକ୍ତ ଲାଗିଛି । ତାକୁ କୁଣ୍ଢାଇଧରି ପାହାଡ଼୍ ସିଂ ନିଜେ ରକ୍ତାକ୍ତ । ଦୁହିଁଙ୍କର କୌଣସି ଶତ୍ରୁତା ନାହିଁ, କେବେ ନଥିଲା !

ପାହାଡ଼୍ ସିଂ ପଚାରିଲା "କେମିତି ଲାଗୁଛି ?"

ସୁର ହସିବାକୁ ଚେଷ୍ଟା କଲା, କହିଲା, "ମନ୍ଦ ନୁହେଁ ।"

"କ'ଣ ସ୍ୱେ ହେଲା ?"

ସୁର କହିଲା, "କେଜାଣି ?"



# ଖଲୁ

"ଚୌଧୁରୀ କ୍ଷେତ୍ରେଶ୍ୱର ପ୍ରହରାଜ ତ୍ରିପାଠୀ ଓଡ଼ିଶାର ନାନା ଜଗତ୍‌ରେ ଗ୍ରାମାଭ୍ୟନ୍ତରଠାରୁ ମହାନଗରୀଯାକେ ସର୍ବତ୍ର ସୁପରିଚିତ ।"

ଖବରକାଗଜମାନେ ବହୁତ କାର୍ଯ୍ୟବ୍ୟସ୍ତ; ଏଥିରେ କାହାର ସନ୍ଦେହ ନାହିଁ । ତଥାପି ସେମାନେ ଠିକଣା ସମୟରେ ଠିକଣା ଖବର ଛାପିବାରେ ହେଳା କରନ୍ତି ନାହିଁ, ଏଥିରେ ଅନ୍ତତଃ ମୋର ଆଦୌ ସନ୍ଦେହ ନାହିଁ ।

ସେ ସଳଖ, ଡେଙ୍ଗା, ଯେମିତି ପୁରୀର ଜଗାଘରର କେଉଁ ମାଲ, ନଡ଼ିଆଗଛ ଗୁଳଇଲେ ଠିଆହେଲେ ମାନେ,—ଚମ ଟିକିଏ କଇଁଥା ପରି ହଣ୍ଡୁ, ଟିକିଏ ନେଗୃତକୋସ୍ଥ, ଦନ୍ତ ଗୁମ୍ଫରୁ ଅଣ୍ଟାତ ବାହାରୁଏ ।

ହାତରେ ଚାଟଲ୍ ମୋଟା ବେତ, ବାଉଁଶ ବୋଲି ଭ୍ରମହେବ ତା ମୁଣ୍ଡଟି ବାଙ୍କୁଳ ।

ସକାଳ ହୋଇଥାଉ ବା ସଞ୍ଜ, ମଣିଷ କଚର ଦରବାରକୁ ବାହାରିଥାଉ କି ଅବା ଭଣ୍ଡାର ଖୋଜି, ସେ ହାବୋଡ଼ଗଲେ ଅଟକେଇବେ, ଗପିବେ । ମଣିଷ ଘର ଭିତରୁ ଯଦି ପିଣ୍ଡାକୁ ଓହ୍ଲାଏ ସେଠି ବି ସେ ଆଗୁଳି ଠିଆହେବେ, ପିଣ୍ଡାରୁ ସଡ଼କକୁ ଓହ୍ଲାଇପଡ଼ିଲେ ତଥାପି ସେଠି ବି ।

ଯୋଡ଼ିଏ ଡେଙ୍ଗା ଗୋଡ଼ ଓ ବୃଣ୍ଡାପୁ ପାଦ ପରି ଗୋଟିଏ ଡେଙ୍ଗା ବେତ, ଏତକ ଉପରେ ନିଶ୍ଚିନ୍ତରେ ଭାର ରଖି ସେ ଅନର୍ଗଳ କହୁଯାଉଥିବେ । ଲାଗୁଥିବ, ଏଥରକ ହେଲେ ଏ ଡୋରି କାଟିହେବ,—କାଟି ହେବ ନାହିଁ ।

ସେ ମୂର୍ତ୍ତିମାନ୍ ଅଠାଳିଆ ମମତା, କି ସ୍ନେହୀ ଗୃହାଣି । କି ସ୍ନେହୀ ହସ !

ଆଜକୁ ସାତ ବର୍ଷ ତଳ କଥା ମନେପଡ଼ୁଯାଉଛି । ମାଛି ଅନ୍ଧାର । ସେ କେମିତି ମୋ ବସା ଠାବକଲେ ମୁଁ ଜାଣେ ନାହିଁ । ମୁଁ ତ ସେଠିକି ଆସିଥାଏଁ ଦ୍'ଦିନ ହେବ । ନୀଳ କୂଳ, ନାଗଅଇର ଅରମା । ଗୃହକର ତ ଆଉ ଆଖିରେ ବି ପଡ଼ୁନାହାନ୍ତି । ମୋ ପକ୍ଷୀବଜ ଅର୍ଥାତ୍ ସ୍କୁଟରଟି ଯାଇଥାଏ ବଗିଡ଼ି । ରିକ୍ସା ସେଠି ସେତେବେଳେ ମିଳିବ ନାହିଁ । ସେଦିନ ବହୁତ ବଦଗ୍ରଧଚନ୍ଦ୍ରାମଣି ଆଉ ବୈଷ୍ଣବ ପାଣିଙ୍କ କର୍ଣ୍ଣାର୍ଜ୍ଜୁନ ବୁଝେଇ ବୁଝେଇ ମୁଁ ଆସିଥାଏଁ ଆଉ ମୁଣ୍ଡ ଭ୍ରମିଯାଇଥାଏ ଭୁହାଇ ଭୁହାଇ ପ୍ରଶ୍ନବାଣରେ—

"ପ୍ରିଟି ମେଡ୍ସ୍ ଅଲ୍ ଇନ୍ ଏ ରୋ, ଲେଖକ ପୋଲିନ, ତାର ଓଡ଼ିଆ ଭାଷାରେ ପ୍ରତିଛବି କେଉଁଠି ?"

"ସାର୍ ଆପଣ ପଢ଼ିଲେଣି କାର୍ଟେଟ୍ ବେଗର୍ସ୍ ! ସତ୍ତୁରି ଲକ୍ଷ ବନ୍ଧ କରିଲ୍ଣି । ରମାକାନ୍ତ, ସୀତାକାନ୍ତ ଓ ଅଭିମନ୍ୟୁ ଆପଣ ତୁଳନା କରି ଆମ୍ଭୁ ବୁଝାନ୍ତୁ—"

"ଏଗ୍‌ଜିଷ୍ଟାନ୍‌ସିଆଲିଜମ୍ ଉପରେ ଆଉ କି କି ଉଦ୍ଭାବନ ଆଧୁନିକ ସାହିତ୍ୟକୁ ଗ୍ରାସ କଲେଣି ?"

ଆଉ ମତେ ଲାଗୁଥାଏ ପରାଜିତ, କ୍ଳାନ୍ତ, ଯେମିତି ତୁଛାଟାରେ ମୁଁ ଶହେଟା ବୈଠକ ମାରି ଫେରିଛି, ସେଥିରେ କେଉଁଠି ଘାସ ପଶିଏ ବି ଗଜୁରି ନାହିଁ ।

କିନ୍ତୁ ଯିବାକୁ ତ ପଡ଼ିବ, ଫେରିବା ନାହିଁ ।

ଆଃ ! ଏଇ ନନ୍ଦନିଆ ଘୋରନ୍ତେଇ ପୋଉନ୍ତେଇ କାମ !

ନହେଲେ କେଡ଼େ ସୁନ୍ଦର ମୁଁ ବସି ବସି ଧ୍ୟାନ କରିଥାନ୍ତି ସେହି ଅଖଣ୍ଡ ସ୍ୱ ସଦାସନ୍ଧିସ୍ୱ ଶକ୍ତିକୁ—ଯେ ଆକାଶରୁ ଅଦେଖା ତେଜପୁଞ୍ଜ ଧରାକୁ ଓହ୍ଲାଇଲା ପରି ଆସୁଛି, ଆସୁଛି ମୁଁ ଜାଣେ, ତେଣୁ ତ ହଠାତ୍

ଏତେ ପରିବର୍ତ୍ତନ, ଆଲୋଡ଼ନ ବିସ୍ଫାରଣ । ଆଉ କେବେ ଅଦେଖା ରଶ୍ମିପୁଞ୍ଜର ଧାରେ ଧାରେ କେଉଁମାନେ ଡାକଗଲେ ଏତେ ଲୋକଙ୍କ ପରି ମୋ ମନ-ମନ୍ଦିର ପଦ ଉଜାଣି ଚଢ଼ି ପାରନ୍ତା, ମୁଁ ପାଆନ୍ତି ଶିରନ୍ତନ ଶକ୍ତିର ମୂଳ ଖଣି ସେହି ଅବ୍ୟକ୍ତ ଅକ୍ଷୟ ଜ୍ୟୋତିର୍ମୟର ପ୍ରାଣପୋଷଣଶକ୍ତି ।

ମୁକ୍ତ ଶରୀର ଉପରେ ଖଣ୍ଡେ ହଳଦିଆ ଲୁଙ୍ଗି, ମାଡ଼ିଆ ଉପରେ ଆକବର ଖାଁଙ୍କ ସୁବାସିତ ଗୁଡ଼ାଖୁର ଘର୍ଷଣ ସୁଖ, ନିର୍ଜଞ୍ଜାଳ ସମୟ, ଅଖଣ୍ଡ, ଉନ୍ନତ ଚିନ୍ତାରେ ଚେତନାର ଯେ ଆବୃତ ତା ବକ୍ଷପୁରେ ଧ୍ୟାନ,— କାହିଁ ? ଘିଆରର ଦାବ ଠିକ ହେଉଛି କେଉଁଠୁ ? ବଜାର ଯିବାକୁ ହିଁ ପଡ଼ିବ ।

ଆଉ ସେତିକିବେଳେ ସେ ।

"ଏଇଠି ଅଛ ମାଳମଣି ! ଓଃ ! କେତେ ଖୁସିଲାଗୁଛି ତମକୁ ଦେଖି ! ଲାଗୁଛି କେଉଁଦିନୁ ଖୁସିହୋଇ ନଥିଲି ।"

"ଆପଣ କେଉଁଦିନ ଖୁସି ହୋଇ ନ ଥିଲେ ସାର୍ ? ଆପଣ ତ କହନ୍ତି ଆପଣ ଫୁଟ୍‌ବଲ୍, ଯେତେ ପିଟିଲେ ଆହୁରି ଉପରକୁ ଡେଇଁବେ ।"

"ସେଇ ଫୁଟ୍‌ବଲ୍ ଭିତରୁ ପବନ ସରି ଆସୁଛି ମାଳମଣି, ଆଉ ବ୍ରତେଇଁ ମାସ ।"

"କାହିଁକି ସାର୍ ?"

"ମୋର ପେନ୍‌ସନ୍ ହେବ ।"

ହସିଲେ, କିନ୍ତୁ ମୁହଁ ବିଭଙ୍ଗ ଦିଶିଲା, ସ୍ୱରରେ କମ୍ପ ବାରି ପାରିଲି ।

ତାଙ୍କ ସମସ୍ୟା ହିଁ ଭାବିଲି ଠିଆ ଠିଆ, କେମିତି ନ ଭାବିବି ? କମ୍ ଶ୍ରଦ୍ଧା ଓ ସମ୍ମାନ କରେଁ ତାଙ୍କୁ ?

ଗୁଣବତୀକ କେତେବେଳେ ଗଲା ଜାଣେ ନାହିଁ । ନାକରେ ଚବର ଚବର ଶୁଭିଲା । ଆଉ ସେ ଚମକପଡ଼ି କହିଲେ—

"ହେଇ ଦେଖ, ଏବଠୁଁ ମତେ ଘୋଟିଲାଣି ସେ ରୋଗ ।"

"କ ବେଗ ସାର୍ !" ଆଶଙ୍କାରେ ପଚାରିଲି । କହିଲେ, "ପେନ୍‌ସନ୍ ନେଲେ ଅର୍ଥାତ୍ ସ୍ୱଧର୍ମଚ୍ୟୁତ ହେଲେ ଯାହା ହୁଏ । ତେଣିକି ମଣିଷଟା ଅଡ଼ୁଆ ସୂତା ନେଣ୍ଟାଏ, ଯାହାକୁ ଦେଖେ ତା' ଗୋଡ଼ରେ ଗୁଡ଼େଇ ହୋଇ ତା' କାମ ମାଟି କରେ, ତାକୁ ଅଟକାଏ, ଶ୍ରୋତା ଖୋଜି ବାହାରେ ।"

"କ'ଣସବୁ ଗୁଡ଼ାଏ କହୁଛନ୍ତି ସାର୍ ? ଆପଣ ପରା ପଚାରନ୍ତି ବୁଝାନ୍ତି ଯଦି ତୁମେ ସମସ୍ୟା ଭିତରେ ପଡ଼ି ମନରେ ଆନନ୍ଦ ଉତ୍ସାହ ରଖି ନପାରିଲ ତେବେ ତୁମେ ସାହିତ୍ୟିକ ବୋଲାଉଛ କେମିତି ?"

"ମୁଁ ସେପରି କେବେ କହୁଥିଲି ମୁଁ ଜାଣେ ନାହିଁ ନୀଳମଣି, ତୁମେ ବିଶ୍ୱାସ କର, ଯାହା କହୁଚି ସେସବୁ ମୋ ଅନ୍ତରର କଥା । ଅନୁଭବ କରୁଛି, ନା,—କଳ୍ପନାଚକ୍ଷୁରେ କହ ଦିବ୍ୟଚକ୍ଷୁରେ କହ ଯାହା କହ ମୁଁ ଦେଖିପାରୁଛି, ମୁଁ ପଚିଯାଉଛି ।"

"କି କଥା କହୁଛନ୍ତି ସାର୍ ? ଆପଣ କେଡ଼େବଡ଼ ! କି ମହାନ୍ ବ୍ୟକ୍ତିତ୍ୱ !"

ଯାହା ଆକାର ଯେତିକି ବଡ଼ ସେ ସଡ଼ିଗଲେ ଦୁର୍ଗନ୍ଧ ସେତେ ବେଶି ଦୂରକୁ ବ୍ୟାପେ ।"

"ଆପଣ ବୃଥା ନିଜକୁ ଏତେ ଦୁଃସ୍ଥ ଭାବୁଛନ୍ତି ସାର୍, ଭବିଷ୍ୟତ ପାଇଁ କର୍ମପନ୍ଥା ଠିକଣା କରି ଲାଗି ପଡ଼ନ୍ତୁ, ଆମେସବୁ ତ ଅଛୁ, ଚିନ୍ତା କ'ଣ ?"

"କର୍ମପନ୍ଥା !" ସେ ବିଳିବିଳେଇଲେ, ଗୁମ୍ ହୋଇ ରହି କହିଲେ—

"ଗୁଡ଼, ତୁମେ କୁଆଡ଼େ ବାହାରିଥିଲ, ଦେଲି ଅଟକେଇ ! ସେଉତେରିକା ! ଆଉ ଏ ଭୁଲ୍ ହେବ ନାହିଁ ନୀଳମଣି, ଦେଖିବ ତୁମେ !" ସେ ଅନ୍ଧାରରେ ଅଦୃଶ୍ୟ ହୋଇଗଲେ ।

ତା'ପରେ ସେ ପ୍ରକୃତରେ ପେନ୍‌ସନ୍ ନେଲେ, ତାଙ୍କ କର୍ମସ୍ଥଳରୁ ଅପସରିଗଲେ ।

ତାଙ୍କର ଜଣେ ପୁରୁଣା ବନ୍ଧୁ ହିସାବରେ ତାଙ୍କ ପାଇଁ ଦୁଃଖିତ ହୋଇ ହୋଇ ବଜାର ସଉଦା କରିବାକୁ ମୋ ବାଟରେ ମୁଁ ଗଲି । ସେ କୁଆଡ଼େ ଗଲେ ମୁଁ ଜାଣେ ନାହିଁ । ପନ୍ଥା ବହୁତ । କିଏ କାହା ଖବର ରଖେ ?

କିନ୍ତୁ ମୁଁ ଦୁଃଖିତ ହୋଇଥିଲି, ସେଇଥିପାଇଁ ସେତେବେଳେ ପାଇଥିଲି ଆନନ୍ଦ—ଯେ ମୁଁ ଚେତନାଶୂନ୍ୟ ନୁହେଁ । ଅକୃତଜ୍ଞ ନୁହେଁ, ତେଣୁ ତ ବନ୍ଧୁ ପାଇଁ ଦୁଃଖରେ ଦୁଃଖୀ ହୋଇପାରେ ! ନ ହେଲେ ଏ ସଂସାରରେ ଖାଲି ନିଜ ମନକୁ ମନ ହେଉପଛେ, ଦୁଃଖ କରୁଛି କିଏ ? ଖବରକାଗଜରେ ଏତେ ଦୁର୍ଘଟନା ତ ବାହାରେ, ଆକସ୍ମିକ ବିପଦ, ଆକସ୍ମିକ ମୃତ୍ୟୁ, ହତ୍ୟା, ଅକାଳବିୟୋଗ—ଜଣକର ବୋଲି ନୁହେଁ, ଶହ ଶହ, ହଜାର ହଜାର । ଫଟୋ ବି ଛପା ହୁଏ । ସକାଳେ ଚା' ପିଇଲାବେଳେ ଚା' ସଙ୍ଗରେ ଖବରକାଗଜ ଯେମିତି କି ଚାଟିସୁଆଦିଆ,— ଆଉ ଏଭଳି କିଛି ନଥିଲେ ଯେ'ତ ପିଠା ଅଲଣା । ଅତଏବ ଜଣକର ଦୁର୍ଦ୍ଦଶାର କାହାଣୀ ଆଉ ଜଣକ ପାଇଁ ଜିଭକୁ ଲୁଣ, ଦୁଃଖକରୁଛି କିଏ ? କିନ୍ତୁ ମୁଁ ! ମୁଁ ! ମୁଁ !

ସେହି ପ୍ରଚଣ୍ଡ ମୁଁ'କାର ମୋ ଭିତରେ ବିରାଟ ବପୁ ଦେହ ସ୍ଫିତ ହୋଇ ଠିଆହେଲା ସେତେବେଳେ ।

ମୁଁ ଦୁଃଖ କଲି ।

ଆଖି ପୋଛୁଲି ନାହିଁ, ସେଠି ଖାଲି ସଡ଼କର ଗହଳା ଧୂଳି, ପାଣି ନଥାଏ । ଲେଉଟିଗଲି ନାହିଁ, ମୁଁ ଶୁଣିଆସିଛି ଇଲିସି ଉଠିଛନ୍ତି, ଶସ୍ତା, ଅଳ୍ପକିଛି ହେଲେ ଆମର ଚଳିଯିବ । ସେ କାମ ପାଇଁ ବି ମୁଁ, ଆଉ କେହି କ'ଣ ଚାହିଁ ପାରିବ ? ମୁଁ-ମୁଁ-ମୁଁ—ସେ ବିଚକ୍ଷଣତା ମୁଁ

ଜାଣେଁ ଏକା ମୋର ଅଛୁ ଆପଣାକୁ ସମ୍ବର୍ଦ୍ଧନା ଦେଉ ଦେଉ ମନେ-ପଡ଼ୁଥାଏ, ଲୋକ ଥିବେ ଲକ୍ଷେ, ଚୁଇଥିବ ଜଣକର । ଆଉ ଯେ ରୁଚିକୁ ପରଖି ପରଖି ନିର୍ଭୁଲ କରିବା ପାଇଁ ଥିବ ବହୁତ ଅଭିଜ୍ଞତା । ସେ ଜଣକ ମୁଁ ।

ଚୌଧୁରୀ ଭେଳେଶ୍ୱର ପ୍ରହରାଜ ତ୍ରିପାଠୀଙ୍କ କଥା ଭାବି ମୁଁ ଯେଉଁ ଗଭୀର ଦୁଃଖ କଲି ତହିଁରେ ମାଛ ବଜାର ଆଡ଼କୁ ମୋ ଗତି ଧୀମେଇଗଲା, ମୁଣ୍ଡଟି ଛାତି ଉପରକୁ ଟିକିଏ ଢଳି ପଡ଼ିଲା, ଆଉ ଖଣ୍ଡେ ପାନ ମୁଁ ମୋ ଡବାରୁ କାଢ଼ି ପାଟିରେ ପକାଇବାକୁ ମୁଁ ଭୁଲିଗଲି । ଗୋଟିଏ ଦୁର୍ଘଟନା ବି ଘଟିଲା, ଅର୍ଥାତ୍ ଗୋଟିଏ ଟୋକା ସାଇକଲରେ ଗଲାବେଳେ ମୋ ଦେହରେ ଘଷି ହୋଇଯାଇ କହିଦେଇ ଗଲା "ଆଉ ଟିକିଏ ହୋଇଥିଲେ ପାନେ ପାଇଥାନ୍ତ ଯେ ।"

ତା'ପରେ ମୁଁ କେତେଉଠି ପୁଣି ଦୁଃଖ କରିବାରେ ଲାଗିଗଲି । କିନ୍ତୁ ତେଣିକି ଭେକେଶ୍ୱର ଆଉ ତାଙ୍କ ସମସ୍ୟା ମୋ ମନକୁ ଲାଗିଲା ଗୋଟିଏ ରୂପକ ପରି । ସେହି ରୂପକ କଥା ଭାବୁଁ ଭାବୁଁ ମୁଁ ଦେଖିଗଲି ମନେ ମନେ ନାନା ମଣିଷଙ୍କୁ ନାନା ଅବସ୍ଥାରେ ନାନା ସମୟରେ । ସେମାନେ—କିଏ ରାଜନୈତିକ ନେତା, କିଏ ସେନାପତି, କିଏ ଆଖିକୁ ଦିଶୁନଥିବା ଚିତ୍ରକର, କିଏ ହାତକୁ ପକ୍ଷାଘାତ ହୋଇଥିବା କାରିଗର, କିଏ ତଣ୍ଟି ଫାଟି ଯାଇଥିବା ଗାୟକରତ୍ନ, କିଏ—

ଯେହି ଯେ ଯୋଧ, ଯୂଥ ଅଛୁ, ସେ ଆଉ ଯୂଥପତି ନୁହେଁ, ଯୂଥ-ପତିତ ଆଉ ଜଣେ ।

ସେହି ସେ ମୂରବି—ଏବେ ହାବୁଡ଼ିଲେ ଟଗଲ୍ ଟୋକାଏ ଖୁଣ୍ଟା-ମାରନ୍ତି "ଫେର୍ ବାହାରିଲାଣି, ବୁଲିଲାଣି, ହାତଗୋଡ଼ ଖଲଖଲ ହେଲାଣି, ଲୁଚୁକୁଚୁ କରିବ, ଘର ଭାଙ୍ଗିବ, "ଆରେ ବାବା ବସି ମାଳା ଗଡ଼ାଉନା କାହିଁକି ହୋ ? ସବୁଦିନେ କ'ଣ ତେମେଇ ସଂସାରଟାକୁ ଟେକି ଧରିଥାନ୍ତ ?"

ଆଉ ଦେଖି ପାରିଲି ସେ ବି ଯାତ ସମୁଦ୍ର ଡ଼ିଆଇଁ ଚାଲି ପାରନ୍ତା ପରି ତା ମନର ହାକୁହାକୁ ଦୁନିଆଁର ଲୋକଙ୍କ ଘୃମୁକୁ ।

(ମୁଁ—ସେ ଦିନେ ଚନ୍ଦନ ଫଟାଉଥିଲି ଗୃହଆଡେ଼, କେତେ ଲୋକ କରପତ୍ର ଯୋଡ଼ୁଥିଲେ, କେତେ ଲୋକ ନାଲଗୁଲି ଦେଉଥିଲେ ଖାଲି ତାଙ୍କ ନାଁଟା ଠିକଏ ମୋ କାନରେ କେମିତି ପଡ଼ନ୍ତାକ ଭବ) "ମୁଁ ଏବେ ଅମୁକ ସହର ଉପକଣ୍ଠରେ ରହୁଛି ଜଙ୍ଗଲରେ ଗୁମ୍ଫା ଭିତର ବାବାଜୀଟିଏ ଭଳି । ଅନ୍ୟ ଲୋକଙ୍କ ସଙ୍ଗରେ ମୋର ଜାଣି ଆଦୌ ଦେଖାଗୃହାଁ କଥାଭାଷା ହୁଏ ନାହିଁ—ଖାଲି ସେହି ଜଗୁଆଳଗୁଡ଼ାକଙ୍କ ସଙ୍ଗେ ମୋର ଦେଖାଗୃହାଁ ଯେଉଁମାନେ ମତେ ଜଗି ରହିଛନ୍ତି ଯେମିତି ଅନ୍ୟମାନଙ୍କ ସଙ୍ଗରେ ମୁଁ ସମ୍ପର୍କ ନରଖେ କି ଅନ୍ୟମାନେ ମୋ ସଙ୍ଗରେ ସମ୍ପର୍କ ନରଖନ୍ତି । ମନେ ଲଗୁଛି ମତେ ବେଢ଼ି ରହିଥିବା ଲୋକଙ୍କର ବେଶିବେଳ ଖର୍ଚ୍ଚ ହୁଏ କେମିତି ମୋ ପାଖରେ ଆଉ କାହାକୁ ପୂରେଇ ନଦେବେ ସେଇଥିରେ ।"

ସେଦିନ ମଞ୍ଚରେ ବାଟରେ ଯାଉଯାଉ ତାଙ୍କ ପାଇଁ ଦୁଃଖ କରିସାରି ମୁଁ ଭାବିଥିଲି ମୁଁ ତାଙ୍କଲାଗି ଶେଷକୃତ୍ୟ କଲି, କିଛି ନ ହେଉ, ଜଳରେ କାଠ ଖଣ୍ଡେ ତ !

ସେତିକିରେ ତାଙ୍କପ୍ରତି ମୋ କର୍ତ୍ତବ୍ୟ ସରିଲା ଭାବିଥିଲି, ଆଉ ବେଶି ପାଇଁ ଅଖାରେ କି ମନରେ ବଳ ନାଇଁ, ବେଳ ବି ନାଇଁ ।

ତାଙ୍କଠୁଁ ତାଙ୍କ ବିଷୟରେ ଯାହା ମୁଁ ଶୁଣିଥିଲି, ତାଙ୍କ ବିଷୟରେ ଯେଉଁ ଧାରଣା ମୁଁ କରିଥିଲି, ମୋର ଗୃହଁକୁ ଗ୍ରୁଏ ବିଶ୍ୱାସ ହୋଇଥିଲା— ଯେଉଁ ଦେଖାକେଶ୍ୱରଙ୍କ ପ୍ରତି ମୋର ଏତେ଼ ଶ୍ରଦ୍ଧା ଓ ସମ୍ମାନ (ମୋର— ମୁଁ-ମୁଁ-ମୁଁ )—ମୋର ସେହି ଶ୍ରଦ୍ଧାରେ ଗଢ଼ା ରୂପ ହିଁ ସେ ନିଶ୍ଚୟ, ଭିନେ ହୋଇ ନ ପାରନ୍ତି, ମୁଁ ତ ଅନୁଭବ କରୁଛି । ମୁଁ ଯାହା ବିଷୟରେ ଯେଉଁ ଧାରଣା କରୁଛି ସେ ତ ଅବିକଳ ସେହିଆ ( ଯାହା ମୁଁ ଦେଖେଁ, ଯାହା ମୁଁ ଭାବିପାରେଁ ସବୁ ତ ସେଇଆ, ମୋ ଚିତ୍ତ ବାହାରେ ତା'ର

ଅଘ୍ରିଉ କାହିଁ ? ), ମୋର ଧାରଣା ଭୁଲ୍ ହୋଇ ନ ପାରେ ( କେମିତି ହେବ ? ମୁଁ—ମୁଁ—ମୁଁ—), ମୋ ହିସାବ ମୋ କଳନା ଭୁଲ୍ ହୋଇ ନପାରେ (କେମିତି ହେବ ? ମୁଁ—ମୁଁ—ମୁଁ—), କମ୍ପା କାର୍ଯ୍ୟ ଓ ରୂପର ସମଷ୍ଟି ହୋଇ ଚୌଧୁରୀ ଭେଙ୍କେଟେଶ୍ୱର ବ୍ରହ୍ମବରଜ ତ୍ରିପାଠୀଙ୍କର ତା' ବାହାରେ ଅଲଗା ଅସ୍ତିତ୍ୱ ନ ଥାଇପାରେ ।

ଦୀର୍ଘଶ୍ୱାସ ପକାଇ ମୁଁ ଭାବୁଥାଏଁ, ତାଙ୍କଭଳି ଲୋକ (ଯାହାଁଙ୍କୁ ମୋ ଭଳି ଲୋକ ଶ୍ରଦ୍ଧା ଓ ସମ୍ମାନ କରେ )—ଟେନ୍‌ସନ୍ ନେଇ ଯେମିତି ହଠାତ୍‌ହଠାତ୍‌ରେ ପଡ଼ିବେ ( ପଡ଼ିବ ତ, କେତେ ସିଧା, କେତେ ସରଳ, ଆଙ୍ଗୁଠି କେବେହେଲେ ବଙ୍କା ହୋଇ ନ ଥିବ ଯେ ଘିଅ ଉଠିଥିବ ) ଯେମିତି ହଠାତ୍‌ହଠାତ୍‌ରେ ପଡ଼ିବେ—ନସ କାହାରିକୁ କିଛି କହିବେ ନାହିଁ, ପାଟିରେ ପକେଇଦେବେ ତାଲା, କବାଟରେ ଦେବେ କିଳଣି, ଝରକା ବୁଜିଥିବେ, ବସି ବସି ନାମ ଜପୁଥିବେ । ଭିତରେ ଭିତରେ ତାଙ୍କ ଛାତି ଫାଟିଯାଉଥିବ, ଗୋଟାକ ପରେ ଗୋଟାଏ ଦୀର୍ଘଶ୍ୱାସ, ଯେମିତି ଆଉ ଗୋଟାଏ, କିଏ ଜାଣିଛି ? ହୁଏତ ଆକାଶ କରିବାକୁ ଦୀପଟି ଟେକିଥିବେ— ସେଇଠି ସେ ଟଳିପଡ଼ିବେ ।

ଆଃ !

ମନେଅଛି, ତଣ୍ଟିରେ ସରୁକଣ୍ଟାଟାଏ ଲାଗିଗଲା, ମୋ ଯନ୍ତ୍ରଣା ଦେଖି ମୋ ସ୍ତ୍ରୀ ସାନ୍ତ୍ୱନା ଦେଲେ ।

"ସେମିତି ହୁଏ ନ ! ଇଲିସି ମାଛର କଣ୍ଟା ସାର୍, ଶୁଖୁଆ ଭାତ ଗୁଣ୍ଡାଏ ଗିଳିଲେ ବଳେ—।" ଆଉ ନିଜକୁ ମୁଁ ମନେ ମନେ ଗାଳିଦେଲି, କାହିଁକି ଅନ୍ୟମନସ୍କ ହେଲି ବୋଲି । ଯଦି ତଣ୍ଟିରୁ ଖସି ଶ୍ୱାସନଳୀ ଭିତରକୁ ଯାଇଥାଏ ତେବେ ? ଆଉ ମନେପଡ଼ିଲା, କେବେ ଖବର- କାଗଜରେ ପଢ଼ିଥିଲି, ଏ ଦେଶର ଜଣେ ବୀର ସେନାପତି ଜାପାନରେ ଭୋଜି ଖାଉ ଖାଉ ତଣ୍ଟିରୁ ଯାଇ ଶ୍ୱାସନଳୀ ମୁହଁରେ ମାଉଁସ ଖଣ୍ଡେ ଅଟକିଗଲା ଓ ସେଇଠି ସେ ଉଦ୍ଧୁମୁଦ୍ଧା ହୋଇ ମଲେ ।

ଦୁଇମାସ ଚାଲିଗଲା ତାଙ୍କୁ ମୁଁ ଦେଖିନାହିଁ । ତାଙ୍କ କଥା କିଛି ଶୁଣିନାହିଁ ।

କେତେବେଳେ ମୁଁ ଭାବଥିବ—ଏଥର ଝିଙ୍କିଲ୍ବଣି ତାଙ୍କ, ଦୁଆର-ମୁହଁରେ ଆଉ ପାଟିରେ । ଭାବଥିଲି ତାଙ୍କ ଖାନ୍ଦାନ କଥା, ଗାଁ ଆଗରେ ଚୌଧୁରୀ ପଛରେ ବ୍ରହ୍ମବର ଓ ତ୍ରିପାଠୀ । ମଝିରେ ଖୋଲେଶ୍ୱର, ସେ ତାଙ୍କ ଗାଁ 'ପୋଟାଗଡ଼'ର ଅତି ପ୍ରସିଦ୍ଧ ମହାଦେବ । ସାମନ୍ତ ବ୍ରାହ୍ମଣ, ପୂର୍ବପୁରୁଷ ଉଠିଆସିଥିଲେ—ଯେମିତି ସମସ୍ତଙ୍କ ପୂର୍ବପୁରୁଷ ଉଠି ଆସିଥାନ୍ତି—ତେବେ ଶାସନରୁ କି କରବାଡ଼ରୁ ମନେ ନାହିଁ । ପାଞ୍ଚଶ-ବର୍ଷର ପୁରୁଣା ଖାନ୍ଦାନ୍, ତା' ଆଗର ବି ହୋଇପାରନ୍ତି । (ମୁଁ ବି ଖାନ୍ଦାନ୍—ମୁଁ--ମୁଁ—ମୁଁ—ଶୁଣିଛି ପୂର୍ବପୁରୁଷ ଉଠି ଆସିଥିଲେ କାନ୍ୟକୁବ୍ଜ ଆଡ଼ୁରୁ କେଉଁଠୁଁ; କେଉଁଠୁଁ ? କେଉଁଠୁଁ ? କେଉଁଠୁଁ ?)

ସୁତରାଂ ଖାନ୍ଦାନ ଇତିହାସ, ଏବେ ମଣିମାଙ୍କ ରାଜପ୍ରାସାଦ ଭଡ଼ା ଲାଗିବାକୁ ଯାଉଛି ସେଠି ଯାତ ତିଅଣ ରଖା ହେବ । କହ ତାକୁ ଖଣ୍ଡମଣ୍ଡଳଯାକର ସବୁଠୁଁ ମହଙ୍ଗା ହୋଟେଲ ଯେଉଁଠି କାର୍‌ରେ ଚଢ଼ି ସିନେମା ଘର ଭିତରକୁ ପଶି ହେବ—

କିନ୍ତୁ ଖୋଲବାବୁଙ୍କ ଗୁଣ କଏ ଗାଇସାରିବ ? ମୋର ଯେବେଠୁ ବକ୍ତାମାନଙ୍କରେ, ଯେତେବେଳେ,—ସେହି ମାଛହାଟରେ ନ ହେଲା କାହିଁକି, ମୋର ବହୁମୂଲ୍ୟ ଭାଷଣ ଶୁଣିବାକୁ ଅନ୍ତତଃ ଜଣେହେଲେ ଶ୍ରୋତା ଅଟକାଏ, ମୁଁ ସମସ୍ତଙ୍କୁ ଶୁଣେଇ ଶୁଣେଇ ବଡ଼ପାଟିରେ କହେଁ (ମୁଁ—ମୁଁ—ମୁଁ—ମୁଁ ମାର୍କ୍ସିକ, ମୁଁ ଟଷ୍ଟବାଦୀ, ମୁଁ—)

"ଚୌଧୁରୀ ଖୋଲେଶ୍ୱର ବ୍ରହ୍ମବର ତ୍ରିପାଠୀଙ୍କ କଥା ଭାବ । ଏ ଦୁନିଆଁ ଅକୃତଜ୍ଞ ।"

ସତରେ, ଖୋଲେଇବା ଲୋକ ତ ସେହି । ଆଉ କଏ ସେମିତି ପୁଅଟାଏ ? ଫୁଟ୍‌ବଲ୍ ଖେଳାଳି ଦଳ ଗଢ଼ିବା, ନାଟକ ଅଭିନୟ କରେଇବା, କାଠକଣ୍ଢେଇ ତିଆରି କରେଇବା, ଠେଙ୍ଗା ତିଆରି କରେଇବା ସାହିତ୍ୟ ଚର୍ଚ୍ଚା କରିବା, ଦପ୍ତରରେ ଘରଣୀମାନଙ୍କ ହାତ୍ର ଗପ ଉପନ୍ୟାସ ଲେଖେଇବା ଉଦ୍ୟମ କରିବା, ଗୀତଗାଇବା ଲାଗି, ନାଚ ଅଭ୍ୟାସ କରିବା ଲାଗି ଦଳ ଗଢ଼େଇବା, କ'ଣ ନ କରେଇଛନ୍ତି ସେ ! ସେ ଚହଞ୍ଚି

ଗଲେ ଫଗ ମାଟିମେଦ ଗୁଳିବା ଆରମ୍ଭ କରେ ! କାହାର କେଉଁ ନିମିତ୍ତ ଫବକୁ ସେ ନ ଯାଇଛନ୍ତି । ଯେତେ ଝଡ଼ବର୍ଷା ଲଗିଥାଉ, କେଉଁ ଝଗ୍ରକୁ ଯିବାପାଇଁ ନିମନ୍ତ୍ରଣ ନ ପାଇ ସେ ନ ଯାଇଛନ୍ତି ?

ଆଉ, କିଏ ଭୁଲିପାରିବ ତାଙ୍କ ବହୁ ଲେଖା ? କେଜାଣି କେତେ ଗପ, କେତେ ଉପନ୍ୟାସ, କେତେ କବିତା, କେତେ ଏକାଙ୍କୀ ଦ୍ୱିଅଙ୍କୀ ତ୍ରିଅଙ୍କୀ ନାଟକ, ଡିରିଶି ବର୍ଷଯାକେ ନାନା ପତ୍ରିକାରେ କେତେ କେତେ ଲେଖା ସେ ନ ଛପେଇଛନ୍ତି !

"ନିତ୍ତ ମୋ ଲେଖିବାବେଳ ବଡ ଦଶଟାରୁ ଗୋଟାଏ" ସେ କହନ୍ତି, "ସେତିକବେଳେ ଦେଶ ମାତୃଭାଷାଙ୍କୁ ଆରାଧନା କରିଥାଏଁ । ମୁଁ ଜାଣେ ମୋର ସେ ପୂଜା ମନ୍ତ୍ରହୀନ, କ୍ରିୟାହୀନ, ମୁଁ ଜାଣେ ମୁଁ ହେବି- ନାହିଁ ରବୀନ୍ଦ୍ରନାଥ, ଟି. ଏସ୍. ଇଲିଅଟ କି ଦୋସ୍ତୋଭସ୍କି କି କେହି ଜଣେ, କିନ୍ତୁ—"

ମୁହଁ 'କିଂ—ନ୍ତୁ' ବୋଲି ଟାଣିକରି କହୁ କହୁ ତାଙ୍କ ଛଳଛଳ ଆଖିରେ ବିଜୁଳି ଖେଳେ, କହନ୍ତି "ସାହିତ୍ୟର ସେବା ଜନ୍ମଭୂମିର ସେବା, କିଏ ପ୍ରଶଂସା କଲା କି ନିନ୍ଦା କଲା ସେଥିରେ କି ଯାଏ ? ତୁମେ ଯେତେ ଭଲ ଲେଖ, ତାଠୁଁ ବଳି ବଳି ଭଲ ଲେଖା ବହୁତ ଲୋକ ଲେଖୁଥିବେ । ତୁମେ ଯେତେ ବାଜେ ଲେଖ, ତାଠୁଁ ବଳି ବାଜେ ଲେଖା ବି ବହୁତ ଛପା ହେଉଥିବ । ତୁମେ ଥରେ ଲେଖି ଛପେଇଦିଅ, ବହୁକାଳ ଯାକେ ଲେଖୁଥିଲେ ନିଶ୍ଚୟ କେହି ନା କେହି ପଣ୍ଡିତ ସମାଲୋଚକ ତାକୁ ପ୍ରଶଂସା କରିବେ, ତୁମ ଲେଖାରୁ ଏଭଳି ଚମତ୍କାର ଅର୍ଥ ସବୁ ବାହାର କରିବେ ଯେ ତୁମେ ତୁମ କାନକୁ ବିଶ୍ୱାସ କରିପାରିବ ନାହିଁ, ଭାବୁଥିବ—ଏଭଳି ଅର୍ଥ, ଏଭଳି ଜ୍ଞାନ, ପାଣ୍ଡିତ୍ୟ, ପ୍ରତିଭା ଏଇ ମୋର ମୁଣ୍ଡରୁ ବାହାରିଥିଲା ନା !"

'ଭୋଳେଶ୍ୱର ଗ୍ରନ୍ଥାବଳୀ' ପ୍ରଥମ ଭାଗ ବି ବାହାରିଥିଲା, "ଗ୍ରନ୍ଥାବଳୀ ପ୍ରକାଶନ ଲିମିଟେଡ୍" ତା' ପ୍ରକାଶକ । ଆଉ ତା'ପରେ ଭୋଳେଶ୍ୱରବାବୁ ନିଜେ ମତେ କେତେଥର କହିଛନ୍ତି, କେତେଥର କେତେ

ଓଡ଼ିଆ ଅଧ୍ୟାପକ ତାଙ୍କ ଲେଖା ବିଷୟରେ ପିଏଚ୍. ଡି., ଡି. ଲିଟ୍ ଆଦି ଉପାଧି ପାଇବାକୁ ଗବେଷଣା କରୁଛନ୍ତି, ତାଙ୍କୁ ନାନା କଥା ପଚାରି ଟିପି ନେଇଛନ୍ତି, ଯଥା ତାଙ୍କ ବଂଶାନୁକ୍ରମଣୀ, ତାଙ୍କ ରୁଚି, ମତ, ଅଭ୍ୟାସ, ଜଣେ ତ ଥରେ ଗୋଟିଏ 'ହୋମିଓପ୍ୟାଥିକ୍ ପ୍ରଶ୍ନାବଳୀ' ଫର୍ଦ୍ଦ ଘେନି ଚାହାଁଣ ସେହି ଅନୁସାରେ ବହୁ ପ୍ରଶ୍ନ ପଚାରି ଉତ୍ତର ଲେଖି ନେଇଥିଲେ, ଯଥା :— "ଆପଣ ରାତିରେ ଶୋଇ କି କି ସ୍ୱପ୍ନ ସାଧାରଣତଃ ଦେଖନ୍ତି ? ଥଣ୍ଡା ଖାଇବାକୁ ଭଲପା'ନ୍ତି ନା ଗରମ ? ଘୁଙ୍ଗା ରହିବାକୁ ଭଲପାଆନ୍ତି ନା ଘୋଡ଼ିପୁଡ଼ି ହୋଇ ? ଖଟା, ମିଠା, ରାଗ, ପିତା, ଲୁଣିଆ, କଷା କ'ଣ ଭଲଲାଗେ ? କିଭଳି ଦୃଶ୍ୟ କିଭଳି ଫୁଲ ଆପଣଙ୍କୁ ଭଲଲାଗେ ?"

ଯୋଗେଶ୍ୱରବାବୁ ବିନମ୍ରରେ ମୁହଁ ତଳକୁ ପୋତି କହୁଥିଲେ— "କିବା ଲେଖକ ମୁଁ ! କ'ଣ ବା ଲେଖିଛି ! ମୋ ବିଷୟରେ ଏତେ ତଥ୍ୟ ତାଙ୍କର ଦରକାର ! ତେବେ,—ସମାଲୋଚନା ଲାଗି ନାନା ବୈଜ୍ଞାନିକ ପଦ୍ଧତି ସବୁ ବାହାରୁଛି ତ ! ଆମେରିକା—"

"କାହିଁ ସେ ସନ୍ଦର୍ଭମାନ ? କ'ଣ ହେଲା ସେ ସବୁ ତଥ୍ୟ ?" ମୁଁ ରାଗରେ ମୋ ନିକଟତମ ଶ୍ରୋତାଙ୍କୁ ଅନାଇଁ ପଚାରେଁ, କହେଁ, "ଦୁନିଆଁ କ'ଣ ତାଙ୍କୁ ଦେଲା ? ଏ ଦେଶ କି ପୁରସ୍କାର ଦେଲା ? ଅକୃତଜ୍ଞ, ଅକୃତଜ୍ଞ ସମସ୍ତେ । ଯେତେଦିନ ପର୍ଯ୍ୟନ୍ତ ପ୍ରେ ଓଡ଼ିଶା—"

ସେ ଆଉ ଆସିବେ ନାହିଁ ଭାବି ମୁଁ ଯେତେବେଳେ ତାଙ୍କୁ ଭୁଲି ଯାଇଥିଲି ଦିନେ ସଞ୍ଜବୁଡ଼ିଆ ସେ ଆସି ପହଞ୍ଚିଗଲେ । ଚଉକି ଉପରକୁ ଗୋଡ ଟେକିନେଇ ଦେକା ମଣ୍ଡଳି ପକାଇ ଆଉଜିପଡ଼ି ବସି ପଡ଼ିଲେ । ଖୁବ୍ ଖୁସି ଓ ଉତ୍ସାହ ଥାଏ ତାଙ୍କଠି ।

ତା'ପରେ ଗପିଲେ । ତାଙ୍କ ନିଜ କଥା । ସେ ବଦଳିତ କଥା । ସେ ତାଙ୍କ ପରିବର୍ତ୍ତିତ ଅବସ୍ଥାରେ ଖାପି ଯାଇଛନ୍ତି । ପିଲାଙ୍କ ପଢ଼ା ବନ୍ଦ ହୋଇଛି, ଚିନ୍ତା ନାହିଁ, ଜଣେ କଲଣି ଜାଲେଣି କାଠଗୋଲାଟିଏ, ଜଣେ ସାନ ଗୁଡ଼ଜଡ଼ାଳ ଦୋକାନ, ଜଣେ ଓଷଧ ବିକିବା ପାଇଁ କୁମ୍ପାନି-ମାନଙ୍କଠୁଁ ଏଜେନ୍ସି ଖୋଜୁଛି ।

ଘଣ୍ଟାଏ ପରେ ଅଜାଣତରେ ପଗ୍ଗରିଦେଲି, "ଆପଣ ନିଜେ କେମିତି ସମସ୍ତ କଟୋଉଛନ୍ତି ?" ପକେଟ୍‌ରୁ ମୋଟା ଖାତାଟିଏ ବାହାର କରି କହିଲେ "ଶୁଣ ତା'ହେଲେ । ନିଦମାଡ଼ିଲେ ଶୁଏଁ । ନିଦରୁ ଉଠିଲେ ଲେଖେଁ । ଏଇ ମୋର ନୂତନତମ । ଆଚ୍ଛା, ପଢ଼ିବା ଆଗରୁ ବୁଝାଏଁ ଟିକିଏ—

ମଣିଷ ନିଦରୁ ଉଠୁଛି । ଧରି ନେବା ତା'ର ପୂର୍ବ ସ୍ମୃତି ନାହିଁ । ପୁଣି ଶୋଇବାଯାକେ ଯାହା ଦେଖିଲା ଶୁଣିଲା ଅନୁଭବ କଲା ସେଇ ହେଲା ତା' ସ୍ମୃତି । ଶୋଇପଡ଼ିଲା ତ ଗଲା ଭୁଲି, ଟେପ୍‌ରେକର୍ଡ଼ର ଟେପ୍ ଇରେଜ୍ ହେଲା, ରବରରେ ପେନ୍‌ସିଲ୍ ଲେଖା ନିଶ୍ଚିହ୍ନ ହେଲା, ସ୍ଲେଟ ପୋଛି ଦେଲା । ଯେମିତି । ତେଣୁ ଏଇଟିକ ସ୍ମୃତିସମ୍ବଳକୁ ମୁଁ ସାହିତ୍ୟ ରୂପ ଦେଉଛି । ଯେତେ ଜିନିଷ, ଗଛ, ପ୍ରାଣୀ, ମଣିଷ, ଯାହା ଯାହା ତା' ନିଘାକୁ ଆସିଛି ସବୁ ହେବ ତା' ଲେଖା ପାଇଁ ଉପାଦାନ । ସାଇକଲଟାଏ ଗଲା, ସେ ଦେଖିଲା । ସାଇକଲଟାକୁ ମଣିଷ ବୋଲି ଭାବିନେଇ ସେ ତା' ବ୍ୟକ୍ତିତ୍ୱ ଫୁଟେଇବ, କାହାଣୀ କହିବ । ଏ ସୃଷ୍ଟି ଭିତରେ ସେ ସାଇକଲଟାର ସ୍ଥାନ କେଉଁଠି, ସ୍ଥିତିର ସ୍ୱରୂପ କ'ଣ ସେ ବିଷୟରେ ବିଶ୍ଳେଷଣ କରିବ । ସେମିତି—ଗୋଟାଏ ଗଛ ବିଷୟରେ, କି ଗୋଟାଏ ମାଛ ବିଷୟରେ । ଏ ସବୁ ଏକାଠି ହେଲେ ହେବ ଜୀବନ୍ତ, ପୂର୍ଣ୍ଣାଙ୍ଗ ଉପନ୍ୟାସ । ପ୍ରକୃତ ପରି ତା' ରୂପ । ଯେଉଁଠି ତୁମେ ଯାହା ଖୋଜିବ ତା' ପାଇବ । ଶୁଣ ଏଥର, ଆଜି ଆମେ ପଚିଶ ପୃଷ୍ଠାଯାକେ ଗଡ଼ାଇ ପାରିବା । ସେଇଠୁ କାଲିକି ଲେଖି ଆଣିଥିବି -- ଆହୁରି ପଚିଶ ଖଣ୍ଡିଏ ପୃଷ୍ଠା । ଭଲ ଲାଗୁ ଏମିତି, ନା କ'ଣ କହୁଛ ?"

ଓଃ !

ତହୁଁ ଆରଦିନ ସନ୍ଧ୍ୟାବୁଲେ ଘରେ ଆଉ ନ ଥିଲି । କି ତହୁଁ ଆରଦିନ ।

ପୁଣି ଦିନେ, ପହଞ୍ଚିଗଲେ ଆସି ସକାଳେ । ଗୁଡ଼ଟା ଗୁଡ଼ଉଁ କଲି । ସେଦିନ ସେ ଦୁଃଖିତ ହେଲେ ଯେ ଖାତାଟା ଆଣିନାହାନ୍ତି । ଠିଆ ଠିଆ ଗପ ହେଲି, ଘଣ୍ଟା ଆଡ଼କୁ ବାରମ୍ବାର ମୁଁ ଅନାଉଁଥାଏଁ । ସେଥିରେ

ତାଙ୍କର ଆପତ୍ତି ନାହିଁ । ସେ କହି ଲାଗିଥାନ୍ତି । କର୍ମସ୍ଥଳୀକୁ ଯିବା ପୂର୍ବରୁ ଖାଇବାକୁ ବେଳ ପାଇଲ ନାହିଁ । ତା'ପରେ ମୁଁ ଆହୁରି ସତର୍କ ରହିଲି । ଏଭଳି ବ କେତେଥର ହୋଇଛି—ଯଦି ଭେଟ ହୋଇଛି ମୁଁ ଦେଖି ବି ଦେଖି ନାହିଁ, ସତେ ଯେମିତି ମୋ କାନକୁ ଭଲ ଶୁଭେ ନାହିଁ, ମୋ ଆଖିକି ଭଲ ଦିଶେ ନାହିଁ । ଏ ସାଧାରଣ ଉପାୟଟି ମୁଁ ଅନେକ ବଡ଼ ବଡ଼ ଲୋକଙ୍କଠୁଁ ଦେଖି ଶିଖିଛି । ସେମାନଙ୍କୁ ଦଣ୍ଡବତ କଲେ ସେମାନେ ମୁହଁକୁ ବଲବଲ କରି ଚାହିଁଥିବେ, ଦଣ୍ଡବତ ତ ଦୂରର କଥା, ତା'ର ସଂକ୍ଷିପ୍ତ ମୁଦ୍ରାରେ କପାଳ ଆଡ଼କୁ ବଢିଆଙ୍ଗୁଠି ବି ଟେକିବେ ନାହିଁ, ଦେଖି ଦେଖିବେ ନାହିଁ, ସତେ ଅବା ମୁଁ ଶୂନ୍ୟରୂପୀ, ତାଙ୍କ ମୁହଁ ମୁଖାରେ ଭାଙ୍ଗଟିଏ ବି ପଡ଼ିବ ନାହିଁ ।

ହଁ, ମୁଁ ସତର୍କ ହେଲି, କେତେଥର ତାଙ୍କୁ ଦେଖିଲାମାତ୍ରେ "ହେଇ ହେଇ ରହ ରହ" ବୋଲି କେଉଁ କାଳ୍ପନିକ ସତ୍ତା ଉଦ୍ଦେଶ୍ୟରେ ପାଟି କରି କରି ମୁଁ ଉଦେଆଡ଼େ ଧାଇଁ ଚାଲାଇଛି । ବୁଦ୍ଧି ଖଟାଇ ତାଙ୍କୁ ଏଡ଼ିପାରିଛି ବୋଲି ମୁଁ ଆଶ୍ୱସ୍ତ ହୋଇଛି ସିନା, ନିଜ ବୁଦ୍ଧିକୁ ବାହାଦୁରୀ ଦେଇଛି ସିନା (ମୁଁ-ମୁଁ-ମୁଁ—) କେବେ ଭାବିନାହିଁ ମୁଁ ମୋ ବନ୍ଧୁ-ସ୍ନେହ ପ୍ରତି ବିଶ୍ୱାସଘାତକତା କରିଛି ।

ନା, ମୁଁ ଚାହେଁନାହିଁ ଯେଉଁ ବ୍ୟକ୍ତିଙ୍କୁ ମୁଁ ଶ୍ରଦ୍ଧା କରିଛି, ତାଙ୍କୁ ଦେଖିବି ଏଭଳି ଅବସ୍ଥାରେ ଯହିଁରେ ମୋ ଶ୍ରଦ୍ଧା ତୁଟିବ, ଆଉ ସେଇ ସୌମ୍ୟ ରୂପ ମୋ ଅନ୍ତର-ପଟରେ, ଯେଉଁ ନକ୍ସିଲୁ ତା' ଉପରେ ଆଉ କେଉଁ ପୋକର ଧୂଳିସରିସର ବର୍ଣ୍ଣନ ଛବି । ମୁଁ ମୋ ଠାକୁରଙ୍କୁ ହାଡ଼ଚମର ହଳା ହୋଇ ଛତରବଜାର ସଡ଼କର କାଦୁଅ ଖାଲରେ ପଡ଼ିଥିବା ରୂପରେ କେବେ ସ୍ୱୀକାର କରିବି ନାହିଁ ।

ସେଇଥିପାଇଁ ତ ଚେଲା ଗୁରୁଙ୍କୁ ହତ୍ୟା କରେ, ଉଭୟେ ଉଦ୍ଧାର ।

ତଥାପି ଏଡ଼ି ପାରେ ନାହିଁ । ସେ ତ ଅଛନ୍ତି । ଯେଉଁ ଘାଟରେ ଯେଉଁ ସମୟରେ ମୁଁ ପାଣି ପିଏଁ—ଏଇ ଘାଲ, ତାରିଖ, ଦେଶ, ସହର, ବଜାର, ସେ ବି ତ ସେଠି । ସେ ମୋଠୁଁ କିଛି ମାଗନ୍ତି ନାହିଁ, ଖାଲି—

"ଶୁଣ, ମୁଁ କହୁଛି ।" ତାଙ୍କର ସମସ୍ୟା । ମଣିଷଙ୍କ ସଙ୍ଗେ ସମ୍ପର୍କରୁ ସେ ସମସ୍ୟାମାନଙ୍କ ଉତ୍ପତ୍ତି, ଆଗେ ଯେମିତି ଉପୁଜୁଥିଲା ମଣିଷମାନଙ୍କ ସହିତ ସମ୍ପର୍କରୁ ଆନନ୍ଦ, ଉତ୍ସାହ, ଆଶା । ସେ କହନ୍ତି, ପୁରୁଣା ମଣିଷ ବଦଳିଛନ୍ତି ଅର୍ଥାତ୍ ଖରାପ ହୋଇଛନ୍ତି, ନୂଆମାନେ, ଯାହାଙ୍କୁ ସେ ନୂଆ ଏବେ ଦେଖୁଛନ୍ତି, ସେମାନେ ତ ମୂଳରୁ ଖରାପ । "ଦେଖୁନା ଗୁରୁଆଡ଼କୁ ଯୁଦ୍ଧ ? ପଢ଼ୁନା ଖବରକାଗଜରୁ ?"

"ନା, ମୁଁ ତ କିଛି ପରିବର୍ତ୍ତନ ଦେଖୁନାହିଁ କି ଆଦିମମନୁଷ୍ୟ କିମ୍ବା ଉଡ଼ୁରିଙ୍ଗାଙ୍କ ଅମଳରୁ ଏପର୍ଯ୍ୟନ୍ତ କ'ଣ ବଦଳିଛି ଦେଖିପାରୁନାହିଁ । ତେବେ, ଦୁନିଆଁରେ ପରିବର୍ତ୍ତନ, ସମାଜ ବଦଳା, ମଣିଷ ବଦଳିବା, ଏତେ ଏତେ କଥା ନିଧାନିଇ ବାରିପାରିବା ପାଇଁ ମନର ଯେଉଁ ପ୍ରସ୍ତୁତି ଦରକାର ତା' ମୋର ନ ହୋଇଥିବ । ଯେ ପକ୍ଷୀ ଉଡ଼େ ଯେତେ ଦୂର । କାହିଁ ଆପଣଙ୍କ ଡର ହେବ ?"

ଚିପିଦେଲି ବୋତାମଟିଏ, ବିଜୁଳି ଆଲୁଅର ସୁଇଚ୍, ଆଉ ସେ ଗଦ୍ ଗଦ୍ ହୋଇ କହିବାକୁ ଲାଗିଲେ, ଆପଣାର ବଡ଼ପଣର ପ୍ରକାଶ ହିଁ ସେ, ନୂଆ କିଛି ନୁହେଁ, କିନ୍ତୁ ଭଙ୍ଗୀରେ ଅତି ବିଶ୍ୱାସୀ ଆନ୍ତରିକତା, ଯେମିତି ମାତାଲର । ବଖାଣୁଥିଲେ ତାଙ୍କ ନୂଆ ଯୋଜନା—ଜାଣି ଜାଣି ସେ ଏଣିକି କିଛି ରସ-ରସିଆ ଲେଖା ଲେଖୁଛନ୍ତି । ଉଠନ୍ତୁ କି ପଢ଼ନ୍ତୁ, ଯେ ସ୍ୱାସ୍ଥ୍ୟମନ୍ତ ଥିଲାବେଳେ ଲେଖୁଥିଲେ ଆପଣା ମନ ଖିଆଲରେ, ସେ ସ୍ୱେ ପାକଲିବାଳରେ ଆବିଷ୍କାର କରିଛନ୍ତି, "ଲେଖକ ଭାବିବା ଉଚିତ 'କାହାପାଇଁ ଲେଖିବି' ? କ'ଣ ପାଇଁ ?"

କହିଲେ, "କେତେ ଜଣ ପଢ଼ନ୍ତି ବେଦ ଉପନିଷଦ୍ ? ପୁରାଣ କିଛି ପଢ଼ା ହେଉଥିଲା କାରଣ ସେଥିରେ ଚଟକ ଟିକିଏ ଅଛି, ଠାଏ ଠାଏ, କିନ୍ତୁ ତାକୁ ବି ପଛକୁ ଠେଲିଦେଲା ନଭେଲ୍ । କାହିଁକି ? ଭାବିବାର କଥା ।

ସେହି ମୌଳିକ ସତ୍ୟକୁ ମୁଁ ଭୁଲିଥିଲି । ସେଉଠୁ—ଆଖିଫିଟିଲି, ଫିଟେଇଲେ ଏଇ ଚୋକାଏ ଆଉ ଇଂରେଜୀ ବେଷ୍ଟ୍ ସେଲର୍‌ମାନେ,

ଆଉ ରେଲ୍‌ଓ୍ୱେ୍‌ଷ୍ଟଲ୍, ଆଉ ସଡ଼କ କଡ଼ର ବହିଦୋକାନ—କଭ୍ରଲ ବହି କହେ ?" କାନକୁ ଅଶ୍ଳୀଳ, ସ୍ନାୟୁକୁ ଉତ୍ତେଜକ, ଅସମ୍ଭବ ଲେଖାଥାଉ ପଛେ, ଏକାଠି ହୁଗୁଳା ହୋଇ ବଡ଼ା ବନ୍ଧାହୋଇ ନାନା ଅସମ୍ପୃକ୍ତ ଉଦ୍‌ଭଟ ଘଟନା ।

"ଅସମ୍ଭବ ବୋଲି ସଂସାରରେ କ'ଣ ଅଛି ?" ଉତ୍ତେଜିତ ହୋଇ ସେ ବ୍ୟାଖ୍ୟାନ ଆରମ୍ଭ କଲେ । "ଆଜି ଯେ ରାଜେନ୍ଦ୍ର,ସିନେ କାଲି ସେ ଫକିର । ଜୀବନ ଅନିଶ୍ଚିତ, ଅପରିକଳ୍ପିତ । ଉଦ୍‌ଭଟ ହିଁ ତ ନିୟମ । ସୃଷ୍ଟିର ଆଦ୍ୟଟା ହିଁ ସେଇଆ, ଅନ୍ତଟା ସହଜ, ମଧ୍ୟ ତ ପ୍ରତି ମୁହୂର୍ତ୍ତରେ ଉଦ୍‌ଭଟ । ଯାହାକୁ ଅସମ୍ପୃକ୍ତ କହୁଛ ସେ ତୁମ ସଙ୍ଗେ ନିବିଡ଼ଭାବେ ସମ୍ପୃକ୍ତ, ଅଚହ୍ନା ଗ୍ରହରୁ ଶୂନ୍ୟବାଟେ ଆସୁଛି କେତେ ସିଗ୍‌ନେଲ୍, ମଣିଷ ଦିନେ ତାକୁ ଧରିବ ଅର୍ଥ କରିବ ।"

ବହୁତ ଆଶା ବାନ୍ଧି ସେ ନୂଆ ଯୋଜନା ଆରମ୍ଭ କଲେ, କିନ୍ତୁ ବୁଢ଼ା ହାଡ ବଦଳିଲା ନାହିଁ, ପିଲାଙ୍କ ସଙ୍ଗେ ଧାଇଁବାକୁ ଡେଇଁବାକୁ ଚେଷ୍ଟାକରି ସେ ଖାଲି ଲୋକହସା ହେଲେ ।

ହସି ହସି ଲୋକେ କହିବାର ଶୁଣିଲି, "ଦେଖିଲେଣି ସେନେଶ୍ୱରେ କ'ଣ ଲେଖୁଛନ୍ତି ? ହେଃ ହେଃ ହେଃ—ଟଙ୍କା କେଇଟା ପାଇଁ ସ୍ୱେ ଫନ୍ଦା, ତା' ବି ହଉଁଚି କୋଉଠି !"

ଦୀର୍ଘଶ୍ୱାସ ଛାଡ଼ିଲି । ଆଃ ! 'ଫଷ୍ଟ୍ ଫର୍ ଏ ହ୍ୟାଣ୍ଡ୍‌ଫୁଲ୍ ଅଫ୍ ସିଲ୍‌ଭର୍ ହି ଲେଫ୍‌ଟ ଅସ୍ !'

ହଁ, ତାଙ୍କର ସେ ଯୋଜନା ବିଫଳ ହେଲା, ଆଦର୍ଶ ଫୁଟାଇବାକୁ ବି କାରିଗରି ଦରକାର, ଆଉ—ବିଭିନ୍ନ ରସଠୁଁ ନିଶ୍ଚୟ ତା କାରିଗରୀ ଭିନ୍ନେ ।

ଆଉ କେତେଦିନ ପରେ ସେ ଗୋଟିଏ ନୂଆ ଯୋଜନାର ସୂଚନା ଦେଲେ—

"ଏକୋଠ ହଜାରେଟା ଟଙ୍କା କେଉଁଠୁ ମିଳନ୍ତା କ ! ଜଣଙ୍କ ପକ୍ଷରେ ଉଧାର ଦେବା କଷ୍ଟ ହୋଇପାରେ କିନ୍ତୁ ଚେଷ୍ଟା ଚେଷ୍ଟା କରି କରି କୋଡ଼ିଏ ଜଣ ବନ୍ଧୁ ତ ସାହାଯ୍ୟ କରିପାରିବେ ।" କହି ଅଟକି ହସିଦେଇ ମୋ ମୁହଁକୁ ଟିକିଏ ଅନାନ୍ତି । ତା'ପରେ ପୁଣି । ବଡ଼ କରୁଣ ଆଉ ଉଦାସ ପ୍ରତ୍ୟେକର ତାଙ୍କ ପ୍ରୟୋଜନର ବର୍ଣ୍ଣନା, ପ୍ରତ୍ୟେକର ନୂଆ, ଆଗ ଥରଠୁଁ ଭିନ୍ନେ ।

ଭାବେଁ ।

'ଚୌଧୁରୀ ଷେଙ୍କେଶ୍ୱର ପ୍ରହରାଜ ତ୍ରିପାଠୀ !' ଏଇ ଲୋକ !

ଲାଗେ ଯେମିତି ନଇଁଛିଆ ଦୀପହରେ ପବନର ବାଉଳା ଗୀତ, ଯେ ଖାଲି ଶୁଣାଏ ଯେ ସବୁ ଶୁଖିଯିବ, ଖତ୍ମ ହୋଇଯିବ, ଝଡ଼ିପଡ଼ିବ ।

ପତ୍ର ଝଡ଼ୁଥାଏ ।

ମୋ ମନେ ମନେ ଗୁନ ଗୁନ ହୋଇ ଶୁଭେ—"ମୁଁ ବି କ'ଣ ଶେଷରେ ଏଇଆ ହେବି !"

ଥୁକୁଲୁ ଥୁକୁଲୁ ! କାଳଭୁଣ୍ଡା କଥାଗୁଡ଼ାକ ।

କେଉଁଦିନୁଁ ତାଙ୍କ ଖବର ମୁଁ ପାଇନାହିଁ । ବୋଧହୁଏ ତାଙ୍କର ପରି,—ସେ ନୁହନ୍ତି । ସେ ଯେଉଁ ଜଣକେ ରାସ୍ତାରେ ଯିବାର ଦେଖିଲି ! ନା, ମୋ ଆଖି ବି ଖରାପ ହେଲାଣି ।

ସେ ନୁହନ୍ତି । ଉଶ୍ୱାସ ଲାଗିଲା । କିନ୍ତୁ ମନେପଡ଼ିଗଲେ ସେ । ବାଗିଯାଇ ଦାନ୍ତଚିପି ଉଡ଼ିଲି—

"ଅକୃତଜ୍ଞ ଦୁନିଆଁ !"

ଆଉ ସେହିଦିନ ସଞ୍ଜବୁଡ଼େ ଖବରକାଗଜ ଆସୁ ଆସୁ ଦେଖିଲି ଆଗ ପୃଷ୍ଠାରେ ଛପାହୋଇଛି ତାଙ୍କର ମୁହଁର ପୁରୁଣା ଫଟୋଟିଏ—ସେହି ଯେତେବେଳେ ଚେହେରା ଥିଲା ଚେକା ଚୌଧୁରୀ ଭଳି—ଏଡ଼ିଡ଼େ

ମୁହଁ, ଦମ୍ଭ ବେକ, ସଳଖ, କରଡ଼ା, ସତେଅବା ବନା ପହଲ୍ମାନଙ୍କ ବେକ—ମୁହଁର ଫାଳକଆ ଛୁଲକା, ପ୍ରୋଫାଇଲ୍, ମେଲା ଓଠଲେ ଧାରେ ଗର୍ବିତ ହସ, ନଡ଼ରୁଆ ତୀକ୍ଷ୍ଣ ନାକ, ଚଉଡ଼ା ଠିଆ କାନ୍ଥ କପାଳ ଉପରେ କେଉଁଏ ଅରଣା ବାଳ, ଅମାନିଆଁ ଖିଆଲ, ସ୍ୱାଧୀନ ।

ଆଉ ଫଟୋତଳେ ଖୋପରେ ଛପାହୋଇଛି "୭ ଚୌଧୁରୀ ଭୁବନେଶ୍ୱର ପ୍ରହରାଜ ବିଚାର୍ଥୀ ଓଡ଼ିଶାର ନାନା ଜଗତରେ ଗ୍ରାମାଭ୍ୟନ୍ତର-ଠାରୁ ମହାନଗରୀଯାଏ ସର୍ବତ୍ର ସୁପରିଚିତ । ଓଡ଼ିଆ ସାହିତ୍ୟକୁ, ଓଡ଼ିଆ ସମାଜକୁ, ସଭ୍ୟତାକୁ, କୃଷ୍ଟିକୁ ତାଙ୍କର ବିପୁଳ ଦାନ ଅବିସ୍ମରଣୀୟ । ସେ ଏକାଧାରରେ ଔପନ୍ୟାସିକ, ଗାଳ୍ପିକ, ନାଟ୍ୟକାର, କବି, ସମାଲୋଚକ, ସଙ୍ଗୀତଜ୍ଞ, ମୁରଲିବାଦକ, ବୀଣାବାଦକ, ଅଭିନେତା, ଶିକାରୀ, ଫୁଟ୍ବଲ୍ ଖେଳୁଆଡ଼, ଚେସ୍ ଚମ୍ପିଅନ, ସଙ୍ଗଠକ, ସମାଜସେବୀ ।"

ତା'ପରେ ଦୁଇଧାଡ଼ି ପଢ଼ିହେଲା ନାହିଁ, ଗ୍ଲୁପାରେ କାଳି ଉଠି ନାହିଁ ।

ତା'ପରେ—

"ଆଜି ପ୍ରାତଃକାଳରେ ଘର୍ଣ୍ଣ ବିଳମ୍ବରେ ସୁଦ୍ଧା ତାଙ୍କର ନିଦ୍ରାଭଙ୍ଗ ନ ହେବାରୁ ଅନୁସନ୍ଧାନ କରନ୍ତେ ଦୃଷ୍ଟିଗୋଚର ହେଲା ଯେ ତାଙ୍କର ତକିଆତଳେ ସେ ରଖିଯାଇଛନ୍ତି ତାଙ୍କର ଶେଷ ସାହିତ୍ୟ ସର୍ଜନକଲେ ଏହି ପଙ୍କ୍ତି କେତୋଟି—

'ନିଜ ଇଚ୍ଛାରେ ମୁଁ ଶେଷ ନିଦରେ ଶୋଉଛି, ଆଉ ଉଠିବି ନାହିଁ । ଯେ ପଠାଇଥିଲେ ତାଙ୍କର ପାଖକୁ ଯାଉଛି, ଆଉ ଫେରିବି ନାହିଁ । ଅନୁରୋଧ, କେହି ଯେପରି ମୋ ପାଇଁ ଶୋକ ନ କରନ୍ତି । ସମସ୍ତଙ୍କର ମଙ୍ଗଳକାମନା କରୁଛି ।'

ତା'ପରେ ଖବରକାଗଜରେ ଛପା ହୋଇଛି, ବନ୍ଧନୀ ଭିତରେ,

"ତାଙ୍କ ଜୀବନ ଓ କୃତିତାଲିକା ଅନ୍ୟତ୍ର ପ୍ରକାଶିତ ହେଉଛି ।"

କପାଳରେ ଯୋଡ଼ା ପାପୁଲି ଲଗାଇଲି ।

ମାସେଯାକେ ପଡ଼ିଥିଲା ହୋ ହା, ଲୋକେ ତାଙ୍କୁ କେତେ ଦିଗରୁ ନିରେଖି ଆବିଷ୍କାର କଲେ । ବହୁତ ସଭା, ବହୁତ ବକ୍ତୃତା ।

କିନ୍ତୁ ମିଳିଲା ନାହିଁ ଗୋଟିଏ ରହସ୍ୟର ସୂତ୍ର—ସେ କି ଉପାୟରେ ଗଲେ ଓ କାହିଁକି ବା ଗଲେ ?

ଈର୍ଷା ସହକାରେ ମନେ ମନେ ଭୁନ ଭୁନ କହିହେଲି—"ଏଭଳି ସାହସୀ ବୀର ଆମ ଭିତରେ ମୁଁ କାହାରିକି ଦେଖିନାହିଁ । ଅନ୍ତତଃ ମୁଁ ନୁହେଁ ।" ମୋର 'ମୁଁ' ପଣ ଖର୍ବ ଓ କ୍ଷୁଣ୍ଣ ହେଲା ।

'ସମାବେଶ' ଶାରଦୀୟ ସଂଖ୍ୟା ୧୯୭୭



# ମାପ

ସାନ ପାହାଡ଼ ଉପରେ ଡାକବଙ୍ଗଳା, ଠକ୍କୁ ଗୁଳି ଗୁଳି ବୋଝ ବୋହି ଗଲେ କାଠେ, ହାଟ-ବଜାର ଦୂର, ଲୋକାଳୟ ଦୂର । କିନ୍ତୁ ସେ ବଙ୍ଗଳା ସମସ୍ତଙ୍କ ପାଇଁ ନୁହେଁ, ଖାଲି ଉପରପାହିଆ ଲୋକଙ୍କ ପାଇଁ ଓ ସେମାନେ ମଟର ଚଢ଼ି ଆସନ୍ତି । ଉପରେ ବଗିଚା, ସୁନ୍ଦର ଘାସ ପଡ଼ିଆ, ନରମ ଗଦି ଓ ଶୀତତାପ ନିୟନ୍ତ୍ରିତ ଯନ୍ତ୍ର ଖଞ୍ଜାହୋଇ ମେଲ୍ ଘରରୁ ସଜାସଜି ବଖୁରିମାନ, ବିଜୁଳି ବତି, ପାଣିକଳ, ନାନା ପ୍ରକାରର ଖୁବ୍ ଦାମୀ ସାଜସଜ୍ଜା । ଅତି ଶୀତଳ ସ୍ଥାନ, ଭଲ ପବନ, ଯୁଆଡ଼କୁ ଚାହିଁଲେ ଛବିପରି ପ୍ରାକୃତିକ ଦୃଶ୍ୟ । ଇଂରେଜ୍ ଅମଳରେ ଯେ ଡାକବଙ୍ଗଳାଟି ହୋଇଥିଲା, ସ୍ୱାଧୀନତା ପରେ ଆଉ କିଛି ଦରକାରୀ ଉନ୍ନତି ଘଟିଛି । ଯଦି ଖବର ବୁଝିବାକୁ ଲୋକବଳ ଥିବେ, ରହିବା ଲାଗି ଉପାଦେୟ ବନ୍ଦୋବସ୍ତ ହୋଇଥିବ, ସେଠି ରାତିଏ ରହିଗଲେ କେତେ ଫୁର୍ତ୍ତି ଆଉ ହାଲୁକା ଲାଗିବ । ଯେଉଁମାନେ ରହନ୍ତି, ସେମାନେ ସେହିଭଳି ବଡ଼ ମଣିଷ, ସେଠି ରହିବା ହିଁ ସମ୍ମାନ ।

ସେଇଠି ସେ ମଞ୍ଚରେ ପହଞ୍ଚିଥିଲେ ମନ୍ତ୍ରୀ, ଆଉ ହଠାତ୍ ସେ ନିର୍ଜନ ସ୍ଥାନଟି ଗହଳ ହୋଇଉଠିଥିଲା, ସେଠି ନାନା ମଟର, ସ୍କୁଟର, ସାଇକଲ୍, ସେବାକାରୀ, ଗୁହାରିଆ, ଅପେକ୍ଷାକାରୀ, ଆଲୋଚନାକାରୀ, ଦର୍ଶନାଭିଳାଷୀ, ନାନାପ୍ରକାରର ନାନାଲୋକ, ତେବେ ଯେଝା ସ୍ଥାନରେ ଯେ, ଦଳ ଦଳ, ଦୂରେଇ ଦୂରେଇ, ପାଳି ପଡ଼ିବ, ଡାକରା ହେବ ।

କେତେ ପଞ୍ଝା ଯାଇଯାଉଥିଲେ । ଆତୁର ଥିଲେ । ଡାକବଙ୍ଗଳା ଆଗରେ ଘାସ ପଡ଼ିଆରେ ଚୌକି ସଜା ହୋଇଛି, ସେଠି ଯେତେକ

ନାଟକର ଦୃଶ୍ୟ ଉପରୁ ଦୃଶ୍ୟ । ପଞ୍ଚ ଆଠଟା ହେବ । ଏଥରକ ମନ୍ତ୍ରୀଙ୍କ ଆଗରେ ସ୍ଥାନୀୟ କର୍ମଚାରୀମାନେ, ମେଳାପୀ ମନ୍ତ୍ରୀ, ଖୁସିଗପ ଚାଲିଛି, ମଝିରେ ମଝିରେ କେଉଁ କାମ କଥା, ଅଭିଜ୍ଞ ମନ୍ତ୍ରୀ, ବାଳ ପାଚିଲାଣି, କିଛି ପଚାରିଲେ ଗୁରୁତ୍ୱ ନ ଦେଲା ପରି ଛୁଁ ଛାଁ କରି ପଚାରିଦିଅନ୍ତି, ଉତ୍ତର ଶୁଣିଲାବେଳେ ସଳଖେ ଅନାନ୍ତି ନାହିଁ, ତା'ପରେ କିଛି ପରିହାସ କରନ୍ତି, କହିବା ଲୋକ ଉତ୍ସାହିତ ହେଉ । ସମସ୍ତେ ଖୁସିଥିଲେ—ମନ୍ତ୍ରୀ ଭାରି ବୁଝିବା ଲୋକ, ଜାଣିବା ଲୋକ, ସେ ଦୋଷ ବାଛୁନାହାନ୍ତି, ବିରକ୍ତ ହେଉନାହାନ୍ତି, କାର୍ଯ୍ୟକ୍ଷେତ୍ରରେ କି କି ଅସୁବିଧା ଘଟେ, ବାଧା ଉପୁଜେ ସବୁ ସେ ଜାଣନ୍ତି, ସବୁ ଅଭାବ, ଅସୁବିଧା, ତ୍ରୁଟି ଥାଇ ତଥାପି ଯେତିକ ଆଗେଇ ହେଉଛି ସେତିକରେ ତାଙ୍କର ସନ୍ତୋଷ । କେହି କେହି ଆପଣା କହିବା ବାଗରେ, କହିବା କଥାରେ, ନିଜ ବୁଦ୍ଧି ଓ ବିଚକ୍ଷଣତାର ନମୁନା ଦେଖାଇବାକୁ ଚେଷ୍ଟା କରୁଥାନ୍ତି ଆଗଭର ହୋଇ, ମନ୍ତ୍ରୀ ଆଶ୍ଚର୍ଯ୍ୟ ପ୍ରଶଂସମାନ ଭଙ୍ଗୀ ଦେଖାଇ ଉତ୍ସାହିତ କରୁଥାନ୍ତି, ଯେ ନ ପାରୁଥାନ୍ତି, ସତେ ଯେମିତି ମୁହଁରେ ତୁମ୍ବୀ ବନ୍ଧା, ତାଙ୍କୁ ବି ସ୍ନେହରେ ଅନାଇଁ ଦେଇ ପଦେ ପଦେ ଉତ୍ସାହବାଣୀ କହୁଥାନ୍ତି । କେହି ଭାବିବା ସହଜ ଯେ ସେ ଅସଲ ଗୁଣଗ୍ରାହୀ, କେହି ନ କହିଲେ ବି ବୁଝନ୍ତି ।

ଆନନ୍ଦ ଖେଳୁଥାଏ, ଏସ୍. ଡି. ଓ. ଜଗୁବାବୁଙ୍କ ପାଖରେ ଅନ୍ୟ ଚୌକିରେ ବସିଥାଏ ତେର ବର୍ଷର ପିଲାଟିଏ, ମନ୍ତ୍ରୀ ହସିଦେଇ ସ୍ନେହରେ ତା' ଆଡ଼କୁ ଅନାଇଁ ପଚାରିଲେ "ଏ ପିଲାଟି କିଏ ?" ଜଗୁବାବୁ କହିଲେ, "ମୋ ପୁଅ ସେ, ରଘୁ, ଆପଣଙ୍କୁ ଦେଖିବ ବୋଲି ଏକା ଜିଦ୍ କରି ମୋ ସାଙ୍ଗରେ ଆସିଲା, ବାଧ ହୋଇ ଆଣିଲି ।"

"ଭାରି ଭଲ କଲେ" ମନ୍ତ୍ରୀ କହିଲେ, "କେଡ଼େ ଖୁସି ଲାଗୁଛି । ଏଇମାନେ ଯେ ଏ ଦେଶର ଭବିଷ୍ୟତ, ଆମେ ଯେତେ ଯୋଜନା କରୁଛୁ ଯେତେ ଯାହା କରୁଛୁ ସବୁ ତ ଏଇମାନଙ୍କ ପାଇଁ, ଆଉ କାହାପାଇଁ ?"

ମନ୍ତ୍ରୀ ସ୍ୱପ୍ନ ଦେଖିଲା ପରି ଆବିଷ୍ଟ ହେଲେ, କହିଲେ "ଏମାନେ ଏ ଦେଶରେ ଭାର ନେବେ, ଦେଶକୁ ଗଢ଼ିବେ, ଆହୁରି ଉନ୍ନତ କରିବେ,

ଯାବ ପୃଥିବୀରେ ଏ ଦେଶର ନେତୃକ ରଖିବେ ।” ମିଠା ହସଟିଏ ହସିଦେଲେ । ପିଲାଟି ଆଡ଼କୁ ମୁହଁ ବୁଲାଇ ଦେଇ ପଚାରିଲେ,

"ମତେ ଚହ୍ନିଛ ?"

ରଘୁ ବ୍ୟସ୍ତ ହୋଇ କହିଲା "କଥାଟା ପିନା ହୋଇ ନାହିଁ ସାର୍, ଆପଣଙ୍କୁ ତ ଦୂରରୁ ଦେଖିଛୁ କେତେଥର, ଆମ ସ୍କୁଲରେ ଗଲା ବର୍ଷ ସଭା ହୋଇଥିଲା, ଆପଣ ଆସିଥିଲେ, ଆପଣଙ୍କ ଫଟୋ ତ ଦେଖିଛୁ କେତେଟି, ଆମ ସ୍କୁଲରେ ବ ଅଛି, ଆପଣଙ୍କ ବିଷୟରେ ବ ପଢ଼ିଛୁ, ଆପଣଙ୍କୁ—" ଗଦ୍ ଗଦ୍ ହୋଇ କହିଲା "ଆପଣଙ୍କୁ ଜାଣିନଥିବ କିଏ ?"

ମନ୍ତ୍ରୀ ଖୁସି ହୋଇ ହସିଲେ, ସମସ୍ତେ ହସିଲେ, ମନ୍ତ୍ରୀ ତାକୁ ପଚାରି ପଚାରି ବୁଝିଲେ, ସେ ଦଶମ ଶ୍ରେଣୀରେ ପଢ଼େ, ତା' ଇସ୍କୁଲର ନାଁ, ସେଠି କେତେ ପିଲା, କେତେଜଣ ଶିକ୍ଷକ, ସେ କ'ଣ କ'ଣ ଖେଳେ, କେତେ କଥା । ତାପରେ ମନ୍ତବ୍ୟ ଦେଲେ "ଭାରି ବୁଦ୍ଧିମାନ୍ ପିଲା, ଭଲ ପିଲା" ତାପରେ ଆହୁରି ପଚାରିଲେ, "ତୁମେ ବଡ଼ ହେଲେ କ'ଣ କରିବ ?"

"ଡାକ୍ତରି ପଢ଼ିବି, ଡାକ୍ତର ହେବି ।"

"ବାପାଙ୍କ ପରି ପ୍ରଶାସନିକ କର୍ମଚାରୀ ହେବ ନାହିଁ ? ଏସ୍.ଡ଼.ଓ., କଲେକ୍ଟର, ଏମିତି କିଛି ?"

'ନା ।"

"କାହିଁକି "

"ସେ କାଳ ହାତରେ ନଥାଏ । ଆଇ.ଏ.ଏସ୍. ଅଳ୍ପ କେତେଜଣ ହୁଅନ୍ତି । ଡେପୁଟି ହୋଇ ଉଠୁ ଉଠୁ ବହୁତ ବର୍ଷ ଚାଲିଯାଏ । ବାପା ଏସ୍. ଡ. ଓ. ହେଉ ହେଉ ବାରବର୍ଷ ଲାଗିଲା । ଦରମା କମ୍, କାମ ବେଶି, ବ ଭାରି ହଇରାଣ ।"

"ଜଗୁବାବୁ ବିବ୍ରତ ହୋଇ ପିଲା ଆଡ଼କୁ ଚାହିଁଲେ, ସମସ୍ତେ ହସିଲେ, ମନ୍ତ୍ରୀ କହିଲେ "ରହ ଦେଖିବ ଆଉ କେତେ ଦିନେ ତୁମ ବାପା କଲେକ୍ଟର ହେବେ । ତୁମେ ଡାକ୍ତର ହେଲେ ଲାଭ କ'ଣ ?"

"ରୋଗୀମାନଙ୍କର ଉପକାର କରିବ, ନିଜେ ଅର୍ଜନ କରିବ, କାହାପାଖେ ଗୁହାରି କରିବ ନାହିଁ, ନିଜେ ଭଲରେ ଚଳି ପରର ଉପକାର କରୁଥିବ ।"

"ବାଃ ବାଃ, ଏଇ ଯେ ଠିକ୍ ସ୍ୱାଧୀନ ଦେଶର ପିଲା, ସ୍ୱାଧୀନ ରହିବ, ଲୋକଙ୍କ ଉପକାର କରିବ । ଆଚ୍ଛା, ମନ୍ତ୍ରୀ ହେଲେ ଭଲ ହୁଅନ୍ତା ନାହିଁ ? ବଡ଼ ହେବ, ମନ୍ତ୍ରୀ ହେବ, ଦେଶ ସେବା କରିବ, ଏପରି ଇଚ୍ଛା ନାହିଁ ?"

"ନା ।"

"କାହିଁକି ? ତୁମେ କ'ଣ ଭାବୁଛ ତୁମ ଭଳି ପିଲା ବଡ଼ ହେଲେ ମନ୍ତ୍ରୀ ହୋଇପାରିବ ନାହିଁ ? ତୁମେ ଲୋକଙ୍କର ଉପକାର କରିବ, ଖବର ବୁଝିବ, ଲୋକେ ଭଲ ପାଇବେ, ନିର୍ବାଚନରେ ତୁମକୁ ଭୋଟ ଦେବେ, ତୁମେ ଏମ୍‌ଏଲ୍‌ଏ ହେବ, ତୁମ ଦଳ ଜିତିଥିଲେ ତୁମ ଯୋଗ୍ୟତା ଦେଖି ତମକୁ ବାଛିଲେ ତୁମେ ମନ୍ତ୍ରୀ ହେବ । ଏମିତି ହୁଏ । ତୁମେ ସେଇଆ କରିବ, ଭଲ ହେବ ।"

ପିଲାଟି ତଥାପି କହିଲା "ନା ।"

ମନ୍ତ୍ରୀ ପିଲାଟି ସଙ୍ଗରେ କୌତୁକ କରୁଛନ୍ତି ବୁଝି ସମସ୍ତେ ହସି ହସି ଅପେକ୍ଷା କରିଥାନ୍ତି । ମନ୍ତ୍ରୀ ପଚାରିଲେ 'କାହିଁକି ତୁମର ଆପତ୍ତି ?"

ପିଲାଟି କହିଲା "ଦେଶ ସେବା ତ ଡାକ୍ତର ହୋଇ କରିବ ?"

"ସେଥିପାଇଁ ତ ତୁମେ ମନ୍ତ୍ରୀ ହେବାକୁ ଉପଯୁକ୍ତ ବୋଲି ଲୋକେ ଭାବିବେ, ଆପତ୍ତି କରୁଛ କାହିଁକି ?"

ମନ୍ତ୍ରୀ ସତେକି ତାଙ୍କ ସାମ୍ନାରେ ସେ ଜାଣନ୍ତା ଭବିଷ୍ୟତକୁ ଆହ୍ୱାନ କରି ନେବାକୁ ଚାହାନ୍ତି । ଉତ୍ସୁକ ହୋଇ ଅନାଇଥାନ୍ତି । ପିଲାଟି ଅତି ସ୍ୱାଭାବିକ ଭାବେ କହିଲା, "ଥରେ ନିର୍ବାଚନ ମୁଁ ଦେଖିଛି, ଭାରି ଗଣ୍ଡଗୋଳ ଲାଗେ । ବହୁତ ଧନ୍ଦା, ବହୁତ ଖର୍ଚ୍ଚ । କେତେ ଲୋକ ହାରିଯାଆନ୍ତି । ଖାଲି ନିଜେ ଜିତିଲେ ହେବ ନାହିଁ, ନିଜେ ଯେ ଯେଉଁ ପାର୍ଟିର ହେବ

ପାର୍ଟିର ଅନ୍ୟମାନେ ଜିତବେ, ଆସେମ୍ବ୍ଲିରେ ତାଙ୍କର ସଂଖ୍ୟା ବେଶି ହେବ, ତେବେ ଯାଇ ତାଙ୍କ ଭିତରୁ କେହି କେହି ମନ୍ତ୍ରୀ ହୋଇ ପାରିବେ, ତା' ବି ନିଜ ଇଚ୍ଛାରେ ନୁହେଁ, ତାଙ୍କ ପାର୍ଟିର ଇଚ୍ଛାରେ ।"

"ହଉ ହଉ, ଧର ସେଇ ପାର୍ଟି ତମକୁ ମନ୍ତ୍ରୀ କରିଦେବ, ମନ୍ତ୍ରୀ ହେବ ତ ?" ମନ୍ତ୍ରୀ ହସିଲେ, ସମସ୍ତେ ହସିଲେ ।

ପିଲାଟି ତଥାପି ଉତ୍ତର ଦେଲା, "ନା ।"

"ପୁଣି କାହିଁକି ଆପତ୍ତି ? ତୁମେ କ'ଣ କାମକୁ ପାରିବ ନାହିଁ ? ବଡ଼ ହୋଇଯାଇଥିବ ପରା, ଆହୁରି ବୁଦ୍ଧିମାନ ହୋଇଥିବ, ତୁମେ ସବୁ ସେ ଦାୟିତ୍ୱ ନ ତୁଲେଇଲେ କେମିତି ହେବ ?"

ରଘୁ କହିଲା "ସେକଥା ନୁହେଁ ସାର୍ । ସେତେବେଳେ ବି ଆମରି ସାଙ୍ଗର ଲୋକେ କେହି କେହି ମନ୍ତ୍ରୀ ହେଉଥିବେ, ସେମାନେ ଯଦି କାମକୁ ପାରିବେ ମୁଁ ନ ପାରନ୍ତି କାହିଁକି ? କିନ୍ତୁ ମୋର ମନ ନାହିଁ ।"

"କାହିଁକି ?"

ଜଗୁବାବୁ ଲୋକଦେଖାଣିଆକୁ ମୁରୁକି ମୁରୁକି ହସୁଥାନ୍ତି, ମନେ ମନେ ଚିନ୍ତନ । ପିଲାଟି ତୁନି ହୁଅନ୍ତା ଭଲା ! ଓଲୁଟା, ବୁଝିପାରୁ ନାହିଁ, ଏହି ଯେଉଁ ଉତ୍ତର ଦେଉଛି ତାକୁ ଶୁଣି ମନ୍ତ୍ରୀ ତା' ବାପ ବିଷୟରେ ଧାରଣା କରୁଥିବେ. ଭାବୁଥିବେ, ପିଲାଲୋକ, ଘରେ ଯାହା ଶୁଣିଛି ସେହିପରି କହୁଛି । ପୁଣି କ'ଣ କହିବାକୁ ବସିଲାଣି, ତାକୁ ଇଙ୍ଗିତ ଦେଲେ ହୁଅନ୍ତା ପରା, କିନ୍ତୁ ମନ୍ତ୍ରୀ ଅନାଇଁ ରହିଛନ୍ତି, ଜଗୁ ବାବୁ ନିରୁପାୟ ।

ରଘୁ ଉତ୍ତର ଦେଲା "ମନ୍ତ୍ରୀ ହେଲେ ବହୁତ ସମ୍ମାନ, ବହୁତ ଖାତିର. ବହୁତ କ୍ଷମତା. ଯୁଆଡ଼େ ଗଲେ ସବୁଠି । ହେଇ ଆପଣ ଆସିଛନ୍ତି. ସହରଯାକ ସବୁ ବଡ଼ ବଡ଼ ଲୋକ ଉଠି ଆସିଲେ, ଦଣ୍ଡବତ କଲେ, ଧାଡ଼ ଧାଡ଼ ହୋଇ ପୁଲିସ ଠିଆହେଲେ, ସାଲ୍ୟୁଟ ଦେଲେ, ଜଗି ରହିଛନ୍ତି. ଗୁଡ଼ିଆନନ୍ଦ ହୁରି ପଡ଼ିଛି, କେତେ ଅଭ୍ୟର୍ଥନା, କେତେ କ'ଣ । ଖବରକାଗଜରେ ଫଟୋ ବାହାରୁଥିବ, ସମ୍ବାଦ ବାହାରୁଥିବ, ଯିଏକୁ

ଗଲେ ପଛେ ପଛେ ଲୋକେ ଧାଇଁଥିବେ, ଠାଏ ଠାଏ ଫୁଲମାଳ ଦେଉଥିବେ । କେତେ ବଡ଼ କଥା । କେତେ ବଡ଼ ଭାଗ୍ୟ ।"

ମନ୍ତ୍ରୀ ହସୁଥାନ୍ତି, ଜଗୁବାବୁ ଖୁସି, କିନ୍ତୁ ପିଲାଟିର କଥା ସରି ନଥାଏ, କହିଲା "କିନ୍ତୁ କଣ ହେବ ? ଜଣେ ମନ୍ତ୍ରୀ ହୋଇ ରହିବେ ପାଞ୍ଚ ବର୍ଷ । ତା'ପରେ ପୁଣି ନିର୍ବାଚନ ହେବ । ତାଙ୍କୁ ପୁଣି ମନ୍ତ୍ରୀ କଲେ ତ ? ତା ନହେଲେ ? ସେହି ମଣିଷ ଥିବେ, ସେମାନେ ଆଉ খাତିର କରିବେ ନାହିଁ, କେହି ପଚାରିବେ ନାହିଁ । ସେତେବେଳେ ମନରେ କେତେ କଷ୍ଟ ହେବ । କେମିତି ଲାଗିବ । ସେଥିପାଇଁ ମୁଁ ଠିକ୍ କରିଛି ମୁଁ କଦାପି ମନ୍ତ୍ରୀ ହେବାକୁ ମନ କରିବ ନାହିଁ ।"

ଇଞ୍ଜିନିୟର ରମେଶ ବାବୁ ପିଲାଟିର ଆଖପାଖେ ବସିଥିଲେ, ହଠାତ୍ ତାକୁ କୁଣ୍ଢେଇ ପକେଇ କହିଲେ "ଆଶ୍ଚର୍ଯ୍ୟ ପିଲା, ପରିଷ୍କାର ଚିନ୍ତାଧାରା, ତୀକ୍ଷ୍ଣ ବୁଦ୍ଧି, କେତେ ସ୍ୱାଧୀନ ତା ଚିନ୍ତା, କେତେ ସ୍ପଷ୍ଟବାଦୀ ! ବଡ଼ ଉଜ୍ଜଳ ଭବିଷ୍ୟତରେ ତୋର ବାବୁ, ଯାହାର ଏମିତି ପୁଅ ସେ ଭାଗ୍ୟବାନ୍ ।"

ଯେତେ ଯେମିତି ସଙ୍ଗୀତ ଚାଲିଥିଲା, ହଠାତ୍ କଣ ବେସୁରା ଓ ଅପ୍ରୀତିକର ହୋଇଯାଇଛି, ଅଧ ମିନିଟିଏ ସମସ୍ତେ ଚୁପ୍, ସମସ୍ତେ ବିରସ, ଜଗୁବାବୁ ମୁହଁକୁ ତଳକୁ ଓହଳାଇ ଦେଲେ, ଭାବୁଥାନ୍ତି, ଆଜି ଦୁର୍ଯୋଗ, ଦୁର୍ଭାଗ୍ୟ ଆସିଛି । ଶୁଭିଲା, ଇଞ୍ଜିନିୟର କହୁଛନ୍ତି "ପିଲାଟି କିଛି ମିଛ କହି ନାହିଁ, ସେ ଯାହା ଭାବିଛି ତା'ତ ସାଧାରଣ କଥା, କିନ୍ତୁ ଆଶ୍ଚର୍ଯ୍ୟ ଲାଗୁଛି ଯେ ଏତେ ସାନଟିକୁ ସେ ଏସବୁ ଭାବୁଛି ।"

କଲେକ୍ଟର କହିଲେ, "ପିଲାଲୋକ, କଣ ଗୋଟାଏ ମୁଣ୍ଡରେ ପଶିଯାଇଛି । ଆରେ, ଲୋକେ ଜଣକଠୁଁ ଉପକାର ପାଇଲେ, ତାଙ୍କ ଗୁଣ ଦେଖିଲେ, ବାଛି ବାଛି ତାଙ୍କୁ ମନ୍ତ୍ରୀ କଲେ, ମନ୍ତ୍ରୀ ହୋଇ ସେ ତ ଲୋକଙ୍କର ଆହୁରି ଉପକାର କରିବେ, ପାଞ୍ଚ ବର୍ଷ ପରେ ପୁଣି ମନ୍ତ୍ରୀ ନହେବେ କାହିଁକି ?"

ଏକାଠି ଅନେକେ କହିଲେ, "ଠିକ୍ ଠିକ୍ ।"

ରଘୁ କଣ କହିବାକୁବସିଥିଲା, ଜଗୁବାବୁ ଆଉ ସମ୍ଭାଳି ପାରିଲେ ନାହିଁ, ତା ପିଠି ଆଡ଼େ ହାତ ବୁଲାଇ ତା ବେକ ପାଖେ ଚୁମୁଟି ଦେଲେ, ସେ ମୁହଁ ବୁଲାଇଲା, କାନ ପାଖେ ବାପା ଫୁସ୍ ଫୁସ୍ ହେଉଛନ୍ତି "ତୁନି ହ ।"

ମନ୍ତ୍ରୀ କହିଲେ, "ପାଞ୍ଚ ବର୍ଷ ପରେ ସେହି ଜଣକ ପୁଣି ମନ୍ତ୍ରୀ ହେବେ କି ନହେବେ ତା ନିଶ୍ଚିତ ନୁହେଁ, ସେକଥା ଏ ପିଲାଟି ଯାହା ବୁଝିଛି ତା ଠିକ୍ କଥା, ହସିଦେଲେ, କହିଲେ "ନହେଲେ ବା ଦୁଃଖିତ ହେବ କାହିଁକି ? ଶୁଣ ବାବୁ, ମନ୍ତ୍ରୀପଣର ଯାହା ମର୍ଯ୍ୟାଦା, କ୍ଷମତା ଆଦି ତୁମେ ପିଲାଏ ଦେଖୁଛ, ତା ସେହି ମଣିଷକୁ ଦିଆଯାଏ ନାହିଁ, ଦିଆଯାଏ ତା ଆସନକୁ, ଆମ ଦେଶର ସମ୍ବିଧାନକୁ, ସେ ମଣିଷ ତାକୁ ଦେହକୁ ନେବା କଥା ନୁହେଁ, ସେ ଆସନରେ ଅଛି ବୋଲି ନିଜେ ଗର୍ବ କରିବା କଥା ନୁହେଁ, କି ସେଥିରୁ ଗଲେ ଦୁଃଖ କରିବା କଥା ନୁହେଁ, ସେ ସବୁ ଭୁଲ୍ । ଯେତେଦିନ ମନ୍ତ୍ରୀ ହୋଇଥିବ ସେତେଦିନ ଦେଶର ସେବା କରିବାକୁ ଅଧିକରୁ ଅଧିକ ସୁଯୋଗ ପାଉଥିବ, ଆନନ୍ଦ ସେତିକି । ଅସଲ ଆନନ୍ଦ ଥାଏ ପର ପାଇଁ ମନ ପ୍ରାଣ ଦେଇ କାମ କରିବାରେ, ତୁମେ ସେଥିପାଇଁ ଡାକ୍ତର ହେବାକୁ ଏବଠୁ ଭାବିଲଣି ସେ ଭାରି ଭଲ, ତୁମର ଏଇ ମନୋବଳ ଥିଲେ ତୁମେ ବି ଉପଯୁକ୍ତ ମନ୍ତ୍ରୀ ହେବ । ଗୁଡ଼େ, ବହୁତ ଗପିଲିଣି । ୟାଙ୍କୁ ଭିତରକୁ ନେଇଯାନ୍ତୁ", ଜଣକୁ ନିର୍ଦ୍ଦେଶ ଦେଲେ, "କିଛି ଜଳଖିଆ ଖୁଆଇ ଆଣନ୍ତୁ । ଲାଜ କର ନାହିଁ, ତୁମର ଏ ଆପତ୍ତି ମୁଁ ଶୁଣିବି ନାହିଁ, କିଛି ନ ଖାଇଗଲେ ମୁଁ ଭାରି ଦୁଃଖିତ ହେବି", ତା ବାପାଙ୍କୁ କହିଲେ. "ଆପଣ ବି' ଯିବେ ଯାଉନ୍ତୁ—"

ସାନ ସାନ ପିଲାଙ୍କୁ ଏତେ ନିଆ ଦେବା ସେମିତି ଉଦାର ମନ ନହେଲେ ଦେଖାଯାଏ ନାହିଁ. ଜଣେ କହିଲେ, "ତେବେ, ଯେତେହେଲେ ପିଲାଲୋକ. କଣ ସେ ଜାଣେ ନା ବୁଝିଛି ?"

କିନ୍ତୁ ମନ୍ତ୍ରୀ ହଠାତ୍ ସତେ ଯେମିତି ସେ ପିଲାକୁ ଓ ସେଇ ଆଲୋଚନାକୁ ଭୁଲିଗଲେ, ଅନ୍ୟ କଥା ପକାଇଲେ । କିଛି ସମୟ ପରେ,

ବାପ ପୁଅ ଫେରିଲେ, ସେତିକି ବେଳକୁ ମନ୍ତ୍ରୀ ସେ ଦଳଯାକକୁ କହିଲେ "ଯାଉନ୍ତୁ ଆପଣମାନେ, ଆପଣମାନଙ୍କର ଡେରି ହେଲାଣି", ଉଠି ଭିତରକୁ ଗଲେ ।

ଆଉ ଦିନେ ରହି ମନ୍ତ୍ରୀ ଲେଉଟିଗଲେ, କିନ୍ତୁ ସେ ସଙ୍ଗରେ ସେ ପିଲାଟି ତାଙ୍କୁ ଯାହା କହିଲା, ତାକୁ ଯେପରି ଇଞ୍ଜିନିୟର ନନ୍ଦବାବୁ ସମର୍ଥନ କରି ଏତେ ଲୋକଙ୍କ ଆଗରେ ମତ ଦେଇଥିଲେ, ସେ ବିଷୟରେ ଆଲୋଚନା ଓ କଳ୍ପନା ଲାଗି ରହିଲା ବହୁତ ଦିନଯାକ । ଜଗୁବାବୁ ନିଜ-ଆଡ଼ୁ କଥା ପକାଇ କଲେକ୍ଟରଙ୍କୁ ବୁଝାଇଥିଲେ, "ମୁଁ ଭାରି ଦୁଃଖିତ ହେଲି ସାର୍, ଜାଣିନଥିଲି ଯେ ପିଲାଟା ଏମିତି ବେଣ୍ଟେଣ୍ଟ କହିପକାଇବ । ଭାବୁଛି ଇସ୍କୁଲର ବାତାବରଣ ଦୂଷିତ ହେଲାଣି, କୌଣସି ବାଜେ ପିଲାଙ୍କଠୁ ସେ ଏସବୁ ଶୁଣିଥିବ, ନହେଲେ—"

କଲେକ୍ଟର ତାଙ୍କ କଥା ଉପରେ କହିଲେ, "ଆପଣ ସେ ବାଜେ-କଥା ଭାବୁଛନ୍ତି କାହିଁକି ? ପିଲା ପିଲା । ମନ୍ତ୍ରୀ ନିଜେ ସେମିତି ଉତ୍ତର ମାଗିଲେ, ତାକୁ କେଞ୍ଚି କେଞ୍ଚି ପଚାରିଲେ, ଯାହା ତା ବୁଦ୍ଧିକି ଦିଶିଲା ତା କହିଲା । କିନ୍ତୁ ଇଞ୍ଜିନିୟର ନନ୍ଦବାବୁ ଠିକ୍ କଲେ ନାହିଁ, ସେ ତ ଆଉ ପିଲା ନୁହନ୍ତି ।"

"ଭୁଲ୍ ଭୁଲ୍ ଭାରି ଭୁଲ୍" ଜଗୁବାବୁ କହିଲେ ।

କଲେକ୍ଟର କହିଲେ "କିନ୍ତୁ ନନ୍ଦବାବୁ ଭୁଲ୍ କହିନାହାନ୍ତି ଯେ, ତାଙ୍କର ଭୁଲ୍ ହେଲା ସେ କାହିଁକି କିଛି କହିଲେ, ମନ୍ତ୍ରୀ ତ ତାଙ୍କୁ ପଚାରି ନଥିଲେ । ଆଉ, ଯେ ଯେପରି ।"

ଜଗୁବାବୁଙ୍କର ବା ନନ୍ଦବାବୁଙ୍କର କି ଅନିଷ୍ଟ ଘଟିବ ତା ଦେଖିବାକୁ ଅନେକେ ଅପେକ୍ଷା କଲେ, କିନ୍ତୁ କିଛି ଘଟିଲା ନାହିଁ ।

କାଳକ୍ରମେ ଜଗୁବାବୁ ବଦଳି ହେଲେ, ତାଙ୍କ ପୁଅ ରଘୁ କଲେଜରେ ପଢ଼ିଲା, ତା'ପରେ ଡାକ୍ତରୀ କଲେଜରେ ଭର୍ତ୍ତି ହେଲା ।

ଯେଉଁ ବର୍ଷ ନିର୍ବାଚନ ହୋଇଥାଏ, ତା ପୂର୍ବଥର ଯେଉଁ ଦଳ ଆସେମ୍ବ୍ଲିରେ ସବୁ ଦଳଠୁଁ ଅଧିକ ଆସନ ପାଇ ମନ୍ତ୍ରିମଣ୍ଡଳ ଗଢ଼ିଥିଲା ସେ ଦଳଟି ଏଥର ଅଳ୍ପ ଆସନ ପାଇଥାଏ, ଆଗ ଥରରୁ ଅନେକ ମନ୍ତ୍ରୀ ନିର୍ବାଚନରେ ଲଢ଼ି ହାରି ଯାଇଥାନ୍ତି, ତାଙ୍କ ଭିତରୁ ଜନ୍ମେଜୟ ପାଣି ଜଣେ । ଅନ୍ୟ ଦଳ ଅଧିକ ଆସନ ପାଇ ମନ୍ତ୍ରିମଣ୍ଡଳ ଗଢ଼ିଥାନ୍ତି ।

ଗୋଟିଏ ଜିଲ୍ଲା-ମହକୁମା, ରେଲ୍ ଷ୍ଟେସନ୍‌ରୁ ସହର ଅଢ଼େଇ ମାଇଲ୍ । ଜନ୍ମେଜୟ ପାଣି ସସ୍ତ୍ରୀକ ରେଲ୍‌ରୁ ଓହ୍ଲାଇଲେ, ଖବର ପାଇଥିଲେ, ନାତୁଣୀର ଦେହ ଖରାପ ଅଛି, ନାତୁଣୀ-ଜୋଇଁଟି ଏହି ସହରଠୁଁ ବାଇଶି ମାଇଲ୍ ଦୂରରେ ଥାଏ, ଅପନ୍ତରା ଜାଗା, ବସ୍‌ଟିଏ ଏ ସହରରୁ ଛାଡ଼େ ଥରେ ସକାଳେ, ଥରେ ସନ୍ଧ ଦଶଟାରେ । ସେ ପଶୁ-ଡାକ୍ତର, ଆଗେ ତ ଥିଲା ଘର ପାଖରେ, ସେଠୁ ଏଠିକି ଦେଢ଼ଶହ ମାଇଲ୍ ଦୂରକୁ ବଦଳି ହୋଇଛି ତିନିମାସ ହେଲା ।

ବୈଶାଖ ମାସ, ମୁଣ୍ଡ ଉପରେ ଖରା, ଭାରି ତାତି, ଯାନ ଯାନ ଓେ୍ୱଟିଂ ରୁମ୍, ମଣିଷ ଖୁନ୍ଦାଖୁନ୍ଦି ।

ସ୍ତ୍ରୀ କହିଲେ, "ମାନିଲ ନାହିଁ, କହୁଥିଲି ପୂର୍ଣ୍ଣକୁ ଗୋଟାଏ ଟେଲିଗ୍ରାମ କରିଦିଅ ।"

"ସେ କ'ଣ କରିଥାନ୍ତା ? ତାର କିଏ ଅଛି ଯେ ପଠାନ୍ତା ? ଝିଅଟି ଏଣ୍ଡେ ବେମାର, ପିଲାଦିହେଁ କି ଅବସ୍ଥା ହେଉଥିବେ । ପୂର୍ଣ୍ଣ ତାଙ୍କୁ ଜଗୁଥିବ କି ଗୁକର ଜଗୁଥିବ ସେ ଜାଣେ, ଟେଲିଗ୍ରାମ୍ କଲେ ଆସନ୍ତା କେମିତି ?"

"ଫେରି କୁଆଡ଼େ ଯିବ ?"

"କାହିଁକି ? ସର୍କିଟ୍ ହାଉସ୍ ? ତୁମେ ଏଇଠି ଟିକିଏ ଠିଆ ହୋଇଥାଅ, ଏ ଜିନିଷପତ୍ରକୁ ଆଖି ରଖିଥିବ, ମୁଁ ଫୋନ୍ କରି ଆସୁଛି ।"

କେହି ଚିହ୍ନୁ ନାହାନ୍ତି । ଚିହ୍ନି ନଥିବେ ?—ସେ ଭାବୁଥାନ୍ତି । ତେବେ କର୍ମଚାରୀ ଚିହ୍ନିବେ । କଲେକ୍ଟର ମିଷ୍ଟର ସିଂ, ଏସ୍‌ଡ଼ିଓ ଜଗୁବାବୁ,

ଘର ଭଲ ଲୋକ, ଘର ମେଳାପୀ, ସାହାଯ୍ୟ କରିବାକୁ ସବୁବେଳେ ବ୍ୟଗ୍ର । "ସତେ ଅବା ମୋ ନିଜ ଲୋକ", ସେ ଭାବୁଥାନ୍ତି, "ଶୁଣିଲେ ଧାଇଁ ଆସିବେ ।"

ଫୋନ୍ ପାଖକୁ ଗଲେ । "ଫୋନ୍ କଲେ ପଇସା ପଡ଼ିବ ?— ପଡ଼ୁ । ପଡ଼ିବା ତ ଉଚିତ, ହେଇ ନାଅନ୍ତୁ ।"

ଫୋନ୍ କଲେ । "ମିଷ୍ଟର ସିଂ ?"

"କାହାକୁ ଖୋଜୁଛନ୍ତି ?"

"କଲେକ୍ଟର ସାହେବ ଅଛନ୍ତି ?"

"ଆପଣ କିଏ ?"

"ମୁଁ ଜନ୍ମେଜୟ ପାଣ ।"

"କ'ଣ ଦରକାର ?"

"ହେକଥା କଲେକ୍ଟରଙ୍କୁ କହିବି, ଅଛନ୍ତି ନା ?"

"ଅଛନ୍ତି କିନ୍ତୁ କାର୍ଯ୍ୟବ୍ୟସ୍ତ । ମୁଁ ତାଙ୍କ ଷ୍ଟେନୋ । ଆପଣଙ୍କର କଣ ଦରକାର କହନ୍ତୁ, ମୁଁ ତାଙ୍କୁ କହିଲେ ତାଙ୍କର ଯଦି ଇଚ୍ଛା ହେବ ତାହେଲେ ଫୋନ୍ ପାଖକୁ ଆସିବେ ।"

"ଆଚ୍ଛା କଥା ! ଜରୁର୍ ଦରକାର ଅଛି, ମିଷ୍ଟର ସିଂଙ୍କୁ କହିଦିଅନ୍ତୁ ମୁଁ ତାଙ୍କର ଜଣେ ବନ୍ଧୁ ଡାକୁଛି, ଜନ୍ମେଜୟ ପାଣ ।"

"କ'ଣ ଦରକାର କହନ୍ତୁ ଆଜ୍ଞା, ନହେଲେ ମୁଁ ଥୋଇ ଦେବି ।"

"ଆରେ ଆରେ । ହେଇ ଶୁଣନ୍ତୁ, ମୁଁ ଜନ୍ମେଜୟ ପାଣ, ଆଗେ ମୁଁ ମନ୍ତ୍ରୀ ଥିଲି, ସେ ମତେ ଜାଣନ୍ତି, ମୁଁ ଅଭିଗ୍ମ ରେଲରୁ ଓହ୍ଲେଇଲି, ଷ୍ଟେସନରୁ କହୁଛି, ମୋ. ସଙ୍ଗେ ମୋ ସ୍ତ୍ରୀ ଅଛନ୍ତି ।"

ଆହୁରି ଦୁଇମିନିଟ୍ ଗଲା, ଜନ୍ମେଜୟ ପାଣ ଫୋନ୍ ଧରିଅଛି । ଶୁଭିଲା—"ହ-ଲୋ ।"

"କିଏ ମିଷ୍ଟର୍ ସିଂ ?"

"ମୁଁ କଲେକ୍ଟରଙ୍କ କହୁଛି ।"

"ନମସ୍କାର ନମସ୍କାର, ମୁଁ ଜନ୍ମେଜୟ ପାଢ଼, ଷ୍ଟେସନରୁ ଫୋନ୍ କରୁଛି ।"

"କୋଉ ଜନ୍ମେଜୟ ପାଢ଼ ?"

"ଷ୍ଟେନୋବାବୁ କହିଲେ ନାହିଁକି ? ମୁଁ ପରା, ଆଗେ ମୁଁ ମନ୍ତ୍ରୀ ଥିଲି ।"

"ମର୍ଣ୍ଣିଂ ମିଷ୍ଟର ପାଢ଼, ହାଉ୍-ଡୁ-ଡୁ ? ମୁଁ ଆପଣଙ୍କ ପାଇଁ କ'ଣ କରିପାରେ ?"

"ଆଜି ଦିନକ ପାଇଁ ସର୍କିଟ୍ ହାଉସରେ ଜାଗା ଟିକିଏ ଦିଅନ୍ତୁ ।"

"ସର୍କିଟ୍ ହାଉସ୍ ? ଧରିଥାନ୍ତୁ, ପଚାରି ବୁଝେ ।"

"ଆଉ ଦୁଇ ମିନିଟ୍ । ସେଉଠୁ—"ହ-ଲୋ—"

"ଧରିଛି ।"

"ସର୍କିଟ୍ ହାଉସ୍‌ରେ ଜାଗା ନାହିଁ ମିଷ୍ଟର ପାଢ଼ ।"

"ଆଉ କୋଉଠି ଜାଗା ମିଳିବ ?"

"ମୁଁ ତ କହିପାରିବି ନାହିଁ ।"

"ଆଚ୍ଛା, ମୋ ପାଇଁ ଖଣ୍ଡେ ଗାଡ଼ି ପଠାଇ ପାରିବେ ?"

"ଏଠି ଖାଲି ଆମମାନଙ୍କ ନିଜ କାର୍ ନହେଲେ ସରକାରୀ ଜିପ୍, ଆଉ ତ ଅନ୍ୟଗାଡ଼ି ଆମର ନାହିଁ ।"

"ତା'ହେଲେ ଗାଡ଼ି ମିଳିପାରିବ ନାହିଁ ?"

"ଭାରି ଦୁଃଖିତ ହେଲି ମିଷ୍ଟର୍ ପାଢ଼ । ଆଉ କିଛି ?"

"କେଉଁବେଳେ ଦେଖା ହୁଅନ୍ତେ ?"

"ବୁଝି କହୁଛି, ଧରିଥାନ୍ତୁ ।"

ପୁଣି ଏକମିନଟ୍, ତା'ପରେ "ହ-ଲୋ !"

"କେତେବେଳେ ଦେଖା ହେବ ?"

"ଆପଣ ରାତ୍ତି ଆଠଟା ପନ୍ଦରରେ ମୋ ବସାକୁ ଆସିପାରନ୍ତି, ଅପେକ୍ଷା କରିବ ?"

"ଧନ୍ୟବାଦ । ଦେଖେ । ହଉ ନମସ୍କାର ।"

ଫୋନ୍ ଥୋଇ ଦେଇ ଜନ୍ମେଜୟ ପାତ୍ର ଚମ୍ ହୋଇ ଠିଆ ହେଲେ ମୁହଁ ଜଳ ଯାଉଥାଏ, କାନମୁଣ୍ଡା ଝାଇଁ ଝାଇଁ । ଗୃହକୁ ଆସୁଥିଲେ । ପୁଣି ଲେଉଟିଗଲେ, କହିଲେ, "କ୍ଷମା କରିବେ, ଆଉ ଥରେ ଫୋନ୍ କରିବ ।"

"ପୁଣି ଗୃହଣି ପଇସା ।"

"ନିଅନ୍ତୁ ।"

ଏଥର ଏମ୍ ଡ ଓ ଙ୍କୁ ଫୋନ୍ କଲେ ।

"କିଏ କହୁଚ ?"

"ଏସ୍ ଡ ଓ ଅଛନ୍ତି ?"

"ଅଛନ୍ତି ଯେ, ଆଗେ କହ, କିଏ କହୁଚ ?"

"ଆପଣ କିଏ ?"

"ମୁଁ ତାଙ୍କ ଚପରାସୀ ।"

"ହଉ ହଉ, କହିଦେବ, ଜନ୍ମେଜୟ ପାତ୍ର, ଆଗେ ଯେ ମନ୍ତ୍ରୀ ହୋଇଥିଲେ, ସେଇ ଫୋନ୍ କରିଛନ୍ତି ଷ୍ଟେସନରୁ, କ'ଣ ଜରୁରି ଦରକାର ।"

"ହଉ ।"

ସଙ୍ଗେ ସଙ୍ଗେ "ଆଜ୍ଞା ନମସ୍କାର, ମୁଁ ଜଗବନ୍ଧୁ ।"

"ଜଗୁବାବୁ ନମସ୍କାର । ଅଇଲୁ ଓହ୍ଲାଇଲି ରେଲରୁ, ସଙ୍ଗରେ ସ୍ତ୍ରୀ, ଆଜକ ରହିବୁ । କଲେକ୍ଟର କହିଲେ ସର୍କିଟ୍ ହାଉସ୍ ନାହିଁ, ଗାଡ଼ି ବି ତାଙ୍କଠି ନାହିଁ, ତେଣୁ ଆପଣଙ୍କୁ ଅନୁରୋଧ କଲି ।"

"ଆପଣଙ୍କର କ'ଣ ଦରକାର ? ଅସୁବିଧା କ'ଣ ? ମୁଁ ତ ଅଛି ।"

"ରହିବି କୋଉଠି ? ଏଠୁ ଯିବି ନାଗେରୁ, ବାଇଶି ମାଇଲ୍, ଗାଡ଼ିଟିଏ ମିଳିଲେ ବର୍ତ୍ତମାନ ଚାଲିଯାନ୍ତି, ନହେଲେ ଗତ ୧୧ଟା ବସ୍‌କୁ ଅପେକ୍ଷା କରିବାକୁ ପଡ଼ିବ । ନାଗେରୁରେ ନାତୁଣୀ-ଜୋଇଁ ଡେପୁଟି ଲେବର ଅଛି, ପୂର୍ଣ୍ଣଚନ୍ଦ୍ର ପାଣି, ଆପଣ ଶୁଣି ଥିବେ ପରା, ନାତୁଣୀଟି ଭାରି ବେମାର୍, ତାକୁହିଁ ଦେଖିବାକୁ ଆସିଛି ।"

"ହୁଁ, ବୁଝିଲି । ସର୍କିଟ୍ ହାଉସ୍ କି ଆଇ. ବି. ମିଳିବ ନାହିଁ । ହୋଟେଲ ଯେମିତି ଭଲ ନୁହେଁ, ଆପଣଙ୍କୁ ଆଦୌ ଭଲ ଲାଗିବ ନାହିଁ । ନାଗେରୁ ଗଲେ ଯେଉଁ ରାତି ବସ୍, ଆଗରୁ ନାହିଁ, କାହାର ତେଣେ କାମ ଥିବ କାର୍‌ରେ ଯାଉଥିବ ଏସବୁ ଆଗରୁ କଥା କରି ନରଖିଲେ ହଠାତ୍ ସେପରି ମିଳିବା ତ ସମ୍ଭବ ନୁହେଁ, ଟ୍ୟାକ୍ସି ତାକୁ କହିହେବା ବୃଥା, ସେ ରାସ୍ତାକଟା ବି ଖରାପ । ମୋର ଗାଡ଼ିଟିଏ ଅଛି ଯେ, ପୁରୁଣା ଗାଡ଼ି, ଭଲ ନାହିଁ, ଡ୍ରାଇଭର ବି ମୁଁ ନିଜେ, ଏତେ କାମ ଯେ ଏଠୁ ଛାଡ଼ି ଯାଇପାରିବି ନାହିଁ ।"

ସେ ପାଖରୁ ଦୀର୍ଘଶ୍ୱାସ ଶୁଭିଲା । ଜଗୁବାବୁ କହିଲେ, "ତେବେ ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ବର୍ତ୍ତମାନ ଯାଇ ଆପଣମାନଙ୍କୁ ଆମ ବସାକୁ ନେଇ ଆସୁଛି, ମୋ ପିଲାଏ ଅଛନ୍ତି, ଆପଣଙ୍କର କିଛି ଅସୁବିଧା ହେବ ନାହିଁ । ଆପଣ ଖାଇପିଇ ବିଶ୍ରାମ କରିବେ, ମୁଁ ଖବର ରଖିଥିବି, ବୁଝୁଥିବି, ଯଦି କାହା ଟ୍ରକ କି କାର୍ ନାଗେରୁ ଯାଉଥିବ, ମିଳିଲେ ଆପଣମାନେ ସେଥିରେ ଚାଲିଯିବେ, ନହେଲେ ରାତି ଦଶଟାରେ ବସ୍ ଧରିବେ । କଣ କହୁଛନ୍ତି ?"

"ଆପଣଙ୍କୁ ହୃଦୟ ଭିତରୁ ଆଶୀର୍ବାଦ କରୁଛି । ଆପଣଙ୍କୁ ହଇରାଣ କଲି, କ୍ଷମା କରିବେ ।"

ଜଗୁବାବୁ ଗଲେ । ଦେଖା ହେଲା ମାତ୍ରେ ଜନ୍ମେଜୟବାବୁ ତାଙ୍କୁ କୁଣ୍ଢାଇ ପକେଇଲେ, ତାଙ୍କ ପାଟି ଥରୁଥାଏ, କହିଲେ, "ଆପଣଙ୍କର କି ସ୍ନେହ ! କି ହୃଦୟ !"

ଏସ୍ ଡ଼ ଓ ବସାକୁ ଗାଡ଼ ଗ୍ଭଲଥାଏ । ଜନ୍ମେଜୟ ବାବୁ ପଗ୍ଭରିଲେ "ଆପଣଙ୍କର ଯେ ପୁଅଟି କ'ଣ କରୁଛି ? ରଘୁ ନା ?"

"ରଘୁ ଡାକ୍ତର ପଢ଼ୁଛି ଆଜ୍ଞା ।"

"ସତେ ଡାକ୍ତର ପଢ଼ିଲା ? ଆଶ୍ଚର୍ଯ୍ୟ ପିଲା । ବହୁତ ବାଟ ଯିବ ସେ, ସୁଲକ୍ଷଣ ପିଲା । ସେଦନ ସଞ୍ଜରେ ମତେ ଯାହା କହିଥିଲା ମନେ ଅଛି ?"

ଜଗୁବାବୁ ହସିଲେ । "ପିଲାଲୋକ—"

"ପିଲା ହେଲେ ବି ଠିକ୍ କହିଥିଲା । ସେହି କଥା ମୁଁ କେତେଥର ଗ୍ଭବୁଛି, କେତେଥର ଅନୁଭବ କରୁଛି । ଆଜି ତ ପ୍ରତ୍ୟକ୍ଷ ।"

"ଗ୍ଭଡ଼ନ୍ତୁ ଆଜ୍ଞା, ମଣିଷ ଧିଏ ଧିଏ ଆସେ ଧିଏ ଧିଏ ଯାଏ, କେଉଁଠା କାହାଠିଁ ଲଗିରହେ ଯେ ଆପଣ ଗ୍ଭବୁଛନ୍ତି ?"

'ନବରବି' ପୂଜାସଂଖ୍ୟା



# ବାରୁଦ

ଆସନ୍ତା ଫଗୁଣ ପୂନେଇଁ ଦିନ ତା'ର ଛବିଶି ଜନ୍ମଦିନ । ବୋଉ କହୁଥିଲା, ବୋଉ କେତେକଥା କହେ, କିନ୍ତୁ ଏତକ ସେ ମନେରଖିଛି । ମନେ ମନେ ଆପେ ଆପେ ମଧୁ ମିଶ୍ର ଦିନ ଗଣେ, ଆଉ ରହିଲା ଦଶଦିନ । ଦିନ ବାରଟାବେଳ ଖରାରେ ସାଇକଲ୍ ଚଢ଼ି ସହରର ରାସ୍ତାଏ ରାସ୍ତାଏ ବୁଲୁ ବୁଲୁ ଯେତେବେଳେ ବି ଆପେ ଆପେ ମନେପଡ଼ୁଥିଲା—ଆଉ ଦଶଦିନ, ହିଁ, ସେଉଠୁ ? ଜନ୍ମଦିନ ହେବ, ଯିବ, କ'ଣ ତା'ର ଅଧିକା ତାତ୍ପର୍ଯ୍ୟ ? ତାତ୍ପର୍ଯ୍ୟ ଖାଲି କେତେ ସ୍ୱପ୍ନ, ଆଖି ଖୋଲିଲେ ସ୍ତରପରେ ଝୁଲୁଛି, ଗୋଟିକୁ ଚିକୁଟି ଅନାଇଁଲେ ସେ ଝାପ୍ସା ହୋଇ କୁଆଡ଼େ ନିଭିଯାଏ । ସ୍ପଷ୍ଟ ଅର୍ଥ କିଛି ମିଳେ ନାହିଁ । କିନ୍ତୁ ଗୋଟିକା ଗୋଟି, ପୁଣି ସବୁ ଏକାଠି ହୋଇ ମନରେ ସଞ୍ଚାରିଯାଏ ଆଶା, ଆନନ୍ଦ, ମନଭୁଲା ରଙ୍ଗ ଓ ମହକ । ସବୁ ଗଡ଼େ ଗୋଟିଏ ଆଶାପ୍ଦୀ ତାତ୍ପର୍ଯ୍ୟ—ମଧୁ ମିଶ୍ର ବୋଲି ଦମ୍ଭିଲା ମଣିଷଟିଏ ଠିଆ ହୋଇଛି, ଯାହା ଲୋଡ଼ୁଥିଲା ସବୁ ପାଇଛି, ଯାହା ଲୋଡ଼ିବ ସବୁ ପାଇବ । ଦିନ ଭିତରେ ବାର ହୋଇପଡ଼େ । ତା'ର କେତେ ଖାତିର, କେତେ ମାନ, ଧନ, କ୍ଷମତା, ଲୋକବଳ, ନାଁ, ଶକ୍ତି, ସବୁ ତା'ର ଅଧିକରୁ ଅଧିକ । ସେ କଳ୍ପନା କରେ ସ୍ତ୍ରୀ, ପରିବାର, ବଡ଼ଘର, ଗାଡ଼ି, ଧମ୍ମା ଚଳଣି, ଅନ୍ୟମାନଙ୍କ ଉପରେ କର୍ତ୍ତୃତ୍ୱ, ପ୍ରଭୁତ୍ୱ, ସମୃଦ୍ଧିର ନାନା-ପ୍ରକାର । ତା'ପରେ ପୁଣି ସେ ସ୍ୱପ୍ନ କୁଆଡ଼େ ଉଭେଇଯାଏ, ଭାବିବାକୁ ବି ଲାଜମାଡ଼େ ।

ଜନ୍ମଦିନ କଥା ଭାବୁଭାବୁ ପୁଣି ଯେପରି ସ୍ୱପ୍ନମୟ ଅନୁଭୂତି ମୁଣ୍ଡ ଟେକୁଥିଲା, ଲାଗୁଥିଲା ହୁଏତ ସେହି ଦିନଠୁଁ ହେବ ତା'ର ଆଶା ଆନନ୍ଦମୟ ନୂଆ ଇତିହାସ, ଜୀବନ ମୋଡ଼ ନେବ । କେତେ ରାତିରେ ଶୋଇଲାବେଳେ

ସେ ମନେ ମନେ ସେପରି କଳ୍ପନା କରେ, 'ଏବେ ସକାଳୁ ଉଠିଲାବେଳକୁ ସେ ଦେଖିବ ନୂଆଦିନ, ଆଖି ବୁଜିଦିଏ । ରାତି ପାହେ, ତା'ପରେ ସେଇ ପୁରୁଣା ସକାଳ ଓ ଜଞ୍ଜାଳ ବି ।

ତିନି ଭାଇ, ଚାରି ଭଉଣୀ । ତା' ଉପର ଭଉଣୀ ଓ ତା' ତଳ ଭଉଣୀ ବଡ଼ ହୋଇ ଗଲେଣି । ଚତୁର୍ଥଟି ସାନଭାଇ, ହରି, ମ୍ୟାଟ୍ରିକୁଲେସନ୍ ପରୀକ୍ଷାରେ ଫେଲ୍ ହେଲାପରେ ନିଜେ ସେ ଯାଇ ଜଣକର ମଟର ମରାମତି ଗ୍ୟାରେଜ୍‌ରେ କାମ ଶିଖିଲା । କାମ କରୁ କରୁ ଦରମା ଦେଢ଼ଶ ପାଏ ଗଲାଣି । ହରି ବିଶ୍ୱାସ କରିଛି ଦିନେ ସେ ତା' ନିଜ ଗ୍ୟାରେଜ୍ ଖୋଲିବ, ସେ ଭଲ କାମ ଜାଣେ ବୋଲି କୁଆଡ଼େ ଲୋକେ କହନ୍ତି । ପଞ୍ଚମଟି ଭଉଣୀ, ଉମା, ମ୍ୟାଟ୍ରିକୁଲେସନ୍ ଶେଷ ବର୍ଷରେ ପଢ଼େ, ତା' ତଳେ ଦଶମ ଶ୍ରେଣୀରେ ପଢ଼େ, ସ୍କଲର୍‌ସିପ୍ ପାଏ, ଭଲ ପିଲା, ତା' ତଳେ ଶିବ, ରମା, ଅଷ୍ଟମ ଶ୍ରେଣୀ । ତା' ବାପା ଜଣେ ମିସ୍ତ୍ରୀ ଗୋଟିଏ ଅଫିସ୍‌ରେ କରନ୍ତି, ମାସକୁ ସାଢ଼େ-ତିନିଶହ ଟଙ୍କା ଦରମା ପାଆନ୍ତି, ଆଉ ଦି'ବର୍ଷରେ ସେ ପେନ୍‌ସନ୍ ନେବେ । କରଜ କରି ସହରରେ ଘରଟି ତୋଳିଲେ, ଶୋଇବାକୁ, ଚଳପ୍ରଚଳ ହେବାକୁ ସାନ ସାନ ତିନିବଖରା, ତା' ଛଡ଼ା ବୋପେଇ ଘର ଆଦି, କରଜ ଶୁଝା ମାସକୁ ମାସ ଚାଲିଥାଏ ।

ସେଇ ଅଭାବୀ ଘରର ନିତିଦିନିଆ ଜଞ୍ଜାଳ ମଧ୍ୟକୁ ଆପଣା ଜୀବନର ସ୍ୱାଭାବିକ ଉପାଦାନ ପରି ଅନୁଭବ ହୁଏ । ନୂଆ କିଛି ନୁହେଁ ଯେ ହଠାତ୍ ତା' ଆଖିରେ ପଡ଼ନ୍ତା ଓ ନୂଆ ଦୃଷ୍ଟିରେ ସେ ବିଷୟରେ ସେ ଭାବନ୍ତା । କିନ୍ତୁ ମଝିରେ ମଝିରେ ସେ ଚମକିପଡ଼େ ଚାହିଁ । ମୋଟା ସୋଟା ଖାଇ, ଛିଣ୍ଡା ଫଟା ପିନ୍ଧି, ଯେତେ ଟାଣିଓଟାରି ହୋଇ ଚଳିଲେ ବି ନିଅଣ୍ଟ ନିଅଣ୍ଟହିଁ; ଅତୃପ୍ତି ଓ ଅଶାନ୍ତି ଏଠି ଲେଖା ହୋଇ ରହିଥାଏ କାନ୍ଥରେ ବାଡ଼ରେ, ମଣିଷଙ୍କ ମୁହଁରେ । ବାପା ବୋଉ ଭଳି ଟାଣ ଦୁଇ ଦୋଓଟି, ବୋଉ ସକାଳୁ ରାତିଯାକେ ଖଟୁଥାଏ, ସବୁଥିକି ଓ ସମସ୍ତିଙ୍କି ତା' ନିଘା, ସମସ୍ତିଙ୍କ ପାଇଁ ତା' ଶ୍ରମ । ବାପା ଶୁଖି ଶୁଖି ଗଲେଣି, ଦୋହଲାଇ ପରି ଚାଲନ୍ତି, ମୁହଁଯାକ ଚିନ୍ତାର ପୁଟ ପୁଟ, ମଧୁ ବୁଝେ—ସେ ମୁହଁରେ ଚିନ୍ତା-ଦାଗ—ଘର ଚଳିବ କେମିତି ? ରମା ଉମା ବାହାହେବେ କେମିତି ?

ଶିବଟି ଭଲ ପଢ଼ୁଛି, ସୁବିଧା ପାଇଲେ ଯତ୍ନ ପାଇଲେ ମଣିଷ ହୁଅନ୍ତା ପରା, ବଡ଼ ପାଠ ପଢ଼ିବାକୁ ଆହୁରି କେତେବର୍ଷ—ପଢ଼ିବ କେମିତି ? କରଜ ସବୁ ସୁଝାହେବ କେମିତି ? କେବେ ? ଯେମିତି ଅକାଳ ପଡ଼ୁଛି, ଦିନୁଦିନ ହୁହୁ କରି ଦର ବଢ଼ିଯାଉଛି, ସାଧାରଣ ଖାଇବା ଜିନିଷ ବି ବଜାରରେ ଅଦୃଶ୍ୟ ହୋଇଯାଉଛି, ମୁହଁ ଦେଖାଇଲେ କିଣିବାକୁ ଅମୂଲ ମୂଲ, ଘର ଚଳିବ କେମିତି ?

ମଧୁ ବୁଝେ ବାପାବୋଉଙ୍କ ମନର ଚିନ୍ତାଦିକ, ଅନୁମାନ କରେ ସେ ଜାଣିପାରୁଛି । ଛୁଆମାନେ ଯେ ତାକୁ ମୁହଁଖୋଲି କେହି ଯାହା ନ କହନ୍ତୁ ସେ ତା' ଜାଣେନାହିଁ ।

ଓ ସେମାନଙ୍କର ସବୁ ଚିନ୍ତାକୁ କରଜ୍କୁ ଠେଲିଦେଇ ସେ ବେଶି ବେଶି ବୁଝେ ତାଙ୍କ ମନର ପ୍ରଧାନ ଉଦ୍‌ବେଗ, ଅଭିଯୋଗ ଓ ନିରାଶାର କାରଣ—ସେ ନିଜେ ।

ସେ କେବେ ବାପ ମା'ଙ୍କର ଅବାଧ ହୋଇନାହିଁ । ପାଠ ପଢ଼ିବାକୁ କହିଲେ, ପାଠ ପଢ଼ିଲା । ସତ, ପ୍ରତିଯୋଗିତାରେ ଅନ୍ୟାନ୍ୟ ଛାତ୍ରଙ୍କୁ ସେ ଟପି ନାହିଁ, କିନ୍ତୁ କୌଣସି କ୍ଲାସରେ ଅଟକି ନାହିଁ । ଗୋଟିକ ପରେ ଗୋଟିଏ ହୋଇ ସେ ପାସ୍ କରି କରି ବି. ଏ. ପାସ୍ କଲା, ଦେଖୁଥାଏ ଦିନୁଦିନ ବାପାଙ୍କର ଆଗ୍ରହ ବଢ଼ୁଛି, ଆଶା ବଢ଼ୁଛି, ମଧୁ ଏଥର ଚାକିରି କରିବ, ରୋଜଗାର କରିବ । ହେଲେ ତା'ର ପାଠରେ ପାଣିକି ଛେଳି ନୁହେଁ, ମନମୁଖୀ ନୁହେଁ, ସେ ବିଦ୍ୱାନ୍ ଗ୍ରାଜୁଏଟ୍ । ନିଜେ ଜଗୁ ମିଶ୍ର ଆଇ. ଏ. ପଢ଼ୁ ପଢ଼ୁ ପଢ଼ା ଛାଡ଼ି ଚାକିରିରେ ପଶିଥିଲେ, ଆଉ ମଧୁ ତ ଗ୍ରାଜୁଏଟ୍, ଭାଗ୍ୟ ଥିଲେ ସେ କୌଣସି ବଡ଼ ଚାକିରି ସେ କରି-ପାରିବ ।

ତା'ପରେ ଆରମ୍ଭ ହେଲା ତା'ର ଚାକିରି ଖୋଜା, ଦରଖାସ୍ତ ଲେଖିବା, ଧାଇଁବା, ଖୋଜିବା । ଏକା ସେ ନୁହେଁ, ଜଗୁବାବୁ ନିଜେ ବି ଲାଗିପଡ଼ିଲେ । କେତେ ଚିହ୍ନାଲୋକଙ୍କୁ ଅନୁରୋଧ, କେତେଠି କେତେ

ପରାମର୍ଶ । ଏ ଅଫିସ୍, ସେ ହାକମ, ସେ ଅନୁଷ୍ଠାନ । କିନ୍ତୁ ସବୁଠି ଶହ-ଶହ ପ୍ରାର୍ଥୀ, କାହାର କେତେ ଉଦ୍ୟମ, କେଉଁ ପ୍ରକାର ବିଶିଷ୍ଟ ଯୋଗ୍ୟତା, କେତେଠି ମୂଳରୁ ନିଧନ ହୋଇ ବାହୁଡ଼ିବାକୁ ପଡ଼େ, କେତେଠି ଆଶା ଦେଲେ, ପୁଣି ନିଭିଯାଏ, ବିତିଗଲା ମାସ ପରେ ମାସ, ବର୍ଷ ପରେ ବର୍ଷ । ଶୂନ୍ୟ ଶୂନ୍ୟ ଗୁଡ଼ିଏ ବର୍ଷ ଗଲାଣି, କୁଆଡ଼େ କିଛି ନାହିଁ । ତା' ସାଙ୍ଗର ଅନ୍ୟମାନେ କେତେ କେତେ ନିଯୁକ୍ତ ହୋଇଲେଣି, କିଏ ଆଇ. ଏ ଏସ୍., କିଏ ଡାକ୍ତର, କିଏ କେଉଁ ପ୍ରକାର କର୍ମଚାରୀ, ବ୍ୟାଙ୍କ୍ କିରାଣିରେ, କମ୍ପାନୀ କିରାଣିରେ, କିଏ ଶିକ୍ଷକ, କିଏ କିରାନି, ଆଉ ଅନେକ ଆଉ ଧଶୁନାହାନ୍ତି, ନିଯୁକ୍ତ କି ବେକାର ସେ ଜାଣେ ନାହିଁ । କେତେଜଣ ବ୍ୟବସାୟ ଧନ୍ଦା ବି ଧରିଲେଣି । ଆଉ କେତେଜଣ ରାଜନୀତି କରନ୍ତି । କିନ୍ତୁ ତା'ର କିଛି ହେଉନାହିଁ ଯେ । ବାପାବୋଉଙ୍କ ମୁହଁଣିରେ ସେ ସେହି ନୈରାଶ୍ୟେତ୍ପ୍ରଦ ମନ୍ତବ୍ୟ ହିଁ ଦେଖେ, କିନ୍ତୁ ସେମାନେ ତାକୁ ଦୋଷ ଦିଅନ୍ତି ନାହିଁ, ବାପା ତାକୁ ଯେଉଁଠିକି ବା ଯାହା ପାଖକୁ ଯେତେବେଳେ ପଠାଇଛନ୍ତି ସେ ଯାଇଛି, କେବେ ନାହିଁ କରିନାହିଁ ।

ଦୋଷ ଦିଏ ସେ ନିଜକୁ ନିଜେ । ଭାବେ ସେ ଅପାରଗ । ସେ ଯେତେଠି ଚେଷ୍ଟା କରିଛି ସେମାନେ ଜାଣନ୍ତି ନାହିଁ । ବେପାରୀ ଦୋକାନୀ-ମାନଙ୍କ ପାଖକୁ ଯାଇ ବି ଦାନ୍ତ ନିକୁଟିଛି । କହିଛି ଗୋଟାଏ କାମ ଦିଅ, ମୁଁ ବି. ଏ ପାସ୍ କରିଛି । ଖୋଜିଛି, କେଉଁ ପ୍ରାଇଭେଟ୍ ସ୍କୁଲରେ କାଳେ ମାଷ୍ଟର କାମ ମିଳିବ, ଅଥବା କେହି ଦୟା ପରବଶ ହୋଇ ପିଲା ପଢ଼ାଇବା ଟିଉସନ୍ ଯୋଗାଡ଼ କରିଦେବେ । ନିରାଶ ହୋଇ ଫେରିଛି । ତଥାପି ନିଜର ଦୋଷ ବାଛେ—ଆନ୍ତରିକ ଚେଷ୍ଟା କ'ଣ ସେ ପ୍ରକୃତରେ କରିଛି ? କେତେଠି ଦରମା କି ସର୍ତ୍ତର ଅନିଶ୍ଚିତତା ଦେଖି ଆଉ ନ ଭରସି ସେ ଫେରିଆସିଛି । କେତେଠି କିଛି ଅଣ୍ଟାଗୁଞ୍ଜା ମାଗିଥିଲେ, ଗୁଡ଼ିକର କଲେ ଦେବ ବୋଲି ହିଁ ଭରିଥିଲେ ବୋଧହୁଏ ଚଳିଥାନ୍ତା । କେତେଠି କେଉଁ କାମ ପାଇଁ ଚେଷ୍ଟା କରିବାକୁ ଭାବିଲାବେଳେ ଅନ୍ତରସ୍ଥ ହୋଇଛି ଏସବୁ ଓ କାମ ପ୍ରତି ତା' ଅରୁଚି, ବିବେକ ମନା କରିଛି, ନ୍ୟାୟ-ଅନ୍ୟାୟ ପାପପୁଣ୍ୟର ସଂସ୍କାର ମନକୁ ଦୋହଲେଇଛି । ଲାଞ୍ଚ, ମିଛ, ଦୁର୍ନୀତି, ଫିସାଦ୍, ଠାଉଠର, ଅନୀତି—ଏସବୁ ଗୁଡ଼ିଆଡ଼େ ପୂରିଛି ବୋଲି

ତା'ର ବିଶ୍ୱାସ ବିଦ୍ୟାଳୟ, ପାଠ ପଢ଼ିଲା ଦିନୁଁ—ବାରମ୍ବାର ସାଙ୍ଗମେଳରେ ବି ଏହି ଆଲୋଚନା ହୁଏ, ନାନା କାହାଣୀ, ନାନା ଉଦାହରଣ ଲୋକେ ହାକୋହି ହୁଅନ୍ତି, ସେମାନେ ରାଗନ୍ତି, ଘୃଣା କରନ୍ତି, ଗାଳି ଦିଅନ୍ତି, ତଥାପି ଉପହାର କରନ୍ତି—ଆଜିକାଲି ଦୁନିଆରେ ଉପଧଇବା ବାଟ ସେହି, ଯେହି ଉପାୟ ଧରିଲେ ଉଦ୍ଦେଶ୍ୟ ସିଦ୍ଧି ହୁଏ, ଆୟ ବଢ଼େ, ପ୍ରତିଷ୍ଠା ବଢ଼େ । ସେ ନିଜେ ସାଧୁସନ୍ନ୍ୟାସୀ ନୁହେଁ, ମିଛ ବି କହିଥାଏ, ବିପଦ ନ ଥିଲେ ନିଜ ସୁବିଧା ପାଇଁ କେତେବେଳେ କେଉଁ ଅବୈଧ ଉପାୟ ଧରିବାକୁ ପଛାଏ ନାହିଁ; କିନ୍ତୁ ସେ ସବୁ ସାନ ସାନ ସୁବିଧା, ନିଜର ନିତିଦିନର ଚଳଣି କାମରେ । ନିଜ ଅନ୍ତର ଭିତରେ ଦରାଣ୍ଡେ—ଲାଞ୍ଚ ମିଛ ଦୁର୍ନୀତିର ଯେଉଁ ଉପାୟ ଓ ଉଦାହରଣ କଥା ସେ ଶୁଣିଛି, ତା'ର ଲାଭ ଫଳ ପ୍ରତି ତା'ର ବିତୃଷ୍ଣା ନାହିଁ, ଆଗ୍ରହ ହିଁ ଅଛି । କିନ୍ତୁ ସେ ତହିଁରେ ତାଲିମ୍ ପାଇ ନାହିଁ, ସେ ବାଟ ଜାଣେ ନାହିଁ ଓ ବିପଦକୁ ସେ ଡରେ, ଉପରେ ପଡ଼ି ବିପଦ ମୂଲେଇବା ଧାରଣାରୁ ସେ ମନେ ମନେ ପଛେଇ ଯାଏ ଓ ତା' ମନର ସଂସ୍କାର ଏପରି ଯେ କେତେବେଳେ ଗାଲରେ ଦେହରେ ଅଜଣା ଦାଗ ଲାଗିଗଲେ ସେ ଛଳ କରେନାହିଁ ସିନା, ଅସନାରେ ଘାଣ୍ଟି ହେବାକୁ ସେ ଘୃଣା କରେ, ସେ ଅସ୍ୱାସ୍ଥ୍ୟକର ଓ ଅପ୍ରୀତିକର । ଯେସବୁ ବାଟ ତେଣୁ ତା' ପାଇଁ ବୁଜା ଓ ସେ ବାଟକୁ, ସେ ବାଟର ବାଟୋଇମାନଙ୍କୁ ଗାଳିଦେଲାବେଳେ ତେଣୁ ତା'ଠିଁ ଫୁଟି-ଉଠୁଥିଲା ଉଗ୍ରତା ଓ ତାଳି ।

କେତେଥର ତା' ସାନଭାଇ ହରି ବୁଝେଇ ବାପଙ୍କୁ କହେ—"ଉସ୍କୁଲ କଲେଜରେ ଉଚ୍ଚଶିକ୍ଷା ଗୋଟାଏ ପ୍ରକାରରେ ଦେଖିଲେ ଗୋଟାଏ ବାଘନ, ପାଠ ପଢ଼ି ମଣିଷ ଖ୍ବବ ପାଠ ଛଡ଼ା ଅନ୍ୟ ଉପାୟରେ ସେମା କଉଣୋ ଚଳିବ ନାହିଁ, ସେଇଠୁ କେତେ ବାଟ ବନ୍ଦ । ଯେଉଁ ହଜାର ହଜାର ମଣିଷ ହଜାର ହଜାର ଧନ୍ଦା କରି ବଞ୍ଚିଛନ୍ତି, ନିଜେ ରୋଜଗାର କରୁଛନ୍ତି ଅନ୍ୟମାନଙ୍କୁ ନିଯୁକ୍ତି ଦେଉଛନ୍ତି, ସେମାନେ ସମସ୍ତେ ସବୁ କ'ଣ ସ୍କୁଲ କଲେଜରୁ ସାର୍ଟିଫିକେଟ୍ ପାଇଛନ୍ତି ? ନା । ସେ ଗୋଟାଏ ଅଲଗା ଦୁନିଆ । ସେଠି ମଣିଷ ଖଟାଏ ନିଜ ଦେହ, ନିଜ ବୁଦ୍ଧିବଳ, ନାନା ଫିକର, ପାଠକୁ ବୁଜୁଳା ବାନ୍ଧି ଥୋଇ ଦେଇ ସବୁ ଭଲେଇକି ଉଦ୍ଭୁଲେକପଣିଆରୁ ନିଜଠୁ

ଅଲଗା କରିଦେଇ ସେଇ ଦୁନିଆରେ ଦେହ ଘଷାଘଷି କଲେ ବଳେ କିଛି ବାଟ ମିଳିଯାଏ ।" ଏ ସବୁଥର ମଧୁ ତାକୁ ଟିଗୁଳାଏ—"କୁଲିକାମ ତ ? ସେଇଆ ତ କହୁଛି ?" ହରି ଔଦ୍ଧତ୍ୟ ଦେଖାଏ ନାହିଁ, କିନ୍ତୁ ଜବାବ୍ ଦିଏ, "ଆରମ୍ଭ ବେଳେ କୁଲି ମୁଁ ଥିଲି ସତ ଭାଇ, ଅଭିଜ୍ଞ ମେକାନିକ୍ । ଚୋରି ତ କରୁନାହିଁ, ଭିକ ତ ମାଗୁନାହିଁ, ପେଟ ପୋଷିବା ପାଇଁ ଦେହ ମେହେନତ୍ କଲେ ଲାଜ କ'ଣ ?"

କିନ୍ତୁ ହରି କେବେ କହେ ନାହିଁ, ଯେ ଭାଇ ଏଇ ବାଟ ଅଛି, ଏଇବାଟେ ତୁମେ ଚେଷ୍ଟା କର । ସେ ସକାଳୁ ଯାଏ, ସନ୍ଧ୍ୟାରେ ଫେରେ, ତା' ଦୁନିଆ ଭିନେ । ତା' ସାଙ୍ଗମାନେ ବି ଭିନେ ଲୋକ । ତା' ଭାଇ କିଛି କାମ ପାଉନାହିଁ ସେଥିପାଇଁ ସେ ଦୁଃଖିତ, କିନ୍ତୁ ତା' ଭାଇ କଲେଜ ପାଠ ପଢ଼ି ତାଠୁଁ ଗୋଟିଏ ଭିନେ ଶ୍ରେଣୀର ମଣିଷ ହୋଇଛି ଓ ସେ ତା' ବାଟ ଧରିପାରିବ ନାହିଁ, ଏହିପରି ତାର ଧାରଣା । ମଧୁ କେବେ ଭାବି ପାରିନାହିଁ ଯେ କେଉଁଠି ଚାକିରି ଛଡ଼ା ତା' ପାଇଁ ଆଉ କିଛି ଭିନେ ପନ୍ଥା ଥାଇପାରେ । "ଜମି ଥିଲେ ଚାଷ କରେଇ ଥାନ୍ତି, ମୂଳଧନ ଥିଲେ କୌଣସି ବ୍ୟବସାୟ କରିଥାନ୍ତି, ସେସବୁ ତ ନାହିଁ", ଶୁଖିଲା ମୁହଁରେ ଦୁଃଖରେ ହସିଦେଇ ସେ ହରିକୁ କହେ ଓ ନିଜକୁ ଅନୁକମ୍ପା ଦେଖାଇ କ୍ଷମା କରେ, "ଯେତେ ଚେଷ୍ଟାକରୁଛି ଚାକିରି କେଉଁଠି ମିଳୁନାହିଁ ।"

ପଚିଶିବର୍ଷର ଯୁବକ, ପାତଳ ଗଢ଼ଣ, କ୍ଷେତରେ କି କାରଖାନାରେ ନିଜ ଦେହକୁ କେବେ ସେ ପରଖି ନାହିଁ, କିନ୍ତୁ ଯୌବନ ଅଛି, ସେ ସହଜରେ କ୍ଲାନ୍ତ ହୁଏ ନାହିଁ, ବେମାର ପଡ଼େ ନାହିଁ, ଚଞ୍ଚଳ ଗତି, ସେ କେବେ ଭାବେ ନାହିଁ ଯେ ସେ ଦୁର୍ବଳ ।

ସାଇକଲ୍ ଖଣ୍ଡିକ ଚଳାଇ ସହରର ନାନା ସ୍ଥାନ ସେ ବୁଲୁଥାଏ, କେତେବେଳେ କେହି ଚିହ୍ନାଲୋକ କି ସାଙ୍ଗଦଳ ହାବୋଡ଼ଗଲେ ଗପରେ ମାତିଲେ ସମୟ ବାରିହୁଏ ନାହିଁ, ଗପ ଚାଲେ ନିଜକଥା ଛଡ଼ା ଅନ୍ୟ ସବୁ ବିଷୟରେ—ଦେଶର ହାଲ୍‌ଚାଲ୍, ଅନ୍ୟମାନଙ୍କ ଭଲମନ୍ଦ, ଚଳନ୍ତି ଖବର, ନାନା କଥା । ଏକୁଟିଆ ଥିଲାବେଳେ ମନ ଭିତରେ ହାଲୁହାଲୁ

ହେଉଥାଏ ନିଜର ସମସ୍ୟା ଚିନ୍ତା—ଦିନ ଯାଉଛି, ରୋଜଗାର ନାହିଁ, ନିଯୁକ୍ତି ନାହିଁ, ଜୀବନ କେଉଁ ବାଟ ଧରିବ ତା'ର ଥିଏ ଠିକଣା ନାହିଁ । କିଛି ଉପାୟ ଦିଶୁନାହିଁ ।

ମଧୁ ମିଶ୍ରର ମନ ଭିତରେ ଦ୍ୱନ୍ଦ୍ୱ ଚାଲୁଥାଏ ।

କାହା ସ୍ୱଭାବ ଚରିତ୍ର ବିଷୟରେ ଯେତେ ଯାହା ଖରାପ କଥା ସେ ଶୁଣେ ସେ ସବୁ ବିଶ୍ୱାସ କରେ, ଯାହା ବିଷୟରେ ଯେଉଁ ଭଲ କଥା ଶୁଣେ ସବୁ ଅବିଶ୍ୱାସ କରେ । ନିଜେ ଖବର ଉଣ୍ଡୁଥାଏ । ଦେଶରେ ଯେଉଁମାନଙ୍କର ଯେଉଁ ବିଷୟରେ ପ୍ରତିଷ୍ଠା ଶୁଣେ, ତାଙ୍କ ବିରୁଦ୍ଧରେ କ'ଣ ଅଛି । ଯେପରି କିଛି ନ ଶୁଣିଲେ ସେ ଭାବେ, ନିଶ୍ଚୟ ସେଭଳି ଖବର ଥିବ, ସେ ଶୁଣିନାହିଁ, ତା ବୋଲି କେହି ମୁକ୍ତ ନୁହେଁ । ନିଜକୁ ସେ ଭାବେ ବିନା କାରଣରେ ବଞ୍ଚିତ, ଅଭିଶପ୍ତ ବୋଲି, ଯେତେ ଯେ ଭଲରେ ଚଳନ୍ତି ସମସ୍ତିଙ୍କ ବିଷୟରେ ମତ ଦିଏ—ସେମାନେ ମିଛ, ଶଠତା, ଦୁର୍ନୀତି ଓ ଶୋଷଣରେ ଲିପ୍ତ । ସେମାନେ ଯାହା କରନ୍ତି ସବୁ ସେଇଆ, ଉଦ୍ଦେଶ୍ୟ ଖାଲି ଆପଣାର ସ୍ୱାର୍ଥ ।

ଅନ୍ୟମାନଙ୍କ ସଙ୍ଗେ ବାରମ୍ବାର ନିଜ ମତ ଆଲୋଚନା କରି କରି ସେ ଖାଲି ନିଜକୁ ମତକୁ ଆହୁରି ଦମ୍ଭିଲା ବୋଲି ଆହୁରି ନିଶ୍ଚିତ ବୋଲି ଭାବୁଥାଏ । ସତେ ଅବା ଲାଗେ ତା ମତ ଅନ୍ୟମାନଙ୍କ ମତର ପ୍ରତିଧ୍ୱନି, ଅଥବା ସବୁ ନିଜ ଏକା ସ୍ୱର, ଯାହା ଜଣକର ତା ସମସ୍ତିଙ୍କର ଯେ ସବୁ ଦୂଷିତ, ସବୁ ନୀଚ, ସବୁ ମଳିନ । ଏକାଠି ବସି କଥା ପଡ଼ିଲେ ନାନା ବିଷୟରେ ସେମାନେ ନିନ୍ଦାବାଦ ଗାଆନ୍ତି, କେହି ପ୍ରଶଂସା ପାଏ ନାହିଁ । "ଭ୍ରଷ୍ଟାଚାର ପୂରିରହିଛି", ସେମାନେ କହନ୍ତି, "ସ୍ୱାଧୀନତା ପରେ ଯେତେ ଯେ ନେତା ହେଲେ, ଭଲ କରିବେ ବୋଲି ଦାୟିତ୍ୱ ନେଲେ, ସମସ୍ତେ ଲାଗିଗଲେ ନିଜ ସ୍ୱାର୍ଥ ସୁବିଧା ବଢ଼ାଇବା କାମରେ, କିଏ ଭ୍ରଷ୍ଟାଚାର କଲା, କିଏ ଭ୍ରଷ୍ଟାଚାରକୁ ପ୍ରଶ୍ରୟ ଦେଲା, ନିଜ କଥା ଛଡ଼ା ଆଉ କାହା ହିତ କରିବାକୁ କେହି ଧ୍ୟାନ ଦେଲେ ନାହିଁ । କ୍ରମେ ଭ୍ରଷ୍ଟାଚାର ହିଁ ହେଲା ସମାଜର ନିୟମ । ପଢ଼େଇ ଫୁସୁଲେଇ ଭୋଟ ମାଗିଲାବେଳେ ସମସ୍ତେ ସାଧୁ, କ୍ଷମତା ପାଇଗଲେ, ଯେ ଯେ ମନ ସେ

ହେଉନ୍ତୁ, ତେଣିକି ନିଜ ରୂପ, ହାରିଗଲେ ଶୃଙ୍ଖଳା ଦୋଷ ବାନ୍ଧିବ ଦୁର୍ଭାଗ୍ୟର, ବଡ଼ ଘାଟିରେ କହିବ । କାହାରିକି ଲୋକେ ମାନିଲେ ନାହିଁ । ଯେ ସମ୍ମାନର ଯୋଗ୍ୟ ନୁହେଁ ସେ କି ସମ୍ମାନ କାହାଠୁଁ ପାଇବ ? ଶୃଙ୍ଖଳା ଗଲା, ନ୍ୟାୟ ବିଚାର ଗଲା, ଭୟ ଗଲା, ସମସ୍ତେ ଅକଡ଼େଇଲେ— ବୃକଚରିଆ, ମୂଲିଆ, ଗୃହୀ, ବେପାରୀ, ସମସ୍ତେ ଖୋଜିଲେ ଯେ କୌଣସି-ମତେ ନିଜର ସ୍ୱାର୍ଥ, ଆତ୍ମର ବଳବଳକା, ଧନୁଦ୍ଧନ ବିଭ୍ରାଟ ଉପରେ ବିଭ୍ରାଟ ।"

ସବୁ ଆଲୋଚନା ଶୁଣେ । ନିଜର ଅବସ୍ଥା ବିଷୟରେ ଶୋକ କରି କରି—"ଯେ ଯେମିତି ହେଲେ ବଞ୍ଚିଲେ ବଞ୍ଚିବେ, ଚାହାର ପଡ଼ିଲା ଖାଲି ଆମ ଉପରେ ।"

ଏଥିପାଇଁ ସେମାନଙ୍କର କିଛି କରିବାକୁ ଅଛି ଏପରି ଧାରଣା ସେମାନଙ୍କ ମନକୁ ଛୁଏଁ ବି ନାହିଁ, ସେମାନେ ଚମର ଜୁଆ, ଆଲୋଚନା କରନ୍ତି ଗଧିଆଳ ଉପଦ୍ରବ କଥା ।

କେମିତି ଏ ଅବସ୍ଥା ବଦଳିବ ସେ ବିଷୟରେ ସେମାନଙ୍କର କିଛି ସ୍ପଷ୍ଟ ଧାରଣା ନଥିଲା, ବଦଳିବା ଉଚିତ, ତେଣୁ ନିଶ୍ଚୟ ବଦଳିବ । କେତେ ଅଂଶରେ ଏହିପରି ଥିଲା ସେମାନଙ୍କ ଧାରଣା । ଯେପରି ତା ସହିତ ସଶିଷ୍ଟ ଥିଲା ସେମାନଙ୍କର ବୟସ ଅନୁଯାୟୀ ଆଶା, ଯେ ସେମାନେ ଯୁବକ, ଅବସ୍ଥା ଯେତେ ଖରାପ ହୋଇଥାଉ, ସେମାନେ ବଞ୍ଚିବା ଉଚିତ, ଅତଏବ ନିଶ୍ଚୟ ବଞ୍ଚିବେ ।

ସେହି ଆଶା ଆଣି ଦେଉଥିଲା ପରିସ୍ଥିତିକୁ ଭୁଲିଲା ଭଳି ଏକପ୍ରକାର ତେଲି ତେଲି ନିଦ, ଯେତେବେଳେ ମଣିଷ ଅଟକିଯାଇଥିବ, ଦେଖିବ ନାହିଁ, ଭାବିବ ନାହିଁ, ବେଳ ଗଡ଼େଇବ ।

କିନ୍ତୁ ସବୁବେଳେ ନୁହେଁ । ପୁଣି ସବୁ ମନ ପଡ଼ିଯାଏ । ଲାଗେ ମଣିଷ ଯନ୍ତା ଭିତରେ ପଡ଼ିଛି । ଉନ୍ମାଦ ଲାଗୁଛି, ମନେହୁଏ ଏକରେ ପିଟି ହୁଏଁ, ସେକରେ ପିଟି ହୁଏଁ, କାଳେ କେଉଁଠି ଉଧୁରିବା ବାଟ ଥିବ । ବାଟ ମିଳେ ନାହିଁ, ଛଟପଟ ବଢ଼େ ।

ସେଦିନ ହଠାତରେ ସାଇକଲ ଚଢ଼ି ଗଲାବେଳେ ମଧୁ ମିଶ୍ରକୁ ବିଅଦ୍ଭୁତର ଛଟପଟ ଲାଗୁଥାଏ । ସେତିକି ବେଳେ ସେ ଦେଖିଲା, ଗୋଟିଏ ଦୋମହଲା କୋଠା ସାମ୍ନାରେ ବହୁତ ଲୋକଙ୍କ ଗହଳି, ପ୍ରବଳ ଗର୍ଜନ ଶୁଭୁଛି । ସେହି ଆଡ଼କୁ ଧାଇଁଗଲା । ଶେଠ ସାହୁଙ୍କ ଘର । ଶେଠ ସାହୁ ଏ ସହରର ଜଣାଶୁଣା ଖୁଣ୍ଟ, ବ୍ୟବସାୟୀ, ବହୁ ବର୍ଷ ହେଲା ବେଉସା ତାଙ୍କ ପିଲାଏ ବୁଝନ୍ତି, ସେ ନିଜେ ଦେଶ କାମ ବୁଝନ୍ତି । ସଭାରେ କହନ୍ତି, ବାରଆଡ଼େ ବୁଲନ୍ତି, ବହୁତ ଦାୟିତ୍ୱ ।

ହଠାତ୍ ତାଙ୍କ ଘର ଆଗରେ ଏସବୁ କି ଗୋଳମାଳ ? କାନରେ ବାଜୁଛି ଭୁହାକୁଳୁନ୍ଦା ରକ୍ତ ଉଲୁଧା ଚିତ୍କାର—“ଇନ୍‌କଲାବ୍ ଜିନ୍ଦାବାଦ୍ ।”

ତା'ପରେ ପୁଣି “ବାହାର ଆସ । ବାହାର ଆସ ।”

“ଗୃଉଳ ଦିଅ । ଗୃଉଳ ।”

“ଗୃଉଳ କଲେ ଠିକାଏ କର ।”

“ଗୃକର ଦିଅ । ଗୃକର ଦିଅ ।”

ଦିଶୁଛି, ସେପଟୁ ପୁଲିସ୍ ଠେଙ୍ଗାରେ ପିଟି ପିଟି ଘଉଡ଼େଇ ଆଣୁଛନ୍ତି । ଏପଟୁ ମାଡ଼ ଯାଉଛନ୍ତି ମୁଁଅ ଉପରୁ ମୁଁଅ । ମଣିଷଙ୍କ ଘୋଡ଼ା ଉପରେ ମାଇକ୍ ଗର୍ଜୁଛି “ପଳାଅ, ନହେଲେ ଆମେ ଗୁଳି ଚଳେଇବୁ ।”

ଠେଙ୍ଗାବାଡ଼ି ଧରି ହେରେରେକାର କରି ଏପଟୁ ଲୋକେ ଧାଇଁଲେଣି, ଏପଟୁ ସେପଟକୁ ଓ ସେ ଘର ଆଡ଼କୁ ଢେଲା ବୃଷ୍ଟି ହେଉଛି, ହେଇ ଦିଶୁଛି, କୋଠାପଟେ ଢେଲା ମାଡ଼ରେ ଟଳି ପଡ଼ିଲେଣି ଜଣେ ପୁଲିସ୍, ଜଣେ ଅନ୍ୟ କର୍ମଚାରୀ ।

ମଧୁ ମିଶ୍ର ମୁହୂର୍ତ୍ତକେ ବଦଳି ଯାଇଛି । ସତେ ଯେମିତି ତା' ଜୀବନର ସବୁ ନିଷ୍ଫଳତା ସହ ନୈରାଶ୍ୟର ଏକମାତ୍ର କାରଣ ତା' ଆଗରେ ପୁଞ୍ଜିଭୂତ ହୋଇ ରୂପ ନେଇଛି ସେହି କୋଠା ତଳେ । ଅନ୍ତର ଭିତରୁ ଡାକ ଉଠୁଛି, ସେଇଠି ଠୁଳ ହୋଇଛି ଯେତେ ଯାହା ତା'ର ଶତ୍ରୁ, ତା'ର ଦୁଃଖର ହେତୁ, କେମିତି ତା' ଚେହେବ ସେ ଜାଣେ ନାହିଁ,

ଏତିକି ମୁଁ ଜାଣେ ଯେ ମୁଁ ଏଠି ଅଛି, ଆଉ ଜାଣେ ମୁଁ ପରାଜିତ ହେବି ଏଇ ମୁହୂର୍ତ୍ତରେ ଏତେ ଲୋକଙ୍କର ଏ ମିଳିତ ଆକ୍ରମଣରେ । ତା' ଅନ୍ତର ଭିତରୁ ଉଲ୍ଲାସ ଫେଣୁଛି, ଆବେଗ ବଢ଼ି ବଢ଼ି ଉଠୁଛି, "ଏଇକ୍ଷଣି— ଏଇ ମୁହୂର୍ତ୍ତରେ—ଏଇ ଚେତନାରେ ମାତି ଉଠି ସେ ପଥର ଉପରୁ ପଥର ଫୋପାଡ଼ୁଛି । ସାଇକେଲ ଖଣ୍ଡ କେଉଁଠି ହେଇଛି ତା'ର ଖିଆଲ୍ ନାହିଁ । ସାଁ ସାଁ ହୋଇ ଉନ୍ମାଦ ହୋଇ ଢେଲା ଫୋପାଡ଼ୁଛି । ଥରେ ଥରେକେ ଭାବିଯାଉଛି ନୂଆ ଯୁଗ ଆସିବ, ସତ ଉପୁଜିବ, ହିଂସା ନଥିବ, ଅନ୍ୟାୟ ଦୁର୍ନୀତି ଶୋଷଣ ନଥିବ, ଶାନ୍ତି ଶୃଙ୍ଖଳା ରହିବ । ସମସ୍ତେ ଖଟିବାକୁ ସୁଯୋଗ ପାଇବେ, କେହି ବେକାର ରହିବ ନାହିଁ । ସମସ୍ତେ ଖାଇବାକୁ ପାଇବେ, ରହିବାକୁ ଘର ପାଇବେ, ଜିନିଷ ଦର ଶସ୍ତା ହେବ, ବଜାରରେ ସବୁ ଜିନିଷ ଯାହାକୁ ଯେତେ, ଅପମିଶ୍ରିତ ନୁହେଁ, ଠକେଇ ନୁହେଁ, ମହଙ୍ଗା ନୁହେଁ—"

ଶ୍ୱେତ ସାହୁଙ୍କ ଘର ଉପରେ ହଠାତ୍ ହେଉଥିବା ଆକ୍ରମଣକୁ ଯେଉଁମାନେ ଅଟକାଉ ଥିଲେ ସେମାନଙ୍କ ଉପରକୁ ଚଢ଼ାଉ କଲେ ଓ ଢେଲା ଫୋପାଡ଼ିଲେ କେମିତି ହଠାତ୍ ସବୁ ସମସ୍ୟା ସମାଧାନ ହେବ ସେ ଭାବୁ ନଥିଲା, ହସହସ ଶାନ୍ତ ମୁହଁ ଶ୍ୱେତ ସାହୁଙ୍କ ଚେହେରା ତା' ଆଖି ଆଗରେ ନଥିଲା, ନତୁବା ତାଙ୍କ ଭୀତସନ୍ତ୍ରସ୍ତ ପରିବାରଙ୍କ ମୁହଁର କରୁଣ ଉଦ୍‌ବିଗ୍ନ ଛବି, ନିଜ ନୈରାଶ୍ୟ ଭିତରୁ ସେଠି ସେ ରୂପ ଗଢ଼ି ଥାପିଥିଲା ଓ ତାକୁ ଭାଙ୍ଗିବାକୁ ଚେଷ୍ଟା କରୁଥିଲା ନିଜ ଦେହ ବଳରେ ।

ସେତିକିବେଳେ ଗୁଳି ଫୁଟିଲା, ଗୋଟାଏ ଗୁଳି ତା' ପାଟିରେ ପଶି ମୁଣ୍ଡକୁ ଚୂନା କରିଦେଲା । ସେ ଟଳି ପଡ଼ିଲା ।

'ପ୍ରଗତିବାଦୀ ସାହିତ୍ୟ' ବିଶେଷାଙ୍କ ୧୯୭୬



# ଗୋପାଳ ଡାକୁଛି

ଜଗବନ୍ଧୁ ଯେତେବେଳେ ସୁଲକ୍ଷଣାଙ୍କୁ ଡାକି କରି କହିଲେ, 'ମୁଁ କାଲି କଟକ ଯିବି' ସେତେବେଳେ ସୁଲକ୍ଷଣା ସ୍ୱାମୀଙ୍କ ମୁହଁକୁ ଅନାଇଁ ଚୁପ୍ ହୋଇ ଠିଆହେଲେ । ସକାଳ । ହାତରେ ଓଦା ଲୁଗା, ଶୁଖାଇବାକୁ ଚଢ଼ିବ । ଜଗବନ୍ଧୁ କହିଲେ, 'ମୋର କିଛି ଦରକାର ନାହିଁ । ସକାଳୁ ସକାଳୁ ପଖାଳ ଶାଗ ତ ନିଶ୍ଚୟ ମିଳିବ । ଲୁଗାପଟା ପାଇଁ କିଛି ଧନ୍ଦହେବା ଦରକାର ନାହିଁ । ଯାହା ଅଛି ଚଳିବ । ସବୁଠି ତ ଘର, ଚିନ୍ତା କ'ଣ ?' ସେ ହସିଦେଲେ ।

ତାଙ୍କ କଥାର ସ୍ୱର, ସେ ହସର ବାଗ ସୁଲକ୍ଷଣାଙ୍କୁ କେମିତି କେମିତି ଲାଗିଲା । ମଝିରେ ମଝିରେ ଏମିତି ସେ ଅନେକ ଥର କହନ୍ତି, ଯାଆନ୍ତି ନାହିଁ । କିନ୍ତୁ ଆଜି ସତେ ଯେମିତି ସ୍ପଷ୍ଟ ପ୍ରତିଜ୍ଞା ।

'ଏତେଦିନ ଗଲା, ଗଲ ନାହିଁ, ଆଉ ଅଇଲ୍ଲ ଯେତେବେଳେ ଭୋଦୁଅ ଧାର ଗଳୁଛି, ବର୍ଷା, ପବନ, ସେତିକି ବେଳକୁ ବୁଲିଯିବାକୁ ମନ ହେଲା ?'

ଜଗବନ୍ଧୁ ସ୍ତ୍ରୀଙ୍କୁ କଠାଯ ପରି ଅନାଇଁ ରହିଲେ, କହିଲେ, 'ତୁମେ ମନା କରିବ ମୁଁ ଜାଣିଛି । ତୁମେ ଖାଲି କହିବ ଏଇଠି ମୋ ମୁହଁକୁ ଅନାଇଁ ବସିଥା, ଆଉ କୁଆଡ଼େ ଯା' ନାହିଁ, କାହାର ସଙ୍ଗେ କୌଣସି ସମ୍ବନ୍ଧ ନଥାଉ । ମୋର ପାଞ୍ଚ ପାଞ୍ଚଟା ଭାଇ, ତିନି ତିନିଟା ଭଉଣୀ, ଝିଆରୀ, ପୁତୁରା, ବନ୍ଧୁବାନ୍ଧବ, ମୁଁ ଆଉ କୁଆଡ଼େ ଯିବି ନାହିଁ, ଏଇଠି ଥିବି !'

ସୁଲକ୍ଷଣା କହିଲେ, 'ଡାଲକାରୁ ପୁଅ ଝିଅଙ୍କୁ ଛାଡ଼ିଯାଉଛ ଯେ । ସେମାନେ କ ଅପରାଧ କଲେ ? କେଉଁକାଳୁ କାହାରୁ ଦେଖୁଛ ? ବାଲେଶ୍ୱରରୁ ସୁଦାସ ଲେଖି ଲେଖି ଥକଲା, ବାପାଙ୍କୁ କହିବ ଟିକଏ ଆସିବେ, ମାଲଟା ଖଞ୍ଚଣାରୁ ଉଠୁ ନାହିଁ, ଯେତେ ଔଷଧ ମନ୍ତ୍ରୌଷଧି କଲେ ବାତ ଛାଡ଼ିଲା ନାହିଁ । ଚଙ୍ଗୁଡ଼ି ବାକ୍ସର ଗୁଡ଼ାଏ, କେମିତି ଚଳୁଥିବ ମୋ ଝିଅ କେଜାଣି ।'

ସୁଲକ୍ଷଣାଙ୍କର ଅଭିମାନରେ ଆଖିରୁ ଧାର ବୋହିଲା, କହିଲେ, 'ମୁଁ ଯେତେଥର ଯିବାକୁ ବସିଲି କୁଆଡ଼ୁ କ'ଣ ଅଡ଼ୁଆ ବାହାର କଲ । ଏମିତି ବଉରକେଲାରେ ନାଣ୍ଟୁ, କେଉଁଦିନୁ ଆସିନାହିଁ ମୋ ପୁଅ, ବ ମାସ ହେବ ନାହିଁ ଶଠିପରେ କଷ୍ଟ ନ ମିଳିବାର ? ବୋହୂଟା ଅସଜ ମଣିଷ । ସେଠି ଝୁକର ବାକର ବ ମିଳନ୍ତି ନାହିଁ । କୋଉଠି ଯାଇ ହେଲ ? କୋରପୁଟ ବାଲିମେଳାକୁ ଶଶୀ ବଦଳି ହେବାର ଆସି ଦେଢ଼ବର୍ଷ ହୋଇଗଲା । ସେଠି ମୋ ପିଲା ବାଘ ଭାଲୁଙ୍କ ଘରେ କେମିତି ଚଳୁଛନ୍ତି ତା'ତ ଆଖିରେ ଦେଖିଲି ନାହିଁ । ଗୋବର୍ଦ୍ଧନଟି ତ ପ୍ରାଣ ଯାଉଚ କ ଆସୁଛି, ଶଶୀ ବଣ ଜଙ୍ଗଲଯାକ କାମରେ ବୁଲୁଥିବ, ବୋହୂ ତ ଯାହା ଛାଡ଼, ଶୋଇ ପଡ଼ିଥିଲେ ମୂଷା ଚୂଟି କାଟିନେଲେ ଜାଣିପାରିବ ନାହିଁ, ମୁଁ ସେଠି ଥିଲେ ତା ପିଲାଙ୍କ ଖବର ବୁଝନ୍ତି ନାହିଁ ? କୋଉଠି ଛାଡ଼ିଦେଲ ? ଯୁଆଡ଼େ ଯିବାକୁ ଗୋଡ଼ ଟେକିଲେ ତୁମେ ବାଧା ଦେବ ।'

ଜଗବନ୍ଧୁ ଅଣ୍ଟାରେ ହାତଦେଇ ଅଣ୍ଟାକୁ ଉପରକୁ ଓଟାରି ହେଲେ, କହିଲେ 'କାହିଁକି ବାଧାଦେଏଁ ତୁମେ କ'ଣ ଜାଣିନାହିଁ ମତେ ଉଲୁଗୁଣା ଦେଉଛ ? ଏକେତ ତୁମ ପେଟ ଅସୁବ । ଟିକଏ ବେଟାଇମ କ ଅନିୟମ ହେଲେ ପୁଣି ପଡ଼ିଯିବ, ସେଉଠୁ ମୁଣ୍ଡ ବୁଲେଇବ ଛାତି ଥରିବ ହାତ ଗୋଡ଼ ଦରଜ ହେବ—'

'ହଁ, ଥାଉ ଥାଉ ସେ ରୋଗ କଥା', ସୁଲକ୍ଷଣା ଆଖି ପୋଛିଲେ ଓ କହିଲେ, 'ଯିବାର ଥିଲେ ତ କେଉଁ କାଳରୁ ମୁଁ ଯମପୁରକୁ ଯାଆନ୍ତିଣି ଆଉ ସେ ଷାଠିଏ ବର୍ଷଯାକେ ମୁଁ ଏମିତି ବସିଥାନ୍ତି ?'

'ଆରେ ତୁମକୁ ଷାଠିଏ ହେଲେ ମନେ ଅଛଠି ଯେ, ପେନ୍‌ସନ୍ ପାଇକରି ଦଶବର୍ଷ ପୂରିବା ଉପରେ । ସେ ବୟସ କଥା କିଏ ପଚାରେ ? ଦେଖୁଚ ପରା ଅଶୀ ନବେ ବର୍ଷ ପୂରିଯାଉଛି ବୋଲି କେତେ ନାଁଡାକ ଲୋକଙ୍କର ଜନ୍ମଦିନ ବର୍ଷିକିଆ ସବୁ ହେଉଛି, ଖବରକାଗଜରେ ବାହାରୁଛି, ତଥାପି ସେମାନେ ବଜ୍ର ପରି ବସି ରହୁଛନ୍ତି, କେତେ କେତେ କାମ କରୁଛନ୍ତି । ଆଉ ଷାଠିଏଟା କେତେ ବର୍ଷ ? ବିଲାତ ଦେଶ ହୋଇ-ଥିଲେ ଏଇ ଷାଠିଏ ବର୍ଷରେ ପରା ତୁମକୁ ବଉଦର ଲଗିଥା'ନ୍ତା ।'

'ଗୋଟିଏ ଠିକଣା କରିଦିଅ, ମୋ ତୁଣ୍ଡ ତ କ'ଣ !'

'କରିଦେବା, ମୁଁ ଏଥର କଟକରୁ ଆସେଁ ।'

'କ'ଣ ଏମିତି ବାଇ ଲାଗିଲା ପରି ଖାଲି କଟକ କଟକ ହେଉଛ ? ଭଲା କହନ୍ତ ରାଉରକେଲା କି ବାଲେଶ୍ୱର କି ବାଲିମେଳା ବୁଝନ୍ତି ସେ ପିଲାଙ୍କୁ ଦେଖିବାକୁ ମନ ହାଇଁପାଇଁ ହେଲାଣି ।'

ଜଗବନ୍ଧୁ ପ୍ରତିବାଦ କରି କହିଲେ, 'ତୁମେ ତ ଜାଣିଛ ଯେ ହାଇଁପାଇଁ ଫାଇଁପାଇଁ ମୋର ନାହିଁ । ଯାହା କର୍ମ ଯେବେ ଯେ ଚଳିବ, ମୋ କର୍ତ୍ତବ୍ୟ ମୁଁ କରି ସାରିଛି । ବତିଶି ବର୍ଷ ଚାକିରି କଲି, ବୁଝି ପାରୁଚ ? ବତିଶି ବର୍ଷ—'

ହଃ ! ସେ କଥା କହୁଚ ! ବତିଶି ବର୍ଷ ଚାକିରି କରି ସବୁ ତ ଖାଲି କରି ପକାଇଲ ! ଜମି, କୋଠା, ଗାଡ଼ି, ଘୋଡ଼ା ସବୁ । ଖାଲି ମୋର ଜୀବନଟା ହଇରାଣ, ଯାହା କହନ୍ତି ବାଘ ଘୋଷରା । ଦରଭଙ୍ଗାରୁ ହଜାରିବାଗ, ହଜାରିବାଗରୁ ଜଇପୁର, ଜଇପୁରରୁ ସୁନ୍ଦରଗଡ଼, ସୁନ୍ଦର-ଗଡ଼ରୁ ବଉଦ, ବଉଦରୁ ସାଇରଙ୍ଗପୁର, କୁଆଡ଼େ ନାଇଁ କୁଆଡ଼େ । ବାପା ମଲେ, ବୋଉ ମଲା, ବୋଉ ମୋର କେତେ ବକୁଟି ନେହୁରି ହୋଇ ବାରମ୍ବାର ଖବର ପଠାଇଲା ମୋ ଝିଅ-ଜୋଇଁକି ଥରେ ଦେଖନ୍ତି, ତା ଆଉ ହେଲାନାଇଁ, ବିଦେଶରେ ବିଦେଶରେ ଭଣଜାଁ ଭଣଜୀ ମଲେ, ଚାକିରି ଖାଲି ହଇରାଣ କରି ଦେଲା ।'

'ତମର ଆଜ କ'ଣ ହେଇଚ କହୁଲ ? କଥା କଥାକେ କାନ୍ଦ ? ଆରେ ଜୀବନଟା କ'ଣ କାନ୍ଦେଇ କଟିଲ ? ଏ ଗଛରେ ସେ ଗଛରେ ବସାବାନ୍ଧି ତମ୍ଭ ଉଷୁମରେ ପୁଟେଇ ଚଟେଇ କର ଉଡ଼େଇ ଦେଲଲଇଁ, ଛଅଟା ମଣିଷ ହେଲେ, ଯେ ଗଲେ ସେ ଗଲେ ତମ୍ଭ ବେକୁ କ କଣ୍ଠା ଆଖି ବେକୁ, ପରମାର୍ଥ ଧରଲ ପୁଣି ଗଲ ରହୁଲକୁ ଛଳକର ମନ ବ୍ୟସ୍ତ କରୁଛ ?'

ସୁଲକ୍ଷଣା କାନ୍ଦଲେ । କହୁଲେ 'ଅନ୍ତପାଡ଼ ଯେ ଜନ୍ମ ଦେଇଥାଏ ସେ ଯିନା ଜାଣିବ, ତୁମେ କାହୁଁ ଜାଣିମ ମା' ମନ କ'ଣ ହୁଏ ? ଗୋଟିଏ ଯଦ ଜନ୍ମ କରଥାନ୍ତ—'

'ହଉ ଥାଉ । ଶୁଣ । କାଲ ମୁଁ ଯାଉଛୁ ।'

'ବର୍ଷାଟା ସରଯାଉ । ଦେହ ବାଧିକାରେ ପଡ଼ଗଲେ କଏ ପିଠିରେ ପଡ଼ିବ ?'

'ବର୍ଷା ପଛେଇ ଯାଇଛୁ । ପଛକୁ ଆହୁର ବଢ଼ିବ ।'

'ତେବେ ବର୍ଷା ଋତୁଟା କଟିଯାଉ । ବାଟଘାଟ ସଫା ହେଉ । ଦହେଁ ଯିବା । ପୁଅ ଝିଅଙ୍କୁ—'

ଜଗବନ୍ଧୁ କହୁଲେ, 'ତୁମ ତୁଣ୍ଡରୁ ସେହୁ କଥା ଶୁଣିଲେ ତ ମୋର ହାଡ଼ ଜଳୁଛୁ ।'

ସୁଲକ୍ଷଣା ତାଙ୍କ ମୁହଁକୁ ତାଟକା ହୋଇ ଗୃହିଁଲେ । କଳିକଜିଆ ଅଳ୍ପଦନ ହେଲ ସରଛୁ, କାଳେ ପୁଣି ଆରମ୍ଭ ହେବ । ଜଗବନ୍ଧୁ କହୁଲେ, 'ତମର ଖାଲି ଆପଣା ସାର୍ଥକା କଥା । ଖାଲି ଆପଣା ପୁଅ ଝିଅ । ଆପଣା ଘର ଗେରସ୍ତ । ଆପଣା ସୁଖ ସୁବଧା । ଜୀବନରେ ତା ବାହାରକୁ କେବେ ଗୃହିଁଛ ? ମୋ ଭାଇ ଭଉଣୀମାନେ ମନେ ପଡ଼ନ୍ତି ନାହିଁ ? ଅଇଛୁ ଯିନା ସେଥି ସୁଖେ-ଦୁଃଖେ ଯେ ଯୁଆଡ଼େ ଦନଥିଲ, ସେତେବେଳେ ଏଇ ହାତରେ ପର ତୁମେ ତାଙ୍କୁ ମଣିଷ କରଥିଲ ?'

ସୁଲକ୍ଷଣା ପୁଣି କାନ୍ଦଲେ । କହୁଲେ, 'ଗଲାକଥା ଗଲାଣି, ମୁଁ କାହାର କ'ଣ ଉପକାର କରଛୁ ? ଯଦ କେତେବେଳେ କରଥିଲ ସେ

ସେ୍‌ହର କଏ କ ମର୍ଯ୍ୟାଦା ରଖିଲେ ଯେ ମୁଁ କାହାରକୁ ଦେଖିଲି ନାହିଁ । ଦୋଷୀ ହେଲି ମୁଁ ?'

'କ'ଣ ତୁମକୁ ଅମର୍ଯ୍ୟାଦା କଲେ ?'

ଲୁହ ପୋଛୁ ପୋଛୁ ସୁଲକ୍ଷଣା କହିଲେ, 'ନାହିଁ, ମତେ କାହିଁକି କଏ ଅମର୍ଯ୍ୟାଦା କରନ୍ତା ? ଯେଝା ଯେଝା ପଛି ଲଗିଲେ ସେ ଉଡ଼ିଗଲେ । ଆଉ ମୁଁ କାହାର କ କାମରେ ଆସିବି ? ଅଇଗୁ ମୋଠି ତାଙ୍କର କ କାମ ? ମୁଁ ତ କାହାକୁ ନଦେ ନାହିଁ ।'

'ଆଚ୍ଛା ଆଣ୍ଟିଆ ଧରିଛ । ସମସ୍ତେ ନିଜ ନିଜ କାମ ଦୁଃଖ ଧନ୍ଦାରେ ବୁଲୁଛନ୍ତି ନା କଏ ବସିଛି ତମ ପାଖକୁ ନ ଆସିଲେ ? କାହାର କ ଅସୁବିଧା ସେ କଥା କଏ ବୁଝୁଛି ?'

'ହେଲା, ତୁମେ ତ ସର୍ବଜ୍ଞ ପୁରୁଷ ସବୁ ଜାଣୁଛ, ଅଇଗୁ ବାହାରିଛି କାହିଁକି ?'

'ଯିବାକୁ ଭାରି ମନ ହେଉଛି ହୋ । ମୁଁ ସେଇ ଲୋକ, ଏତେ ଆଉ ବୁଲୁଥିଲି । ଭଲି ଏ ମଫସଲରେ ମୁଁ ବସି ପଡ଼ିଲି ଯେ ବସି ପଡ଼ିଲି । ସତେ ଯେମିତି ମଣିଷ ନୁହେଁ ଯେ ଗୋଟାଏ ଆମ୍ବଗଛ ହେଇଗଲି ।'

'ଯେଇଠୁ ? ବୁଲି ଆସିଲେ ଆଉ କ ଗଛ ହେବ ? ନଡ଼ିଆ ଗଛ ?'

'ଓଃ ! ତେମେ ତ ବୁଝିବ ନାହିଁ ।'

'କାହିଁକି ବୁଝିବ ନାହିଁ ? ସବୁ ବୁଝିଛି । ତମର ବୁଲିବାକୁ ମନ ହେଉଛି । ବୁଲ । ସୁଖକର । ଖାଲି ମୋତେ ଟିକଏ ମୋ ଝିଅ ପାଖେ ଛାଡ଼ିଦେଇ ଆସ, ଯେଉଠୁ ବା ପୁଅଙ୍କ ପାଖକୁ ଯିବି । ମୋ ମନ ଏଠି ମୋଟେ ଭଲ ଲାଗୁନାହିଁ । ତମର ତମେ ବୁଲୁଥା ।'

'ହେଉ । ପଛେ ମୋ ଦୋଷ ଦେବ ନାହିଁ । ସେ ଘର, ବାରି, ଗାଈ ଗୋରୁ କାହା ମାଫିତ୍ ଦେବ ତୁମେ ଭାବ । ଘରେ ଯାହାକୁ ରଖିଛ

ତୁମ କୃଷ୍ଣଦେବ ଗୋପାଳ ଯେ ଟାଣି ଟିକିଏ ନ ପାଇ ହଜାଣିଆ ହୋଇଗଲେ ମୋର ଦୋଷ ନାହିଁ । ବୁଝିଲ ? ଏ ପର୍ଯ୍ୟନ୍ତ ଯାହା ଯେମିତି ଚାଲିଛି ସବୁ ତାହାରି ଦୟାରୁ, ଡାକିଲେ ସେ ଓ' କରେ । ସେ ନ ଅନେଇଲେ କ୍ଷୀରକଣ୍ଠ ପଦୁଆ ନନା ଆମି ତା' କଥା ବୁଝିବ ? ମାଯନ୍ତୁ ଟଙ୍କାଏ ଆଶାରେ ? ସେ ଆଶା ବୃଥା ।'

'ସବୁ ତ ବୁଝୁଛ ପୁଣି ତୁମ ଗୋଡ଼ ଖାଲିଖାଲି ହେଉଛି କାହିଁକି ?'

'ତୁମକୁ ବୁଝାଇବା ସମ୍ଭବ ନୁହେଁ । ବସିଯାଉଛି ମିନା, ମୋର ପରା ବତିଶି ବର୍ଷର ଭୁଲ ।"

'ସେ ଭୁଲରେ କ'ଣ ପେଟ ପୂରିଲା ? ନା ସେ ଭୁଲରେ କ'ଣ ହେବ ? ନା କେହି ତୁମକୁ ଅପେକ୍ଷା କରି ବସିଛି, ନଗଲେ କାନ୍ଦିବ ?'

'ତୁମେ ଜୀବନଯାକ ଯେତେ ଯେତେ ପିଠା କରି ଲୋକଙ୍କୁ ଖୋଇଛ, ସୁଆଦିଆ ତରକାରି ସବୁ ରାନ୍ଧିଛ ସେଥିରେ କ'ଣ ହେଲା ନ ନହେଲା ତା'ର ହିସାବ ରଖିଛ ? ମୋର ବି ସେମିତି । ଥିଲି ପଶୁଡାକ୍ତର । ଜୀବନସାରା ବୁଲି ବୁଲି ପଶୁମାନଙ୍କ ସେବା କରିଛି । ଯେତେ ପଶୁ କି କୁକୁଡ଼ା ଟିକାଗ୍ରା ପାଇଥିଲେ, ଯେତେ ମଡ଼କ ରୋଗ ଭଲ ହେଲା, ଯେତେ ଭଲ ଜାତିଆ ଗୋରୁ ଗାଈ କି ଛେଳି ମେଣ୍ଢା କି କୁକୁଡ଼ା ନୂଆ କରି ଯେଉଁ ଇଲାକାରେ ପୂରା ହେଲେ ବଢ଼ା ହେଲେ ସେ ସବୁ ସେ କାଳର ଦିନ ଦିନକର ଇତିହାସ, ଆଜି କାହାରି ମନେ ନଥିବ । ଯାହା କଲି କଲେ, ସେ ଗଲା, ଭୁଲି ହୋଇଗଲା । ଆଜି ପଛ କଥା ଭାବି ଲାଭ କ'ଣ ? କୋଳି ଖାଇ କିଏ ମଞ୍ଜି ପୋତୁଛି ?'

କଥାବାର୍ତ୍ତା ସେତିକିରେ ବନ୍ଦ ହେଲା । ଜଗବନ୍ଧୁ ଗଲେ ନିତିଦିନର କାମ କରି । ଗାଁ ମଝିରୁ ଅଲଗା ହୋଇ ତାଙ୍କର ଘର । ପେନ୍‌ସନ୍ ନେବାର ଛଅବର୍ଷ ଆଗରୁ ସେ ନିଜ ରୁଚିରେ ଏ ସ୍ଥାନଟି ବାଛିଥିଲେ, ମାଟିନେସା ଇଟା କାନ୍ଥ ଓ ଟାଇଲ ଛାତ କରି ଗୁହ ବଖରା ଘର ତୋଳିଥିଲେ, କୂଅ ଖୋଳାଇ ଥିଲେ, ଟୁବ ଗାଡ଼ିଆକୁ ଫରଚୁ କରି

ଖୋଳାଇ ସାନ ପୋଖରୀଟିଏ କରିଥିଲେ, ଟୋଟା ଲଗାଇଥିଲେ । ଜମି ଛ'ମାଣ କିଣିଥିଲେ । ସେ ଥିଲା ଗୋଟିଏ ବିସ୍ତୀର୍ଣ ଜୀବନର ଯୋଜନା । ପୈତୃକ ଘର ଗାଁର ଅପର ମୁଣ୍ଡରେ, ଘର ଭାଇଙ୍କ ନେଚନାଏ ଚେନାଏ । ବଂଶର ଲୋକେ ଯେଉଁ ପାଖ ଖୋପ କରି ସାନ ସାନ ବଖୁରୀରେ ଥାଆନ୍ତି । କେତେବେଳେ ସୀମା ସରହଦ ନେଇ ସେମାନଙ୍କ ଭିତରେ କଳି ଲାଗେ, ଖୁସୁରୁଖୁସୁରି ଲାଗେ । ଜଗବନ୍ଧୁ ଓ ତାଙ୍କ ଆଉ ପାଞ୍ଚ ଭାଇଙ୍କର ଭାଗରେ ସାନ ଅଂଶରୁ ପ୍ରାୟ ବାରଣା ନେଇ ବଂଶ ଭାଇମାନଙ୍କ ଦଖଲରେ, ଆଉ ଗୃହସ୍ଥ ଘର ଗୋଟିଏ କରିବୁ ଅରମା ହୋଇ ପଡ଼ିଥାଏ, ସାହି ସାକର ଅଳିଆ ଆବର୍ଜନା ପଡ଼ି ପଡ଼ି ସେ ଢିପ ହେଉଥାଏ । ସେଠି ଖାଲି ଗୋଟିଏ ଝଙ୍କା ସଜନା ଗଛ, ବହୁତ ଛୁଇଁ ଓହଳେ ବଢ଼େ, ପୁଣି କୁଆଡ଼େ କୁଆଡ଼େ ଅଦୃଶ୍ୟ ହୋଇଯାଏ ।

ପୁରୁଣା ଚଳଣିରେ ପରିବର୍ତ୍ତନ ଆରମ୍ଭ ହୋଇଥିଲା ଯେତେ-ବେଳେ ଜଗବନ୍ଧୁଙ୍କ ବାପା ନରୋତ୍ତମ କିଛି ଇଂରେଜୀ ପାଠ ପଢ଼ି ଟ୍ରେନିଂ ନେଇ ମୟୂରଭଞ୍ଜରେ ମାଇନର ସ୍କୁଲରେ ଶିକ୍ଷକ ହେଲେ । ପଛେ ପିଲା-ପିଲି ଗଲେ । ସାବକ ଘର ଖାଲି ପଡ଼ି ରହିଲା, ଭାଙ୍ଗିଲା । ଗୃହକର୍ମ ଶେଷ ମୁଣ୍ଡ ଆଡ଼କୁ ପୁଣି ଥରେ ଘର ତୋଳି ରହିବାର ଉଦ୍ୟମ ହେଲା, ସେତେବେଳେ ଯୋଡ଼ିଏ ଝିଅଙ୍କୁ ଆଣି ଗାଁରେ ରହି ପାଖ ଖୋଜ ବାଛି ଦେବା ଦରକାର ପଡ଼ିଲା । କିନ୍ତୁ ସେ ଘର ବା ଆଗ ଘରଠୁ ବହୁ ପରିମାଣରେ ଅଳ୍ପ ଜାଗା ଦଖଲ କଲା, ପଡ଼ିଶା ଭାଇଭଉଣୀମାନେ ବାକି ଅଂଶ ମାଡ଼ି ବସିଥିଲେ । ଶିକ୍ଷକ ନରୋତ୍ତମ ଠେଙ୍ଗାବାଡ଼ି ନଚେଇବା କାର୍ଯ୍ୟରେ ଅଭ୍ୟସ୍ତ ନ ଥିଲେ ।

ତା'ପରେ ପୁଣି ସେ ପିଲାପିଲି ନେଇ ଚାଲିଗଲେ । ଜଗବନ୍ଧୁ ଗୃହକର୍ମ କରୁଥିଲେ, ଆଉ ଭଗବାନଙ୍କ ବୃତ୍ତିରେ ଲାଗି ଲାଗି ହୋଇ ଆସୁଥିଲେ, ଦୁ'ଜଣ ପଢ଼ୁଥିଲେ, ଗୋଟିଏ ଝିଅ ଅବିବାହିତା । ହଠାତ ଦିନେ ସ୍କୁଲରେ ପଢ଼େଇ ଘରକୁ ଆସି ନରୋତ୍ତମ ବାଁ ପାଖ ଛାତିକୁ ଚାପିଧରି ବିଛଣାରେ ଗଡ଼ି ପଡ଼ିଲେ । ସେତେବେଳକୁ ସେ ହୋଇଥିଲେ ହେଡ୍ ମାଷ୍ଟର ।

ନରୋତ୍ତମଙ୍କ ମୃତ୍ୟୁପରେ ଜଗବନ୍ଧୁ ସେ ପରିବାରର ଭାର ବୁଲାଇଲେ । ତାପରେ ବିବାହ, ମା'ର ମୃତ୍ୟୁ କିମ୍ବା, ଭାଇମାନଙ୍କ ପାଠପଢ଼ା,

ସାନ ଭଉଣୀର ସବାହ ସବୁ ହେଲା ସ୍ୱଦେଶରେ ସ୍ୱଦେଶରେ । ନ୍ଦମ ଭାଇମାନେ ଆପଣା ଆପଣା ବୁଝିକରି ଗାଁରେ ଆପଣା ରୋଜଗାରରେ ଚଳିଲେ, ଯାହାର ଯେଉଁଠି ଇଚ୍ଛା ହେଲା ସେଠି ସେ ଘର କଲେ । କାହାର ଆଉ କାହା ଉପରେ ନିର୍ଭର ନାହିଁ, ତେଣୁ ସମ୍ବନ୍ଧ ବି ଶିଥିଳ ହେଲା । ଖାଲି ରହିଗଲା ଏକା ମା ପେଟର ବୋଲି ମମତା ଟିକିଏ, ଆଉ ନୂଆ ଯେଉଁମାନେ ଜନ୍ମ ହେଲେ ବଡ଼ ତାଙ୍କ ପକ୍ଷରେ ତ ଖାଲି ଗୋଟିଏ ଐତିହାସିକ ସ୍ମୃତି ।

ଜଗବନ୍ଧୁ ତଳେ ହରିବନ୍ଧୁ ହାଇସ୍କୁଲରେ ଶିକ୍ଷକ, ଦୀନବନ୍ଧୁ ଡାକ୍ତର, ଶ୍ୟାମବନ୍ଧୁ ଇଞ୍ଜିନିୟର, ପ୍ରାଣବନ୍ଧୁ ପୁଲିସ ଇନସ୍ପେକ୍ଟର, ବ୍ରଜବନ୍ଧୁ କୋ-ଅପରେଟିଭ ଆସିଷ୍ଟାଣ୍ଟ ଡିରେକ୍ଟର । ହରିବନ୍ଧୁ ଦୀନବନ୍ଧୁ ଅନୁଗୁଳରେ ଜୋଡ଼ା ବାଗ ଘର କରି ରହିଲେ । ଶ୍ୟାମବନ୍ଧୁ ବଡ଼ ବଗିଚା ବହୁତ ଗୃହଜମି ସମେତ ସୁନ୍ଦରଗଡ଼ରେ ଘର କଲେ, ପ୍ରାଣବନ୍ଧୁଙ୍କର କଟକ ଭୁଜଙ୍ଗୀପୁରରେ ମହାନଦୀ ଉପରେ କୋଠା, ବ୍ରଜବନ୍ଧୁଙ୍କର କଟକ ଖପୁରିଆରେ କୋଠା, ତା'ଛଡ଼ା ଏମାନଙ୍କର ଆଉ ଯେଉଁଠି ସେଠି ଘର । ସେମାନଙ୍କ ପିଲାମାନେ ବି ବିଭିନ୍ନ ବୃତ୍ତିରେ ରହି ଯାଇଥିଲେ । କିଏ ଡାକ୍ତର, କିଏ ଇଂଜିନିୟର, କିଏ ଅଧ୍ୟାପକ, କିଏ ଡିପୋଟି, କିଏ ସେକ୍ରେଟେରିଏଟରେ ହେଡ଼୍ ଆସିଷ୍ଟାଣ୍ଟ, କିଏ କିଏ ପଢ଼ୁଥିଲେ ।

ନିଆଳି ମାଧବ ପାଖରେ ଗଣ୍ଡ ମଙ୍ଗଳରେ ପୈତୃକ ଗାଁରେ ଘର କରି ରହିଥିଲେ ଏକା ଜଗବନ୍ଧୁ । ତାଙ୍କ ବଡ଼ ପୁଅ ନାଣ୍ଡୁ ରାଉର-କେଲାରେ ଏକାଉଣ୍ଟେଣ୍ଟ, ତା ତଳେ ଝିଅ ମାଲି, ତା ସ୍ୱାମୀ ସୁଦାସ ବାଲେଶ୍ୱରରେ ଗୁଡ଼କଳର ମ୍ୟାନେଜର, ସବା ସାନ ଶଶୀ ବାଲିମେଲାରେ ଆସିଷ୍ଟାଣ୍ଟ ଇଞ୍ଜିନିୟର । ପୁଅ ଦହେଁ ବଡ଼ ହେଲେଣି, ଝୁଅ ପିଲା ଯେମିତି ସଂସାରର ଜଞ୍ଜାଳରେ ବାନ୍ଧି ହେଲେଣି । ଜଗବନ୍ଧୁ ଠାଣ କରି ମନାକରି ଦେଇଥିଲେ ପୁଅମାନେ ଘରକୁ ଟଙ୍କା ପଠାଇବେ ନାହିଁ । 'ନିଜ ଗୋଡ଼ରେ ଜୀବନଯାକ ଠିଆ ହୋଇଛୁ ଶେଷଯାକେ ସେହିଆ ହେବ', ଏହିପରି ତାଙ୍କର ପଣ । ତଥାପି ପିଲାଏ କୌଣସି ପର୍ବଆସରେ ହେଲେ ଲୁଗାପଟା କି ଅନ୍ୟାନ୍ୟ ଉପାୟରେ କିଛି କିଛି ଦେଇ ଯାଉଥିଲେ । କାଳକ୍ରମେ ବାଉଁଶ

ବଡ଼ ବଡ଼ ପନ୍ଥ ଘୋଳ ବ ବଡ଼ି ଗୁଳିଲା ତା ବନ୍ଦ ହୋଇଗଲା । କାମ ଗ୍ରୁଡ଼ ଗାଁକୁ ଆସିବାକୁ ଛୁଟି ନାହିଁ, ଆଜ ସରଯା ଦେହ ବେମାର କାଲ କେଉଁ ପିଲାର ଦେହ ବେମାର ନହେଲେ ଆଉ କେଉଁ ଜରୁରୀ ସରକାରୀ କାମ । ମାସ ପରେ ମାସ ଯାଏ, ବର୍ଷକେ ଥରେ କଏ ଆସି ପାରିଲେ ବହୁତ । କିନ୍ତୁ ସେମାନେ ଜଗର ଧର ଚିଠି ଲେଖନ୍ତି 'ବାପା ଆସନ୍ତୁ, ବୋଉ ଆସୁ, ଗାଁରେ ପଡ଼ି କ'ଣ ବା ଲାଭ ? ଦେହ ମୁନ୍ଦ ହେଲେ କଏ ଦେଖିବ ?' ମା' ମନ ଉଚ୍ଛନ୍ନ ହୁଏ । ଜଗବନ୍ଧୁ ଅନାନ୍ତି ତାଙ୍କ ଇଷ୍ଟଦେବ ଆଣ୍ଠୁଆ ଗୋପାଳ ବିଗ୍ରହଙ୍କୁ, ଶାଗୁଆ ମୁଗୁନି ଶିଳାରେ ଗୃଢଖଣ୍ଡେ ଉଚ ମୂର୍ତ୍ତି, ଆଣ୍ଠେଇ ପଡ଼ି ହସୁଛନ୍ତି, ନରୋତ୍ତମ ମୟୂରଭଞ୍ଜର ଖିଞ୍ଚିଂରୁ କଟାଇ ଆଣି ପ୍ରତିଷ୍ଠା କରାଇ-ଥିଲେ । ସୁଲକ୍ଷଣା ବ୍ୟାକୁଳ ହେଲେ ଜଗବନ୍ଧୁ ବୁଝାନ୍ତି ।

'ପିଲାଏ ମଣିଷ ହେଲେ, ତାଙ୍କ କଥା ସେ ବୁଝିବେ, କିନ୍ତୁ ଗୋପାଳ ତ ଯେମିତି ସେମିତି । ଯେ ବିଶ୍ୱବ୍ରହ୍ମାଣ୍ଡର କର୍ତ୍ତା ସେ ଏଠି ଶିଶୁ ନାରାୟଣ । ତାଙ୍କୁ ଅବହେଳା ହେଲେ ପ୍ରେ ପ୍ରାଣ ସହିବ କେମିତି ?'

ସେଇଠି ଜଗବନ୍ଧୁଙ୍କର ଦିନ କଟିଯାଉଥିଲା । କ'ଣ ନୂଆ କିଛି ଘଟିବ, ନୂଆ କିଛି ଶୁଣିବେ ବୋଲି ଆକାଙ୍କ୍ଷା ନଥିଲା । ଚିଠି ଆସିବ ବୋଲି ଛନଛନ ହୁଅନ୍ତି ନାହିଁ । ଦୈନିକ ଖବରକାଗଜ ପଢ଼ନ୍ତି ନାହିଁ । ଯଦି କେବେ ଠୁଙ୍ଗାରେ ପୁଡ଼ିଆରେ ପୁରୁଣା ଖବରକାଗଜ ହାବୁଡ଼େ ଚଷମା ଲଗାଇ କୌତୁକ ଓ କୁତୂହଳରେ ତା ଉପରେ ଆଖି ବୁଲାନ୍ତି । ସବୁଦିନେ ସେହି ସେହି ସମୟରେ ସେହି ସେହି କାମ, ପାନ ଛେଚିବା କି ଅଡ଼ାଏ ଘାସ ଓପାଡ଼ିବା କି ଗୋପବନ୍ଧୁଙ୍କ ଖବର ବୁଝିବା କି ଗାଧୋଇବା କି ଖାଇବା କି ଭୁଲିଯାଇ କାହା ପିଣ୍ଡାରେ ଭୁନହୋଇ ବସି କଣ ସୁଖ ଦୁଃଖର ଗୁଣ୍ଡ ଘାଣ୍ଟିହେବା । ସବୁ ଅଭ୍ୟାସ ।

ହଠାତ୍ କିଛିଦିନ ତଳେ କୁଆଡ଼ୁ କେଉଁ ଖବର ହାବୁକାଏ ଆସି ତାଙ୍କ ମନରେ ବାଜିଥିଲା । ଦି ପ୍ରହର । ପିଣ୍ଡାରେ ବସି ପଦାକୁ ଅନାଇଁଥିଲେ । ଧଳା କଳା ପାଉଁଶିଆ କହରି ହୋଇ ଉଣିଉଣା ମେଘ । ତା' ଉହାଡ଼ରେ କାହିଁ କେଉଁଦୂରରେ ଚକ୍‌କଣ ନେଳ ଟୋପାଏ

ଟୋପାଏ ଚାରିଆଡ଼ୁ ମେଘ ଯେତେ ଚାପି ଚାପି ଆସେ, ବୁକ ବୁକ ଆସେ, ତା' ଉହାଡ଼ରେ ଦୂରରେ ଦିଶୁଥାଇ ସେହି ନେଳ। ତାଙ୍କ ଛାତି ଭିତରେ କ'ଣ ମନ୍ଥାଚକଟା ଲାଗିଗଲା। ମନ ଲମ୍ଫି ଗଲା କେଉଁ ଅକଳନ ଅଛୁଣ୍ଡା ଅଜ୍ଞାତକୁ। ଆଖି ଆଗରେ ମେଘ ଝୁରୁ ଝୁରୁ ବରଷିଗଲା। ସତେ ଯେମିତି କାହାର କାନ୍ଦଣା। ଜଗବନ୍ଧୁଙ୍କ ମୁହଁ ଶୁଖିଯାଇଥାଏ। ପଲକ ପଡ଼ୁଥାଏ କି ନାହିଁ। ନିଶ୍ୱାସ ବହୁଥାଏ କି ନାହିଁ। ଅନ୍ତର ସତେ କି ସ୍ତବ୍ଧ।

ନିଘା ଲେଉଟିଲା। ପଡ଼ିଲା ଗଛବୁରୁଛ ଉପରେ। ଛନଛନିଆ ଶାଗୁଆ ଦିଶୁଛି।

ତା'ପରେ ସେ ଦେଖିଲେ, ଗହଳ ଅମଳବାଡରେ ପ୍ରତି ପତ୍ରରେ ଜାଲି ଫୁଟିଲାଣି। ଚେକା ଚେକା ବହଳ ବ୍ରଜମଲ୍ଲୀ ପତ୍ରକୁ ଢେଇଁଲାଣି। ଉପରକୁ ମୁହଁ ଟେକି ଜଗବନ୍ଧୁ ଭାବିଲେ, ଏ ମେଘ ପୂର୍ଣ୍ଣତାର ପ୍ରେତ, ପୋକବା, ଜାଳଜାଳ ଯେତେ ଆପଣା ବୟସ ମନେପଡ଼ୁଥିଲା ଆଉ ତା' ସଙ୍ଗେ ସଙ୍ଗେ ଅଜ୍ଞାତ।

ଗୋଟାଏ ଉଦ୍ଧତ ଗୁଣ୍ଡା ପଣ୍ଡା ଚେହେରା କଳା ମିଶ ମିଶ ହାଫ ପ୍ୟାଣ୍ଟ ହାଫସାର୍ଟ ପିନ୍ଧି ସାଇକେଲ ଚଢ଼ି ସହରର ରାସ୍ତାରେ ଚାଲି ଗଲାବେଳେ ଦୋକାନର ଆରସିରେ କି କାଚ ଆଲମାରିରେ ସେ ଚେହେରାର ଛାଇ ଦେଖିବାକୁ ବେଳଠୁଁ ମୁହଁ ତେରଛା ହୋଇଯାଏ। ମନେପଡ଼ିଗଲା, ଯେତେବେଳେ ବାଟ ଚାଲିଲେ ଜଙ୍ଘକୁ ଜଙ୍ଘ ଘଷି ହେଉଥିଲା। ସେ ଦେହରେ ଜୁଆର ଆସିଥିଲା, ଚାଲିଯାଇଛି।

ଏ ଦେହଟା ଭିନେ। ଆପଣା ଆଗରେ ଆପେ ଦେଖାଇ ହେଲା ଚେଶ ଯେତେ କୋଡ଼ ହାଣିଲେ, କୁରହଡ଼ ଚଳେଇଲେ ଗୋରୁ ମୋହିଁଲେ କି ଘରକାମ କଲେ, ଖାଲି ବାରମ୍ବାର ହାରିବା ଘୋଳ ହେବାର ଦସ୍ତାସ୍ତୁ କାହାଣୀ।

ତହିଁର କିଛୁଦିନ ପରେ। ଖାଲଟାରେ ଦୂରକୁ ଚାହିଁ ଏକୁଟିଆ ବସିଥିଲା ବେଳେ ଜଗବନ୍ଧୁ ସତେ ଯେମିତି ସିନେମା ଦେଖୁଥିଲେ। ସେ

ଦୃଶ୍ୟ ଜୀଅନ୍ତାମାନଙ୍କର ନୁହେଁ । ସହପାଠୀ ଗଙ୍ଗାରାମ ଓଝା, ସୌମ୍ୟ ମୂର୍ତ୍ତି, ଶାନ୍ତ ଆଖି, ମିଠା କଥା । ଓଭରସିଅର ରବଣାପ୍ପ, ମୋଟାମୋଟା ଧଳାନଶ, ଅଜାଡ଼ ହୋଇ ଚଢ଼ିଲ ପରି ବଡ଼ ମୁହଁ, ମୋଟା, ଘାପୁଲି ଗୋଡ଼କରେ ଥର ଥର ଆଙ୍ଗୁଠି ଆଗକୁ ପଛକୁ ହୋଇ ଯେମିତି ସୂତା ବୁଣୁଥାଏ, ଘଡ଼ଘଡ଼ ପରି ମଝିରେ ମଝିରେ କଥା, ଭୁଲ ବ୍ୟାକରଣରେ ଗୁଣ୍ଡାହୋଇ ତେଲୁଗୁ ଓଡ଼ିଆ ମିଶାମିଶି, ଶୁଣିବାକୁ କୌତୂହଳ ଲାଗେ । ଷଣ୍ଡ ଖଲସି ରମଲୁ ନାଏକ, ସରୁ ସରୁ ଲହ ଲହ ହୋଇ ତା'ର ବଣାତ ବଡ଼ ହାକମ ନିହାଲ ସିଂ ଅଡିକାପ୍ପ ହାରଆନା ଷଣ୍ଡର ନେକଟାଇ କମ୍ବଳକୁ ଆଉଁସୁ ଥିଲାବେଳେ ମାନେ ଭଲ୍, ଦୁହେଁ ଘଇ ଘଇ । ବୁଢ଼ୀ ପିଉସୀ ଶୁକଅଟା ବଙ୍କା ହୋଇ ବାଡ଼ି ଠୁକୁଠୁକୁ କରି ଏକର ସେକର ହେଉଥାନ୍ତି, ଡାକ ଛାଡ଼ୁଥାନ୍ତି, ଜଗୁଆରେ ମୋ ଜଗୁଆ କାହିଁ ଗଲ ? ବାପା, ବୋଉ ବଡ଼ବାପା, ଦାଦ ଖୁଡ଼ୀ, ଆପଣା ଖଞ୍ଜାର ଲୋକ, ଗାଁର, ଭିନ୍ନ ସ୍ଥାନର ସହକର୍ମୀ । କାହାର କେଉଁ ଗୁଣ । କେଉଁ କେଉଁ ହାବଭାବ । କାହା ସହିତ କେଉଁ ସମ୍ପର୍କର ଅନୁଭୂତି ସମସ୍ତିଙ୍କୁ ଏକାଠି କରି ଦେଖା ହେଉଥାଏ, ପୁଣି ଗୋଟି ଗୋଟି କରି ।

ତା' ଉତ୍ତାରୁ ଅନେକ ସମୟରେ ମନ ବଳୁଛି ସବୁ ମଲ ଲୋକଙ୍କୁ ଜୀଅନ୍ତା ଅବସ୍ଥାରେ ଏକାଠି କରି ଆଖିଆଗରେ ଥୋଇ ଦେଖିବାକୁ । ସେମାନେ ସଭାକଲ ପରି ବସିପଡ଼ନ୍ତି ଗାଁରେ କ ଯାହାରେ ଏକାଠି ହୁଅନ୍ତି । ଜଗବନ୍ଧୁ ଶୂନ୍ୟକୁ ଅନାଇଁ ସେମାନଙ୍କୁ ଦେଖୁଥାନ୍ତି । କେତେ-ବେଳେ ମନେପଡ଼େ ।

ସେମାନେ ମରିଛନ୍ତି । ମୁଁ ଅଛି । ମନ ଭୁଲାଇବାକୁ ଉଠି ପଡ଼ନ୍ତି । ଅସହାୟ ଲାଗେ ।

କେତେବେଳେ ମନେପଡ଼ୁଛି ଗୋଟାଏ ହଜି ଯାଇଥିବା ଜୀବନ ଭିତରେ ସ୍ନେହ ସହାନୁଭୂତିର କେତେ ସରୁ ସରୁ ଶୁଖିଲା ଧାର । ଯେମିତି ଏ ବରଷାରେ ବାଲିପଟା ଉପରେ କେତେ ମଳଧାର କଅଁଳ ଉଠୁଛି, ଦୁଳୁଦୁଳୁ ହୋଇ ଅଣ୍ଟୁଣ୍ଡା ସୁଅ । ସେଥିରେ କାହୁଁ କାହୁଁ ମୀନପଲ ପହଁରୁଛନ୍ତି । ଦୁଇ କରରେ ଶିଉଳି, ଶାଗୁଆ ଘାସ, ଉଗଡଗ ବଗ । ଛୁଇଁବାକୁ ହାତ ବଢ଼ାଇଲେ ସେ ଧାର ଦୂରେଇ ଯାଉଛି ।

ଏମିତି ଥରେ ବସି ଭାବୁଥିଲାବେଳେ ଗୋଟିଏ ଧାରଣା ଆସିଲା । କେଉଁଠି ଜନ୍ମ ହୋଇ ଜୀବନ ଗୋଟାକ କେଉଁଠି କେଉଁଠି କଟିଗଲା ! କେଉଁ ସ୍ଥାନରେ କେତେ ବର୍ଷ ରହିଲେ କାହାଠୁ ଦୟା କ ସ୍ନେହ କ ଉପକାର ପାଇଥିଲେ । କିଏ ତାଙ୍କୁ କ'ଣ ଦେଇଛୁ, କ'ଣ ଖୋଇଛୁ, କେମିତି ଭଲ ପାଇଛୁ, ଆଦେଶାର କରିଛୁ, ରୋଗଶୋକ ଦୁର୍ଦ୍ଦିନରେ କେତେ ସାହାଯ୍ୟ କରିଛୁ । ଯେତେବେଳେ ସେସବୁ ଅଞ୍ଚଳରେ ସେ ପ୍ରତିଜ୍ଞା କରୁଥିଲେ ।

"ଜୀବନଯାକ ଲାଗିପାଗି ଏ ଉପକାରରେ ଏ ସ୍ନେହର ମୁଁ ପ୍ରତିଦାନ ଦେଉଥିବ । ଧାରୁଆ ହେବ ନାହିଁ ।

ପୁଣି ସେ ଚେଇଁଉଠିଲେ । ପଛକୁ ଗୁହାଁଲାବେଳକୁ ସେ ଯୁଆଡ଼େ ଗଲେଣି । କାହାର ନାଁ ମନେପଡ଼ୁନାହିଁ, ଚେହେରା ମନେପଡ଼ୁଛି ଅସ୍ପଷ୍ଟ ହୋଇ ।

"ଖେଳ ତ ସରିଆସିଲା ! ମନଭିତରେ ଭୁହାଇ ଭୁହାଇ ଝଙ୍କାର ଉଠିଲା ।

ତା'ପରେ ରବିବାର ସଞ୍ଜବୁଡ଼େ । ଗୋରୁ ବାନ୍ଧିବାର ଟିକିଏ ବେଳ ଅଛେଷା । ଆଗରେ ଲଣ୍ଠଣ ଥୋଇ ଭାଗବତ ଅଧ୍ୟାୟେ ହେବ । ଲାଗୁଥାଏ ଏଥର ଦୂରରୁ ଖଣ୍ଡି କାଣ ଶୁଭିବ, ବୁଢ଼ା ଅନୁ ମଳିକ ଦୁଃଖସୁଖ ହେବାକୁ ଭାଗବତ ଶୁଣିବାକୁ ଏତିକିବେଳେ ଆସେ । ସୁଲକ୍ଷଣା ଚୁଲିପାଖେ ଥିଲେ । ଜଗବନ୍ଧୁ ଚେକାପକାଇ ବସି ହାଇ ମାରୁଥିଲେ, ହଠାତ୍ ମନେପଡ଼ିଗଲେ ଶଙ୍କରବାବୁ । ମୟୂରଭଞ୍ଜ କଲେକ୍ଟରୀରେ ନମ କରନ୍ତି ଥିଲେ । ନିଃସନ୍ତାନ । କିନ୍ତୁ ଘରେ ପିଲେ ଛୁଆପିଲା । ନାନା ଜାତିର, ସାନ୍ତାଳ, ପାଣ, ବ୍ରାହ୍ମଣ, କରଣ, ତନ୍ତୀ । ନଜର ହୋଇ ଭାଇବନ୍ଧୁ କେହି ନଥିଲେ; କିନ୍ତୁ ତାଙ୍କ ଘର କୁଣିଆ ଗହଳରେ ଫାଟି ପଡ଼ୁଥାଏ । ଶଙ୍କର ବାବୁଙ୍କ ସ୍ତ୍ରୀ ସବୁବେଳେ କାର୍ଯ୍ୟରେ ଲାଗିଥାନ୍ତି, ସବୁବେଳେ ଚିନ୍ତା, କେଉଁ ପିଲାର କ ସମସ୍ୟା । କାହାକୁ କାଛୁ ଛାଡ଼ୁନାହିଁ, କାହାର ଡାଳ ବଇଞ୍ଚି, କାହାର ନାଳଝାଡ଼ା, କିଏ ପାଠ ମନେ ରଖିପାରୁନାହିଁ, କ୍ଲାସରେ ଫେଲ୍ ହୁଏ, ସେମିତି କେଉଁ କୁଣିଆକୁ ମାଛ ନ ହେଲେ ଭାତ

ତ୍ରୁଟି ନାହିଁ, ଏପରି ପୁଲବାଣିରେ ମାନ୍ଦ ମିଳେ ନାହିଁ, କଏ ନଗମିଣାଶୀ, ବ୍ରତ ଏକାଦଶୀ କରନ୍ତି । କଏ ତାଙ୍କ ହାତ ସନ୍ତୁଚଳୁଳକୁ ପ୍ରଶଂସା କରୁଥିଲେ, ଆହୁରି ଖାଇବାକୁ ଆଶା । ସମସ୍ତଙ୍କୁ ପ୍ରସନ୍ନ କରିବାକୁ ପଡ଼ିବ । ଶଙ୍କରବାବୁଙ୍କର ମତକ, ସନ୍ଧ୍ୟା ସକାଳେ ପିଲଙ୍କୁ ପାଠ ପଢ଼ାଇବେ । ତାଙ୍କ ଭୁଣ୍ଡରେ ସବୁବେଳେ ବଡ଼ ବଡ଼ କଥା, ଦେଶ, ସ୍ୱାର୍ଥତ୍ୟାଗ, ଆଦର୍ଶ, ଚରିତ୍ରବଳ, କର୍ତ୍ତବ୍ୟ, ସଦ୍‌ଗୁଣ, ଏହି ସବୁ ବିଷୟରେ ଦେଶକୁ ଗଢ଼ିବାକୁ ପଡ଼ିବ, ଦେଶର ମନୁଷ୍ୟହିଁ ଦେଶ, ସେ କହୁଥାନ୍ତି । ସାଙ୍ଗମାନେ ଚାହାଁମାନେ କେବେ କେବେ ଭୋଜି ଖାଇବାକୁ ଆସନ୍ତି । ବାଟରେ ନଷ୍ଟହ ପାଗଳ ଲୋକ ଅନେକଙ୍କର ଅଭିମତ ଶୁଣାଯାଏ, 'ଏତେ ନେଲ, କଏ ସଙ୍ଗା ଆଣି ଗୁଞ୍ଜିଲେ ବ ନେବ ନାହିଁ । ପରିପିସ୍ତ ଉଡ଼େଇ ଉଡ଼େଇ ଖସ୍ତି । ପୁରୁଣା ଖାନ୍ଦାନ ଘର ଲୋକ କନା, ଯେମିତି ବଡ଼ ଦେହରେ ସେମିତି ବଡ଼ ମନ୍ ବଡ଼ ଆଖି, ହେଲେ କ'ଣ ହେବ, ମୁଣ୍ଡର ଖିଲ ଢିଲା ।

ସେତେବେଳେ ମୟୂରଭଞ୍ଜରେ ଟଙ୍କାକୁ କୋଡ଼ିଏ ସେର ଚାଉଳ । ଅଥଚ ଶଙ୍କର ବାବୁଙ୍କର ବଜାରରେ ଶହ ଶହ ଟଙ୍କା କରଜ । ତଥାପି କରଜ ମିଳେ । ଯେଉଁମାନେ ଗ୍ରହଣରେ ସହକର୍ମୀ ନୁହନ୍ତି ତାଙ୍କ ଆଖିରେ ସେ ଦେବତା । ଦୁଃଖୀରଙ୍କି ବିପଦ ପଡ଼ିଲେ ତାଙ୍କର ପାଖକୁ ତ ଧାଇଁବେ, ଆଉ କଏ ଅଛି ? ଜଗବନ୍ଧୁ ସେ ଶଙ୍କରବାବୁଙ୍କୁ ସତେକି ଆଖିଆଗରେ ଦେଖିଥିଲେ । କଳାପଥରରେ ତିଆରି ହେଲ ପରି ପ୍ରକାଣ୍ଡ ଶରୀର କୁନ୍ଦା ନୁହେଁ, ବୋଦଲା ନୁହେଁ, ଓଜନ, ବଡ଼ ମାଉଁସିଆ ମୁହଁ । ଗୋଲ ଗୋଲ ଆଖିଯୋଡ଼ିକ ପିଲଆଖି ପରି ନଷ୍ଟହ । ଜେଲଖାନା କଇଦୀଙ୍କ ବାଳପରି କଟା ହୋଇଥିବା ମୁଣ୍ଡବାଳ, ତହିଁରେ ଗୋଟିଏ ଚୁଟି । ନାଲି ଗାମୁଛାଟାଏ ବେଢ଼ଇ ହୋଇ ସେ ବସିଛନ୍ତି । ଘରକରେ ପଟେଲ ପିଲା । ଆରସାପିଠା ଖିଆ ହେଉଛି । ହସି ହସି ହାଣ୍ଡିରୁ ଆହୁରି କାଢ଼ି କାଢ଼ି ବାଣ୍ଟୁଛନ୍ତି ତାଙ୍କ ସ୍ତ୍ରୀ ଅରୁନ୍ଧତୀ ଦେବୀ ।

ସେହି ଶଙ୍କରବାବୁ ତାଙ୍କର ବି ବହୁତ ଉପକାର କରିଥିଲେ । ଖାଲି ସଦୁପଦେଶ ଦେଇ ନୁହେଁ, ଖାଲି ଦୁଇଓଳି ମାଗଣାରେ ପାଠପଢ଼ାଇ ନୁହେଁ, ଶରଧାରେ କେତେବେଳେ ଲୁଗାପଟା ସାହାଯ୍ୟ, ବହିପତ୍ର ସାହାଯ୍ୟ,

ସେତେବେଳେ ଗଲେ ପେଟପୂରା ଜଳଖିଆ, ଓଳିଓଳିକେ ଦାମୀ ଭୋଜନ, କେତେ ବୃଦ୍ଧି କେତେ ଆଶା ସବୁ ସେ ଦେଇଥିଲେ ଗତବର୍ଷ ପର୍ଯ୍ୟନ୍ତ, ପଶୁଡାକ୍ତର ସେ ପଢ଼ିଥିଲେ ତାଙ୍କର ଉପଦେଶ ମାନି, ଛାତ୍ରବୃତ୍ତିକା ଖର୍ଚ୍ଚ ବ ସେ ଦେଇଥିଲେ । ତାଙ୍କ ଆଖିରେ ଶଙ୍କରବାବୁ ଦେବତା ।

ଯେ ହୀନବଳ ତାକୁ ତୁ ସାହାଯ୍ୟ କରିବ । ଯେ ନିଃସହାୟ ତାହାର ତୁମେ ସହାୟ ହେବ । ପଶୁର ଚିକିତ୍ସା ଓ ସେବା ଛଡ଼ା ସଂସାରରେ ଆଉ କି ଉପାଦେୟ କାର୍ଯ୍ୟ ଥାଇପାରେ ?

ଟଙ୍କା ସମସ୍ତେ କମେଇପାରିବେ, ଅସତ୍ ମାର୍ଗ ଧରିଲେ ତ ଦୁଇହାତ କରି ଟଙ୍କା ବଢ଼ିଯିବ । କିନ୍ତୁ ମୋର ବଡ଼ ଇଚ୍ଛା ତୁମେ ଟଙ୍କା ଲୋଭ ଛାଡ଼ ମଣିଷ ହୁଅ, ଭଗବାନ ଖାଇବାକୁ ଦେବେ ପୋଷିବେ ପାଳିବେ ଆଉ ଅଧିକ ତୁମେ ମାଗ ନାହିଁ, ସେହି ଶଙ୍କରବାବୁ ତାଙ୍କୁ କହିଥିଲେ ।

ତାଙ୍କ ଆଗରେ ଠିଆହେଲେ, ଦେହ ଥରୁଥିଲା, ଆଖି ତଳକୁ ହେଉଥିଲା, ବାରମ୍ବାର ଆଶଙ୍କା ହେଉଥିଲା 'ତାଙ୍କ କଳ୍ପିତ ଆଦର୍ଶରୁ ମୁଁ ତଳକୁ ଖସିପଡ଼ ନାହିଁ ତ ।'

ତାଙ୍କର ଗୋଲ ଗୋଲ ଆଖି ଦୁଇଟି ସବୁ ଦେଖୁଥିଲା ସବୁ ବୁଝୁଥିଲା ଯେ କିଏ କେଉଁ ପ୍ରକାରରେ ବାଟବଣା ହେଉଛି, କି କି ଭୁଲ କରୁଛି । ସେ ଠିକଣା ସମୟରେ ଠୋକର ଦେଉଥିଲେ । ପିଲାଦିନରୁ ଜଗବନ୍ଧୁଙ୍କ ଗୁରୁ ନବେତ୍ତମ ବନ୍ଧୁ, ଶଙ୍କରବାବୁ । ସେ ପ୍ରଶଂସା କରି ହସିଲେ ଜଗତ ଆଲୁଅ ହୋଇଗଲା ପରି ଲାଗେ, ସେ ମୁହଁ ଶୁଖାଇଲେ ଲାଗେ ଜଗତ ଅନ୍ଧକାର । ବଡ଼ ହେଲେ ଏହିପରି ହେବ, ସେ ଅନେକ ସମୟରେ ଭାବୁଥିଲେ ଅନାଟନ ଘଟିଲେ ଦୁଇଓଳିରେ ଓଳିଏ ଚୁଲି ଜଳିବ, ଖତ କୁଢ଼ରେ ବଢ଼ିଥିବା କଣ୍ଟା ଶାଗ ଆଉ ପଖାଳ ତୋରାଣିରେ ଚଳିଯିବ କିନ୍ତୁ ଗରିବ ପିଲାଏ ଘରେ ରହି ପାଠ ପଢ଼ିବେ, ଦୁଃଖୀଙ୍କ ସାହାଯ୍ୟ ପାଇବେ, ସମାଜ ପାଇବ ସେବା ଓ ଉପକାର ।

ସେଇ ତ ଆଦର୍ଶ ଜୀବନ ! ମୁଁ କ'ଣ କଲି ? ଜଗବନ୍ଧୁ ଭାବୁଥାନ୍ତି, ଆଖିରୁ ଧାର ବୋହୁଥାଏ । ମନେପଡୁଥାଏ, ଶଙ୍କରବାବୁ ବୁଢ଼ାହୋଇ

ମଲେ, କିନ୍ତୁ ରୋଗରେ କଷ୍ଟ ପାଇ ପାଇ ଅଭାବରେ ହନ୍ତସନ୍ତ ହୋଇ ହୋଇ । ଔଷଧ କିଣିବାକୁ ବି ପଇସା ନଥିଲା । ଯେଉଁମାନଙ୍କୁ ସେ ଆପଣାର କରିଥିଲେ, ମଣିଷ କରିଗଲେ; ତାଙ୍କୁ ସାହାଯ୍ୟ ଦେବା ତ ଦୂର କଥା, ଅନେକେ ଥରେ ଦେଖିବାକୁ ବି ଗଲେ ନାହିଁ ।

ଆଉ ମୁଁ ବା କାହାର କ'ଣ କଲି ? ଜଗବନ୍ଧୁ ଭାବନ୍ତି ଖାଲି ମୋର ଭରସା, ମୋର ଲୁଆପିଲା, ମୋର ସୁଖଦୁଃଖ । ଆଉ ହୃଦୟ ଭିତରେ ବୋଝେ ସଦିଚ୍ଛା, କାହାର କିଛି କରିବାକୁ ମନ, କାର୍ଯ୍ୟରେ କିଛି ନାହିଁ । ସେ ଉତ୍ତ ଉକ୍ତିରୁ ସେ ଶଙ୍କରବାବୁଙ୍କୁ ପୁଣି ମନେ ପକାଇ-ଥିଲେ । କେତେବେଳେ କାମ କରୁ କରୁ ହାତ ରହିଯାଏ, ଆଖି ଡୋଳା ଡେରହୋଇ ଅଟକିଯାଏ । ଥୋମଣି ଓହଳି ପଡ଼େ । ନିଜ ସ୍ତ୍ରୀଙ୍କ ସଙ୍ଗେ କଳି କରିବା ସେ ବହୁଦିନରୁ ଛାଡ଼ି ଦେଇଥିଲେ, କିନ୍ତୁ ମଙ୍ଗଳବାର ସଞ୍ଜରେ ସେମାନଙ୍କର ଝଟାପଟା ଲାଗିଗଲା, ଆରମ୍ଭ ହେଲା ପଦେ କଥାରୁ, ଗାଁ ଆଡ଼ୁ ବୁଲି ଆସି ଜଗବନ୍ଧୁ କହିଲେ ଆଜି ବନୋଦା କୁମ୍ଭାର ମରିଗଲା । ମଦିଲାହିଆ ଗୋଟା ଆମ୍ଭ ଆଗୁର ଥରେ ପାଟିରେ ଲଗାଇବ ବୋଲି କେତେ କରି କହି ପଠାଇଥିଲି । ଦେଇଥିଲ ?

'ମଲା ମୋ ପୋଡ଼ା ମନ, ବୁଢ଼ାଟା ସତେ ମରିଗଲା ?'
'ଓ ! ତାହେଲେ ତୁମେ ଦେଲ ନାଇଁ । ମୁଁ ପରା ଜାଣେ ।'
'ଆରେ ! ମୁଁ କ'ଣ ଜାଣିଥିଲି ବୁଢ଼ାଟା ମରିଯିବ ବୋଲି ?'

"ନିଶ୍ଚୟ ଜାଣିଥିଲ । ବୁଢ଼ାକୁ ସନ୍ନାଅଶୀ ଲାଗିଥିଲା । ଆହା; ପିଲାଦିନେ ମତେ କେତେ କାଖେଇଚି । ମୋ ବୋଉ ତା ବାପାକୁ ଭାଇ କରିଥିଲା । ଧାରୁଆ କରି ରଖି ଦେଇଗଲା । ଦେଖୁନା ଏ ଯେଉଁ ଚଉଁରୀ ହାଣ୍ଡି ଟି ନେ ଗଢ଼ି ଦେଇ ଯାଇଛି, ପୋଡ଼ା ମାଟିର ଚଳ ସିନା, ସେଥିରେ କି ଚୁଙ୍ଗ୍ କାମ କାରିଗରି ! କେଡ଼େ ଦମ୍ଭ କାମ ! କେତେ ବର୍ଷ ହେଲାଣି କହିଲ । ଏବର ପିଲାଙ୍କର ସେ ହାତ ନାହିଁ । ଗୁଡ଼ଃ । ଆବୁର ଥରେ, ସୁନା ରୂପା ନୁହେଁ, ଦେଲ ନାହିଁ । ଜୀବନଯାକ ତୁମେ ସେଇଆ ପରା । ସେହିଟ ମନ ।"

ବୁଜା ମୁଠା । ଚେଷ୍ଟ ମନ । ଆଉ ଏତେ ଚେନା ମହୁଲି ପକାଇ ଅ.ଖି ବୁଜି ଜ୍ୟୋତିକୁ ବସି ଧ୍ୟାନକଲେ କ'ଣ ଜ୍ୟୋତି ଦିଶିବ ? ଖାଲି ଅନ୍ଧାର । ଅନ୍ଧାର । ସୁଲକ୍ଷଣା କାବା ହୋଇ ଅନାଇଥାନ୍ତି । ଜଗବନ୍ଧୁ କହି ଯାଉଥାନ୍ତି, "କାହିଁକି ତୁମ ମନଟା ଖେଷ୍ଟ ଜାଣିଛ ? ତୁମର ଦୋଷ ନାହିଁ । ସବୁ ତୁମ ବାପଘରର ଦୁଷବ । ସେମାନେ ଅମରେ· ଉଜାଡ଼ି ଉଜାଡ଼ି ଗରବ ହେବା ଜାଣନ୍ତି ନାହିଁ । ସେ ଶିଖିଛନ୍ତି ମହୁମାଛି ପରି ଗୁହଆଡୁ ଆଣି ସଞ୍ଚି ସଞ୍ଚି ବଡ଼ଲୋକ ହେବା । ତେବେ, ଫେଶା ଗୁର୍ଚ୍ଚି ଚୁପୁଡ଼ି ନେବାକୁ ଆଉ କେହି ଥାଏ, ଯେମିତି ଦେଖିଲ ଜମିଦାର ବ ଉଠିଗଲା । କଣ ଭଲ ମାନ୍ଦୁଗଲ ?"

ସୁଲକ୍ଷଣା ଗଦଗଦ କରି କଥାଗୁଡ଼ାକ ଗିଳୁଥିଲେ । କାନମୁଣ୍ଡା ତାତିଲା । ନାକ ନାଲି ପଡ଼ିଗଲା, ତା'ପରେ ପାଟି, ଗାଲ, ବେକ, ମୁଣ୍ଡକୁ ତାତି ଚଢ଼ିଲା । ଆଖିରୁ ଧାର ବୋହିଲା । ଏପରି ଅବସ୍ଥାରେ ଦଶବର୍ଷ ତଳେ ଯାହା ଯେମିତି ହେଉଥିଲା ପୁଣି ଅଭ୍ୟାସ ଅନୁସାରେ ସବୁ ଘଟିଗଲା । କଥାର ସୁଅ ଛୁଟିଥିବା ଯାଏକେ ସେ କିଛି କହୁ ନଥିଲେ । ତାପରେ କାନ୍ଦୁଣି ପାଟିରେ ସଁ ସଁ ହୋଇ ହଠାତ୍ ଗୋଟାଏ ବୋବ, ଜଗବନ୍ଧୁ ଚମକି ପଡ଼ିଲେ, ତା'ପରେ ହାଣ ଶୁଣୁରେ ମେଘ ଗାଳିଲା ପରି ଗୁହାବୁତୁହା ଗଞ୍ଜଣା, ଢୁ ଢୁ କରି ତଳେ ମୁଣ୍ଡବାଡ଼ଆ, ଫଁ ଫଁ କରି କାନ୍ଦଣା, ନାନା ସ୍ୱରରେ । "ମୋ ହାଡ଼ ମାଉଁସ ଚକତ ଠୁଣି କରି ଖାଇ ମୋତେ ଜୀବନ-ଯାକ ଜାଳିପୋଡ଼ି ମାରି ଶେଷରେ ବୁଡ଼ୀ ଦିନକୁ ଆହୁରି ସ୍ୱେ ଅପବାଦ ଶୁଣିବା ବାକି ଥିଲା । ହାରେ ଦଇବ । ମୁଁ ନମରି ରହିଛି କାହିଁକି ? ଟାଇଫଏଡ୍‌ରେ ପଡ଼ିଥିଲି ମରିଥିଲେ ଦଶ ବର୍ଷ ହୋଇଯାଆନ୍ତାଣି, ନ ମରି ବଞ୍ଚିଛି କାହିଁକି ?"

ତୋଫାନ ଗୁଲିଛି । ଜଗବନ୍ଧୁ ଆତଙ୍କରେ ଅପେକ୍ଷା କରି ରହିଥାନ୍ତି । ଏ ସେହି ସେହି ଅବସ୍ଥା ଯେତେବେଳେ ମାତମୂର୍ତ୍ତି ସତେକି କରାଳୀ ହୋଇଯାଏ । ଦୟା ନାହିଁ, ମାୟା ନାହିଁ, ସମ୍ପର୍କ ନାହିଁ, ସମ୍ବନ୍ଧ ନାହିଁ, ସବୁ ଭଣିଭଣା ହୁଏ, ସୁଲକ୍ଷଣା ଅନ୍ତର ଭିତରର ସବୁ ସଞ୍ଚିତ ତିକ୍ତତା ପଦାକୁ ବାହାରି ଗରଳ ହୋଇ ତାଙ୍କ ବ୍ୟକ୍ତିତ୍ୱରେ ମାଖି

ହୋଇ ରହେ । "ମୁଁ କଣ ହେଲି ।" ଜଗବନ୍ଧୁ ବୁଝୁଥିଲେ । ସେ କ'ଣ ଏପରି କହୁଛନ୍ତି ତାଙ୍କର ମନେ ପଡ଼ୁନଥାଏ । ଲାଗୁଥାଏ କାହିଁ, ସ୍ତ୍ରୀଙ୍କୁ ଗାଳିଦେବା କି ଅପମାନ ଦେବା କି ଘରେ ଅଶାନ୍ତି ଲଗାଇବା ଉଦ୍ଦେଶ୍ୟରେ ସେ ତ କିଛି କହିନାହାନ୍ତି । ପାଟି ଶୁଖିଯାଉଥାଏ । ଗୁଡ଼ ଭିତରେ ଗଣ୍ଡଗୋଳ । ମନେପଡ଼ିଲା, ଆଗେ ଏପରି ବର୍ଷକେ ଦୁଇ ତିନିଥର ହେଉଥିଲା । ଥରେ ଅବତାର ହୋଇଗଲେ, ସେ ଲାଗିରହେ ସପ୍ତାହେ ଅଧିଯାକେ, ସେତେବେଳେ ଫୋପଡ଼ା କଚଡ଼ା, ଭଙ୍ଗାରୁଜା ନିଜ ମୁଣ୍ଡ ବାଡ଼ଆ, ଅହରହ କନ୍ଦାବୋବା ଚିତ୍କାର, ନିଜ ହାତରେ ମୁଠାମୁଠା କରି ମୁଣ୍ଡବାଳ ଓଟରିବା, ଲୁଗାପଟା ଅସମ୍ଭାଳ, ସାହିପଡ଼ିଶା ପରଆପଣା ଖିଆଲ ନ ରଖି ସ୍ୱାମୀଙ୍କର ବିରୁଦ୍ଧରେ ନାନା ଅଭିଯୋଗ ଘୋଷଣା, ସେ ସେ ନିଷ୍ଠୁର, ରାକ୍ଷସ, କର୍କଶ ପିଙ୍ଗଳ ସେ ଅତ୍ୟାଗୃହୀ, ସେ ତାଙ୍କ ଜୀବନକୁ ଭସ୍ମ କରିଛନ୍ତି, ତାଙ୍କଠି ଏତେ ଟିକିଏ କାହା ପ୍ରତି ଦୟାମାୟା ନାହିଁ ।

ତା'ପରେ ଆସେ ଶୀତଳ ଯୁଦ୍ଧର ଦିନ, ଘରେ ପଶିଲେ ସବୁ ଶୁନଶାନ, ତାହାର ଭିତରେ ସ୍ପଷ୍ଟ ବାରିହୁଏ—ଯୁଦ୍ଧ ଚାଲିଛି ତା'ର ତାତି ନିଆଁର ନୁହେଁ ବରଫର ।

ତା'ପରେ ସେ ଯୁଦ୍ଧର ସମାପ୍ତି କେବେ ହଠାତ୍ ହୁଏ ଅଧା ଶିଆଁ ଅଧାଶୁଆ ଅବସ୍ଥାରେ ବିଛଣା ଉପରେ ସେତେବେଳେ ଅଭିଯୋଗ ନଥାଏ, ନିଃଶ୍ୱାସରେ ଖାଲି ବିରହର ଲୁଣି ଲୁହ । ଜୀବନଯାକ ପରସ୍ପର ପ୍ରତି ଆତ୍ମ ସମର୍ପଣ ବିଶ୍ୱାସ ଓ ସ୍ନେହ ସେହି ଲୁହରେ ଲୁହରେ ଚିହ୍ନାଚିହ୍ନି ହୁଅନ୍ତି । ଇନ୍ଦୁ ପୂର୍ଣ୍ଣିମାର ମଝି ରାତିରେ କଳାମେଘର ଓଢ଼ଣା ତଳେ ସଫା ଜହ୍ନ ଉଏଁ, ଉଇଁଲା ପରି, ଯେତେବେଳେ ଶୁଭୁଥାଏ ଦୂର କୋଉ ପଲ୍ଲୀରୁ ଭାସି ଆସୁଥିବା ମଧୁର ମାଦଳ ଧ୍ୱନି ସହିତ ମନ ଉଲ୍ଲସା ନାଚର ସଙ୍ଗୀତ, ଓଦା ଓଦା କଳା ଛୁଇ ବୋଳା ସ୍ପଷ୍ଟ ଅସ୍ପଷ୍ଟ ପୃଥିବୀ ଲାଗୁଥାଏ ଅତି ଆପଣାର ହୋଇ ମନୋହାରିଣୀ ।

ସବୁ ତୋଫାନ ଶାନ୍ତ ହୁଏ, ଶାନ୍ତ ହେବ । କିନ୍ତୁ ସେ ପର୍ଯ୍ୟନ୍ତ ?

ସୁଲକ୍ଷଣାଙ୍କଠିଁ ଏପରି ଉପସର୍ଗ ଦେଖିଲେ ଜଗବନ୍ଧୁ ତାଙ୍କ ପାଇଁ ସହାନୁଭୂତିରେ କାତର ହୋଇପଡ଼ନ୍ତି ଓ ନିଜଠି ନାନା ତ୍ରୁଟି ଆବିଷ୍କାର କରନ୍ତି । ଆପଣା ସ୍ତ୍ରୀକୁ ଯେତେ ନିଘା ଦେବା ଉଚିତ ସେ କ'ଣ ତାହାଁରୁ ଜାଣିଗୃଏ କେବେ ଦେଇଛନ୍ତି ? "ଯେଉଁ ପଶୁଙ୍କୁ ସେବା କଲ ବୋଲି ଏତେ ବଡ଼ାଇ କରୁଛ ତାଙ୍କଠି ହେଲେ ବରିଗୃ ଅଛି, ତୁମଠି ନାହିଁ, ତାଙ୍କର ଆଖି ଅଛି, ତୁମେ ଅନ୍ଧ ।"

ତାଇ ତାଇ ବାଜୁଛି କଥାଗୁଡ଼ାକ ଗ୍ଭତିରେ ଲାଗୁଛି ସବୁସତ । କିନ୍ତୁ ଆଉ ଉପାୟ କଣ ଥିଲା ? ଜୀବନଟା ସତେକି ଅଥଳ ଅକୂଳ ସମୁଦ୍ରରେ ଗୁଡ଼ାଏ ଅଜଣା ସୁଅର ସୋତରେ ଭସିଲା ପରି, ନିଜର ବରିଗୃ ଆଉ ଇଚ୍ଛାରେ ଟିକିଏ ବାଟ ପହଁରି ଯାଉ ଯାଉ ପୁଣି ସେ ସୁଅ ସୋତରେ ଆଉ କୁଆଡ଼େ ଭସିଗଲା ପରି । "ଶୁଣ—ମତେ ଭୁଲ୍ ବୁଝନା" ଶୁଣ—ଶୁଣିବାରେ କିଛି ନାହିଁ, ଖାଲି ଶୁଣାଇବାର । କିନ୍ତୁ ସେଦିନ ସୁଲକ୍ଷଣା ଆଉ ବେଶି ବେଳଯାକେ ଯୁଦ୍ଧ ଚଳାଇ ପାରିଲେ ନାହିଁ । ଅଳ୍ପ ସମୟ ପରେ ସେ ନିଜେ ଇ ଘରୁ ଯୁଦ୍ଧ ବନ୍ଦ ହେବାର ଘୋଷଣା ଶୁଭିଲା— "ହଉ ଯାହା କହିବ କହ, ଯାହା ଦୋଷ ଦେବ ଦିଅ, ଜୀବନଯାକ ତ କହୁଛ, ଯାହାର ଯାହା ସ୍ୱଭାବ ସେ କ'ଣ ବଦଳିବ ?"

ପରୀକ୍ଷା କରିବାକୁ ଜଗବନ୍ଧୁ କହିଲେ "ପାନ ଆଣ, କ'ଣ ଆଜି ଦିବନାହିଁ ?"

'ଖାଲି ପାନ କ'ଣ ମାଗୁଛନ୍ତି' ତମ ପାଇଁ ଜଳଖିଆ କରି ଥୁଆ ହୋଇଛି । ଆଜି ତମର କ'ଣ ଘୋଟିଛି କି ?'

'ଆଜି ଥାଉ ।'

'କାହିଁକି ଥିବ ? ଜଳଖିଆ ଖାଇବ, ଗୃହା ଖାଇବ, ବେଳ ଅବେଳା ହୋଇଗଲେ ତୁମ ଦେହ ଖରାପ ହୁଏ ।' ପୁଣି ଟାଣକରି କହିଲେ, ଏଇ ଚୁଲିମୂଣ୍ଡକୁ ଆସ, ଥୋଇଲି । ତେଣେ ଘର ଅନ୍ଧକାର ।

ସାନପିଲା ମା' ମାଉଙ୍କୁ ଡର ଖାଇ ବସିଲା ପରେ ଜଗବନ୍ଧୁ ଯାଇ ଖାଇ ବସିଲେ । କିନ୍ତୁ ମନଟା ଉଡୁଥିଲା ।

ସୁଲକ୍ଷଣାଙ୍କ ତରଫରୁ ଆହୁରି ଗାଳି ଗଞ୍ଜଣା ଶୁଣିଥିଲେ ମନ ଟଳଟଳ ହୋଇ ନଥାନ୍ତା, ସବୁଥର ପରି ନିଜକୁ ଅପରାଧୀ ଭାବି ସେ ତାଙ୍କ ଉପରେ ସହାନୁଭୂତି ଅଜାଡ଼ି ଦେଇ ଥାଆନ୍ତେ । କିନ୍ତୁ ସେଥିରୁ ଅବ୍ୟାହତି ପାଇଲା ମାତ୍ରେ ତାଙ୍କ ମନ ଅଭିମାନରେ ପୂରି ଉଠିଲା, ଲାଗିଲା ସେ ଅତ୍ୟାଚାରୀ ନୁହଁନ୍ତି ଅତ୍ୟାଚାରିତ ।

ଏ ସଂସାରରେ ଆପଣା ଭାରିଯା ବି ସାମାନ୍ୟ କଥା ପଦେ ସହି ପାରିବ ନାହିଁ, ଗଣ୍ଠି ପକାଇ ଧରିବ, ଛଳ କରିବ, ତେବେ ଏ ସଂସାର ଘରକରଣାର ଅର୍ଥ କ'ଣ ? ଏମିତି ତ କାଳକାଳ ଗଲା । ସେ ଭୁମ ହୋଇ ଭାବୁଥାନ୍ତି, ଆଖି ଛଳଛଳ ହୋଇଆସୁଥାଏ ।

କିଛି କହିଲେ ନାହିଁ । ଖାଇସାରି ଉଠି ଆସି ପିଣ୍ଡାରେ ବସିଲେ । ମେଘୁଆ ଅନ୍ଧାର ଆକାଶରେ ଗୋଟି ଗୋଟିକିଆ ତାରା । ବଗିଚାରେ କଳା କଳା ହୋଇ ଗଛଗୁଡ଼ିକ ନଡ଼ିଆ, କଲମି ଆମ୍ବ, ପିଜୁଳି, ପଣସ । ମିଞ୍ଜି ମିଞ୍ଜି ଜୁଳୁଜୁଳିଆ ଏକର ସେକର ଉଡୁଛନ୍ତି । ପୋଖରୀ ଉପର ଅନେକ ଫରଙ୍ଗ ଦିଶୁଛି । ଯେପରି ଯାହାର ସେ ଅଲଗା ଅଲଗା, କାହାର କାହା ସଙ୍ଗେ ସମ୍ବନ୍ଧ ନାହିଁ, କାହାର କାହାକୁ ଅପେକ୍ଷା ନାହିଁ । କେହି କାହା କଥା ବୁଝିନାହିଁ । ଏଇ ସଂସାର । କେଡ଼େ ନିଗୁଛିଆ ।

ମଣିଷ ଜୀବନରେ ଏଥିଠୁଁ ବଳି ଦୁଃଖ ଅଛି ? ଏଇ ନିଃସମ୍ପର୍କ ଏକୁଟିଆ ପଣଠୁଁ ଅଧିକା କିଛି ? ସେ ଥକ୍କା ହୋଇ ଶୁଇଁ ରହି ଆପଣାକୁ ମନେ ମନେ ପଚାରିଲେ, 'ଯେତେ ଯେପରି ନିଜ ଭିତରେ ଆଉ ଜଣେ କିଏ ସାକ୍ଷୀ ହୋଇ ବସିଛି, ସେ ତା'ର ଉତ୍ତର ଦେବ । ଜୀବନ ଭିତରେ ପହଁରି ପହଁରି ଯାଇ ଶେଷରେ ଦମ୍ ନେଲା ବେଳକୁ ନିଗୁଛିଆ ମରୁଦ୍ୱୀପ, ଯେଉଁଠି ବାଲି ପଟା ତାଙ୍କଲରେ ହସୁଛି, ଯେମିତି ହସୁଛି ଏ ଅନ୍ଧାର ।' ଉପମାଟା ମନକୁ ଛୁଇଁଦେଲା । ଯେମିତି କବିତାର ଧାଡ଼ିଟିଏ । ମନେ ପଡ଼ିଲା, କବିତା ବି ଲେଖିଥିଲି ଦିନେ । ଗୋପନ କଥା । ସେ ଦେହି ପଶୁ ଡାକ୍ତର ପଡ଼ିବା

ଜୀବନର କଥା । ପାଠ୍ନା । ନିଶ ଉଠିବାର ଗୃହ ପାଞ୍ଚବର୍ଷ ହୁଏ କି ନହୁଏ । ସେ ନିଶ ରଖୁଥିଲେ । ହଷ୍ଟେଲର ଝରକା ସାମ୍ନାରେ ଦିଶୁଥିଲା, ବଡ଼ କୋଠା କରରେ ଗୋଟାଏ କୁଜା ଖପର୍ଲ ଘର, ସେଥିରେ ଗୋଟିଏ ଗଉଡ଼ ପରିବାର, ସେଠି ଗୋଟିଏ ପରିଶ୍ରମୀ ଯୁବତୀ । ସବୁବେଳେ ତା' କାମ ବାହାରେ ବାହାରେ । ବଡ଼ ବଡ଼ ଗାଈ ବନ୍ଧା ହୁଅନ୍ତି । ସେ ତାଙ୍କୁ ଖୁଆଏ, ଦେହରେ ମର୍ଦ୍ଦନ କରେ, ବାଲ୍ଟିରେ ଦୁଧ ଦୁହେଁ, ଗବାଖ ଆସନ୍ତି ଦିନକୁ ଦି'ଥର । ଘର କାମରେ ଲାଗିଥାଏ ।

ତିନିବର୍ଷ ସେ ସେହି ପଟ୍ଟଭୂମିର ଅଂଶ ହୋଇ ରହିଥିଲା ତାଙ୍କ ଝରକା ସାମ୍ନାରେ । ଦିନେ ପଦେ କଥାଭାଷା ନାହିଁ । କିନ୍ତୁ ଅନେକଥର ସେ କୁଜା ଖପର୍ଲି ଘରେ ମିଟିମିଟି ନାଳଟେଣି ନିଭିଗଲା ଉତ୍ତାରୁ ସେ ସେହି ଘର ଆଡ଼କୁ ଅନାଇଁ ସ୍ଥିର ହୋଇ ବସି ରହନ୍ତି ଆଉ ଭାବନ୍ତି, କ'ଣ କରୁଥିବ ସେ !

ବହୁତ କବିତା ଲେଖାହୋଇ ରହିଥିଲା । ନିଜେ ପଢ଼ିଲେ ଖୁସି ଲାଗୁଥାଏ । ଆଉ କାହାକୁ ଶୁଣାଇବାକୁ ପ୍ରବୃତ୍ତି କି ସାହସ ନ ଥାଏ । ତା'ପରେ କୁଆଡ଼େ ସେ କବିତା ଖାତା ହଜିଗଲା । ସେଥିପାଇଁ ମନରେ ଦୁଃଖ ହୋଇନାହିଁ । ଖୁସିରେ ସିଟି ମାରିଲା ପରି କି ଗୀତ ପଦେ ଗୁଣୁଗୁଣୁ ହେଲାପରି ସେ କବିତା ଲେଖା ହୋଇଥିଲା ଜଗବନ୍ଧୁ ଗ୍ରନ୍ଥାବଳୀ ଛପାଇବା ଉଦ୍ଦେଶ୍ୟରେ ନୁହେଁ ।

ହାରିଲା ହାରିଲା ନିଉନ ମନକୁ କରିଲୁ ଠେଲି ଫୋପାଡ଼ି ଦେଇ କେତେବେଳୁ ସେ ଜୀବନର ଉଚ୍ଛ୍ୱାସରେ ମନେ ମନେ ଫୁଲି ଫୁଲି ନାଚକୁଦ ଅମଡ଼ାମାଡ଼ ବୁଲୁଥିଲେ ଖିଆଲ ନଥିଲା । ଖାଲି ଦିଶୁଥିଲା ଅଜ୍ଞାତର ଅଗଣିନ ସମ୍ପର୍କ ମାଳ ମାଳ ଅନ୍ଧାର ଭିତରେ ମାଳ ହୋଇ ଦୂରର ଦିଆଲି, ଯେପରିକି ସତ ସେହି ଦିଆଲିବତୀ ଅନ୍ଧାର ସତ ନୁହେଁ ।

ସଂସାର ଦୂରେଇ ଯାଇ ନାହିଁ ମୁଁ ଦୂରେଇ ଯାଇଛି ସଂସାରରୁ । ସଂସାରର ଦୁଆର ତ ସବୁଦିନେ ଖୋଲା ସବୁଠି ସବୁଦିନେ ନିମନ୍ତ୍ରଣ । ତାଙ୍କ ମନ ତାଙ୍କୁ ବୁଝାଇଲା ମୁଁ ଆଗେଇ ଗଲେ ମୁହଁ ମୋଡ଼ି ଦିଅନ୍ତା କିଏ ?

ପୁଣି ଜଳ ସୁଆଦ ଝକଳା ହେଲା ଏପାଖ ସେପାଖ ଲେଉଟ ପାଉଟ ଜୀବନ ଦର୍ଶନ ଚର୍ଚ୍ଚାର ଉପସଂହାର କଲାପରି ବଳବାନେଇ ଉଠିଲେ । "କହୁଥିଲ ପଖାଳ ପାଣିକଖାରୁ ପଚ ଗୃଉଳବଣ୍ଟା ଆଉ ପିଆଜ ଦେଇ ଭୋଜିବ ବୋଲି କରିଛ କି ନାହିଁ ?"

ସେ ଘଡ଼ି ଶୁଭିଲା ସୁଲକ୍ଷଣାଙ୍କର କରଛିର ହସ । "କହୁଥିଲେ ବସି ବସି ସେହିଆ ଭାବୁଥିଲି ପରା । ହାତଟା ବନ୍ଧୁଛି ଅରୁଆ ଗୃଉଳ ଆଉ ବାଛି ପାରିଲି ନାହିଁ । ବେଖନନକ ଗମଗ୍ । ଅଟା ଦଟା ପକାଇ ଭୋଜଦେବ ଚାଲିଲଇ କଅ ।"

ଖାଇ ବସିବା ପୂର୍ବରୁ ଆଣ୍ଠୁଆ ଗୋପାଳଙ୍କ ପୂଜା । ପ୍ରଣିପାତ କରି ଠାକୁରଙ୍କ ମୁହଁକୁ ଭାବ ଗଦ୍‌ଗଦ ହୋଇ ଚାହିଁ ରହିଲା ବେଳକୁ ମନେମନେ ଜଣାଣ କଲେ—ଗୋପାଳ ତୁଇ ଶିଖାଇଲୁ ମନୁଷ୍ୟ ଜନ୍ମରେ ସାଙ୍ଗସାଥୀ ହୋଇ ସମ୍ପର୍କ ଲଗାଇ ଆନନ୍ଦ କରିବାହିଁ ସାର, ଗୋଠର ପ୍ରତି ଗୋରୁଙ୍କ ସଙ୍ଗେ ତୋର ସମ୍ପର୍କ, ପ୍ରତି ଗଉଡ଼ ପ୍ରତି ଗଉଡ଼ୁଣୀଙ୍କ ସଙ୍ଗେ ତୋ ସମ୍ପର୍କ, ତୁ ମନଖୋଲା ସାଙ୍ଗ ମେଳ ଆଉ୍ତା ମଜଳର ଦେବତା, ମୋ ସମ୍ପର୍କ, ମୋ ସମ୍ବନ୍ଧ ମୋତେ ତୁ ଫେରାଇ ଦେ, ମୁଁ ପଦାକୁ ଯିବି ।

ସେ ଆକାଙ୍‌କ୍ଷା ସୁଲକ୍ଷଣା ଜାଣିବାର ଉପାୟ ନଥିଲା । ସେ ଦୁଆର ବନ୍ଦ ପାଖେ ଲମ୍ବ ହୋଇପଡ଼ ମୁହଁ ମାଡ଼ ଜଣାଣ କରୁଥିଲେ—ଗୋପାଳ ସ୍ବାଙ୍କୁ ଦମ୍ଭ ରଖିଥା, ସ୍ବାଙ୍କ ଶରୀର ନବେଗ ରଖିଥା, ମୋ ପିଲା-ଛୁଆଙ୍କୁ ଘଣ୍ଟ ଧୋଡ଼ାଇ ରଖିଥା, ସ୍ବାଙ୍କ ପାଦରେ ମୁଣ୍ଡ ରଖି ଯେମିତି ମୋ ଜୀବନ ଯାଉ ।

ସେଡକବେଳୁ ଜଗବନ୍ଧୁଙ୍କୁ ବାଇ ଲାଗିଥିଲା ଯେ ସେ ପଦାକୁ ଯିବେ । ଦୁଇଦିନ ପର୍ଯ୍ୟନ୍ତ କଥାଟା ମନେ ମନେ ରଖିଲେ । ତା'ପରେ ସେଦିନ ସୁଲକ୍ଷଣାଙ୍କ ଆଗରେ କହିଲା ବେଳକୁ ବ୍ରତିଜ୍ଞା ଅଟଳ ହୋଇ ସାରିଥିଲା ।

ଆୟୋଜନରେ ଆଡ଼ମ୍ବର ନଥିଲା । ଶୁକୁଟା ମା' ପଧାନୁଣୀ ଜଗବନ୍ଧୁଙ୍କ ଅନୁପସ୍ଥିତିରେ ସୁଲକ୍ଷଣାଙ୍କ ପାଖରେ ରହିବ । ମୂଲିଆ

ଗଉଡ଼ ତ ବାଗଘର କାମ କରେ, ଗୋରୁଙ୍କ ଖବର ବୁଝେ, ଜଗବନ୍ଧୁ ନଆସିବା ଯାଏ ସେ ବଡ଼ରେ ବି ଶୋଉଥିବ । ପଦିଆ ନନା ଦିନରେ ଥରେ ଆସି ଗୋପାଳଙ୍କୁ ପୂଜା କରି ଦେଇଯିବେ । କିନ୍ତୁ ଅସଲ ପୂଜା ତ କରିବେ ସୁଲକ୍ଷଣା, "ଗୋପାଳ ସେତିକିରେ ସନ୍ତୁଷ୍ଟ ହେବ", ଜଗବନ୍ଧୁ ନିର୍ଭର ଦେଇ କହିଲେ । ଏଥର ନେୟ ଦିଶାଦିନିଆ ଗସ୍ତ । ଆଗ ପାଞ୍ଚଦିନ ପାଇଁ ତିନିଖଣ୍ଡ ଲଫାପାରେ କେଆର ଅଫ୍ ପ୍ରାଣବନ୍ଧୁ, ପୁଲିସ ଇନିସପେକ୍ଟର, ଲୁକଯୀପୁର, କଟକ ବୋଲି ଠିକଣା ଲେଖାହୋଇ ରଖି ଦିଆହେଲା, ମାଧବ ଗାଁରେ, ଡାକଘରେ ପକାଇବା ଭାର ରହିଲା ପଦିଆ ନନା ଉପରେ । ବାହାରିଲା ବହୁକାଳର ଗସ୍ତବୁଲା ସାନ ସୁଟ୍‌କେଶଟିଏ, ରଙ୍ଗ ଗୁଡ଼ିଯାଇଛି । ଆଗ ସେଥିରେ ପଶିଲା ପୁରୁଣା ଧଳା ପାନ ଛେଚୁଣି, ଖଇରିଆ ଭଲ ସୂତାରେ ବୁଣା ମୁଣ୍ଡବନ୍ଧା ମଫଲର, ବଡ଼ ବୋହୂ ନୂଆ ନୂଆ ଆସିଲା ବେଳେ ବୁଣି ଦେଇଥିଲା, କମଳା ବର୍ଣ୍ଣର ଉଲ୍ ସୂତାରେ ବୁଣା ଗୋଟାଏ ପୁରୁଣା ସ୍ୱେଟର, ତିରିଶି ବର୍ଷ ତଳେ ସୁଲକ୍ଷଣା ନିଜେ ବୁଣିଥିଲେ, ଠାଏ ଠାଏ କଣା କଣା ହୋଇଯାଇଛି । ଶୀତ ନାହିଁ, କିନ୍ତୁ ଶୀତୁଆ ଲାଗିପାରେ । ତେଣୁ ଏ ଦେହ ରକ୍ଷା ବ୍ୟବସ୍ଥା । ଗୋଟାଏ ଟିଣରେ ପଶିଲା କିଛି ଚୁଡ଼ାଭଜା ଚୂନା, ଚିନି ଗୋଳା ହୋଇଛି । କିଛି ଶୁଣ୍ଠି ଓ ଶୁଖିଲା ମୁଥାମୂଳ ଗୁଣ୍ଡ, ସେଥିରୁ ଏକ ଚୁମୁଟି ଚୁହାରେ ପଡ଼େ, ମଶାରି ଟାଙ୍ଗିବାକୁ କଣ୍ଟା, କନାଧଡ଼ି, କାଳେ କି ଆବଶ୍ୟକ ପଡ଼ିବ ବୋଲି ଗୋଟାଏ ବାଙ୍କୁଲି ଛୁରୀ, ସେ ହଜାରିବାଗରେ କଣା ହୋଇଥିଲା, ସେଥିରେ ଅନେକ ପଦାର୍ଥ କଟା ହୋଇଛି । ତା'ପରେ ଲୁଗାପଟା ସଜାହୋଇ ଥୁଆହେଲା, ସେଥିଭିତରୁ ଖଣ୍ଡିଏ ଗୁଣ୍ଡାଳ ପରି କଷା ହୋଇଥିବା ପୁରୁଣା ଗାମୁଛା । ଉପରେ ଡାଲାର ଭିତର ପଟେ ରହିଲା ଜଗନ୍ନାଥ ଛବି ଖଣ୍ଡିଏ । ସତରଞ୍ଜି, ମଶାରି, ଯୋଡ଼ିଏ କମ୍ବଳ, ବିଛଣା ଚଦର ଓ ତକିଆ ହୋଇ ବିଛଣା ବନ୍ଧାହେଲା ।

"ତାଙ୍କ ପିଲାଙ୍କ ପାଇଁ କ'ଣ ନେବ ?" ସୁଲକ୍ଷଣା ପଚାରିଲେ ।

"ଗୋପାଳର ଆଶୀର୍ବାଦ"

"ତା ତ ବାସ୍ତବ । ନେବେ, ହାତରେ କିଛି ଗୋଟାଏ ତ ନେବ ? ହଉ ଯେଉଁଠୁ ଟେଲିମ୍ୟୁସ୍ କ ବସ୍କୁଟ୍ ଡବାଟାଏ କିଣି କରି ନେବ ।"

"ନା, ନେବାକୁ ଯଦି ପଡ଼ିବ କିଛି ଘରର ଜିନିଷ ନେଲେ ଭଲ ହେବ, ସହରରେ ଯାହା ମିଳେନାହିଁ, ହେଲ ଯେମିତି ଆମ ଗଛର ସଜନା ଛୁଇଁ । ଏ ଦିନେ କାହିଁ ପାଇବେ ? ପାଇଲେ ବି ଏତେ ମୋଟା ଏତେ ମାଉଁସିଆ ଛୁଇଁ କାହୁଁ ମିଳିବ ? ଆମ୍ବଡ଼ା ଆଉ ହିଁ, ଆମ ବାରି ଖଡ଼ା ।"

'ଏଃ ! ଖଡ଼ା ନେଇ କଟକ ଯିବେ ! ଶୁଣ୍ଣମ !'

"ତେବେମ ଜାଣିନା, ଏତେ ମିଠା ଖଡ଼ା ସେମାନେ କାହୁଁ ପାଇବେ ? ଖଡ଼ା ନୁହେଁ ତ ଶନ୍ତାଙ୍ଗ । ମୁଁ କହୁଚ ଶୁଣ ସଜାଡ଼ି । ସେ ଯେଉଁ ପ୍ରକାଣ୍ଡ ପ୍ରକାଣ୍ଡ ବୁଡ଼ା କାକୁଡ଼ି ଦଗଣ୍ଡା ଅଛି, ହଳଦି ଗରଗର—"

'ବୁଡ଼ା କାକୁଡ଼ିଗୁଡ଼ାକ କେଉଁ ପସନ୍ଦରେ ନେବ ?'

"ଆରେ ବାବୁ ବୁଡ଼ା ହୋଇଗଲେ ସବୁ ଜିନିଷ ବେପସନ୍ଦ ହୁଏ ନାହିଁ ମ । ମୋ କଥା ଶୁଣ । ଅସଲ ସୁନ୍ଦରଗଡ଼ କାକୁଡ଼ିର ବିହନରୁ ହୋଇଛି । ନଜାଣିବା ଲୋକ କହିବ ହଳଦିବଟା ଶିଳୁପଟା । ଶାକର କ ରାଇ କଲେ ତା ସୁଆଦ ତା ବାସ୍ନା ଆଉ କେଉଁଠୁ କଏ ପାଇବ ? ଆହା ସେ ପିଲଏ କାହୁଁ ପାଉଥିବେ ବିଚରା ।"

'ହଉ ତମ ଇଚ୍ଛା ।'

'କାଗେଜଲେମ୍ବୁ ପୁଳାଏ ତ ଅବଶ୍ୟ ଯିବ । ହଁ ଭୁଲିଗଲି, ବଜ୍ରବାଣ ନଡ଼ିଆ ଦଗଣ୍ଡା ।'

'ନଡ଼ିଆ କଟକରେ ଅପ୍ରାପତ !'

'ଆରେ ବାବୁ, ନଡ଼ିଆ ସବୁଠି ମିଳେ, ହେଲେ ପ୍ରାଚୀ କୂଳର ବଜ୍ରବାଣ ନଡ଼ିଆ ସେମାନେ କାହୁଁ ପାଉଥିବେ ?'

'ତମ ଇଚ୍ଛା । ତେବେ ମଫସଲ ଜିନଷ ନେବାକୁ ମନ କଲେ ନେଇଥାନ୍ତ ବଡ଼ ଘିଅ ସରୁଚୁଡ଼ା ।'

ଅସହଷ୍ଣୁ ହୋଇ ଜଗବନ୍ଧୁ କହଲେ ଯାହା ହୋଇପାରିବ ନାହିଁ ଖାଲି ତୁମେ ସେଇଆ କହବ । ମୁଁ ଯାହା କହୁଛି ସେଇଆ ସଜାଡ଼ ।

ବସ୍ତା ସଜଡ଼ା ହେଲା । ଜଗବନ୍ଧୁ ବାହାରିଲେ ।

ମୂଳ ବେହେର ବସ୍ତା ବଛଣା ମୁଣ୍ଡକେଶ ବୋହ ଦ' କୋଶ ଦୂରରେ ସଡ଼କରେ ପହଞ୍ଚାଇ ଦେବାକୁ ତାଙ୍କ ସଙ୍ଗରେ ଚାଲିଲା । ସଡ଼କରେ ପହଞ୍ଚିଲେ ମଟର ଧରିହେବ ।

କୋଶେ ବାଟ ନପୂରୁଣୁ ହାଲିଆ ଲଗିଲା । ମୂଳିଆ ପଚାଶି ବର୍ଷର ଟେଣ୍ଟା । ବୋଝ ବୋହ ବୁଢ଼ାଙ୍କ ସଙ୍ଗେ ତାଦ ଚକାଇ ଚକାଇ ମନ୍ଥର ଗତିରେ ଚାଲିବାକୁ ତାକୁ ଅଡ଼ୁଆ ଲଗୁଥାଏ । ଛାଡ଼ଦେଲେ ସେ ଉଡ଼ଯାଆନ୍ତା । ନିଜକୁ ଯେତେ ବେକ ବେକ ବାଟ ଚାଲୁଥିଲେ ସୁଦ୍ଧା ସବୁବେଳେ ସେ ଦଶ ହାତ ଆଗରେ ଛେକୁ ଅନାଏଁ । କିନ୍ତୁ ବୁଢ଼ାଙ୍କୁ ଛାଡ଼ଦେଇ ଆଗ ବଳି ଚାଲିଯିବାକୁ ତାର ମନ ହୁଏନାହିଁ । ନଣ୍ଡାପଦା ଗାଁ ଗହିର ପାଖ ବିଡ଼ ବରଗଛ ତଳେ ବୁଢ଼ା ଝାଳ ମାରିଲେ । ସତେ ଯେମିତ ପାହାଡ଼ ଘାଟି ଚଢ଼ି ଚଢ଼ି ସେ ଆସିଛନ୍ତ । ଛାତି ଦମ ଦମ ।

ଗପ ଆରମ୍ଭ କଲେ ବୁଝିଲୁ ମୂଳି, ଗୋଟାଏ କଥା ମନେପଡ଼ୁଛି । ସେତେବେଳେ ରଇରଙ୍ଗପୁରରେ ଥାଏଁ । ସଞ୍ଜବୁଡ଼ ବର୍ଷା ଗାଳୁଛି ଖବର ଆସିଲା ଛ'କୋଶ ଦୂରରେ ଗାଈଟିଏ ଛୁଆ ଜନ୍ମକର ପାରୁନାହିଁ, ପେଟରେ ବାଛୁରିଟା ମରିଯାଇଛି କ କଣ ଘାଟି ଚଢ଼ି ଓହ୍ଲେଇ ଧାଇଁ ଧାଇଁ ତା ମାଲିକ ଆସିଥିଲା ବାଙ୍କ ମୁଣ୍ଡା ଜାତିର ଆଦିବାସୀଟିଏ । ଆସି ପାରିବ ନାହିଁ କ ସାଇକଲ ଯେଠିକ ଯିବନାହିଁ । ମୁଁ ଅପେକ୍ଷା ନକରି ବାହାରି ପଡ଼ିଲି । ଯନ୍ତ୍ରପାତିତକ ସେ ବୋହିଲା । ଏମିତ ଛତା ଖଣ୍ଡିଏ ଧରି ମୁଁ ଚାଲିଲି । କହବ କଣ, ଏଡ଼େ ଅଖାଡ଼ୁଆ ଛ'କୋଶ ବାଟ ଚାଲି ଯିବାକୁ ଲଗିଲା ମୋଟେ ଅଢ଼େଇ ଘଣ୍ଟା । ଗାଈର ପ୍ରାଣ ତ ରକ୍ଷାହେଲା, ସେ ମୁଣ୍ଡା ବଚରା ଗାଁଯାକ କହ ବୁଲିଲା ଏମିତ ବାଟ ଚାଲିବା ଲୋକ ଆଦିବାସୀଙ୍କ

ଭିତରେ ବି ଦେଖାନାହିଁ । ବାଟ ଚାଲିବା ଅଭ୍ୟାସ ଯେତେବେଳେ ଥିଲା । ଚାଲୁଥିଲେ ସାଙ୍ଗଲୋକ କାହିଁ କେତେ ପଛରେ ପଡ଼ି ରହୁଥିଲେ ।

ବଟାରୁ ପାନ ଖଣ୍ଡିଏ କଡ଼ା ହୋଇ ଛେଚୁ ହେଲା । ବଟାରେ ପାନ ଥିବାଯାକେ ସୁଲକ୍ଷଣାଙ୍କ ସ୍ପର୍ଶ ବି ପାଖେ ପାଖେ ଅଛି ।

ପୁଣି କହିଲେ, "ଯେ ମନେ ବାରମ୍ବାର ଆକଟ କରନ୍ତି ଦେହକୁ ରକ୍ଷି ଥୋଇ ଚଳ, ହୁଣ୍ଡାମି କର ନାହିଁ । ମୁଁ କଣ ତାଙ୍କର ପର ହୋଇଛି ଯେ କାନ ଯୋଡ଼ି ଘରେ ବସିଥିବି ? ଦେହରେ ବଳ ଥିବାଯାକେ ମନ ହେଉଥାଏ ପଥର ଭାଙ୍ଗନ୍ତି ପାହାଡ଼ ଓଲଟାନ୍ତି । ନା କଣ ?"

ମୂଳ କହିଲା, ଡେରି କଲେ ତେଣେ ମଟରଟା ପଳେଇ ଯିବ ଚାଲ, ଯିବା ।

ବାଟ ଅଧକୋଶ ଚାଲିଲା ପରେ ସଡ଼କରେ ଦୋକାନ ଘରେ ଅଧଲୋଟାଏ ପାଣି ପିଆଗଲା । ତା'ପରେ ମନ ହେଲା ଭୁହା । କଡ଼ା କରି ତିଆରି କର, ସେ କହିଲେ ।

ମଟର ଆସିଲା । ଜାଗା ମିଳିଲା । ବାଟରେ ଟିକିଏ ଆଖି ଖୋଲୁ ଖୋଲୁ ନିଦ ଝାଙ୍କେ, ମେଘ ଟଳ ଟଳ ହୁଏ, ଭାଙ୍ଗି ପଡ଼େ, ମୁଣ୍ଡ ନଡ଼ ନଡ଼ ହୋଇ ଏକରୁ ସେକରୁ ହୁଏ । ପମ୍ପ କଲାପରି ଗାଲ ଫୁଲେ ପୁଣି ଆପେ ହୁଏ । ପାନରସ ଆସ୍ତେ ଆସ୍ତେ ନିଗିଡ଼ି ପଡ଼େ ଭୁଡି ପକେଟ ଉପରେକୁ ।

କିନ୍ତୁ ମନ ଭିତରେ ଉତ୍ସାହ ଜଳୁଥାଏ । ଲାଗୁଥାଏ ଯେମିତି ଅଭ୍ୟସ୍ତଗତରେ ସେ ଗସ୍ତବୁଲି ବାହାରିଛନ୍ତି । ଏଠି ଏ ସଡ଼କର ଦୁଇକରେ ଗଛ, ଗାଁ, କ୍ଷେତ । କେତେଠି କେତେ ନୂଆ ନୂଆ ଘର । କେତେ ଅଚହ୍ନା ମଣିଷ ଚେହେରା । କିନ୍ତୁ ବାହାରର ଦୃଶ୍ୟକୁ ଯେତେ ନିଘା ନଥିଲା । ସ୍ୱପ୍ନପରି ଅତୀତର ଟୁଣ୍ଡା ଭୁଣ୍ଡା ସ୍ମୃତି ଦଶି ଦଶି ଯାଉଛି । ସେ ଗସ୍ତରେ ବୁଲୁଛନ୍ତି । ପାହାଡ଼, ଜଙ୍ଗଲ ସ୍ଥାନେ ସ୍ଥାନେ କେତେ ପଲ୍ଲୀ, କେତେ ମଫସଲ ସହର । ବସ୍ ଚାଲିଛି । ରେଳ ଚାଲିଛି । କେତେବେଳେ ସାଇକଲ ଚଢ଼ି ବୁଲିଛନ୍ତି, କେତେବେଳେ ପାଦରେ । ସବୁଠି ରହିବାକୁ

ସ୍ଥଳୀ । ଅଟଳ୍ପା ଲଗୁନାହିଁ । ଗତିରେ ପ୍ରକାଶ ପାଉଛି ଜୀବନର ଉଲ୍ଲାସ । ପାଉଛି ତ ।

ସେ ଉଲ୍ଲାସ ଅଳ୍ପକେ ହ୍ରାସ ହୋଇ ଆସିଲା ଯେତେବେଳେ ମହଜାରୀଙ୍କ ବକର ବକର ଓ ଠେଲାପେଲାରେ ନେଲେଙ୍ଗା-ପେଣ୍ଠାରେ ତାଙ୍କ ନବ ସମ୍ପୂର୍ଣ୍ଣ ରୂପେ ଭାଙ୍ଗିଗଲା । ଜଗବନ୍ଧୁ ସେମାନଙ୍କ କଥାକୁ କାନେଇଲେ । ମକଦ୍ଦମାବାଲା ପଞ୍ଜାକୁ ପଞ୍ଜା । କଚେରୀରେ ତାରିଖ ଅଛି । ଚାକିରି, ବେପାର, ଅନୁସରଣ, ଡାକ୍ତରଖାନା । ଲୋକଙ୍କର ନାନା କାମ । କେଉଁଠାକୁ କ ଉଦ୍ଦେଶ୍ୟରେ ଯିବାକୁ ପଡ଼ିବ ସବୁ ନିର୍ଦ୍ଦିଷ୍ଟ । ଜଗବନ୍ଧୁଙ୍କୁ ଦୁର୍ବଳ ଲାଗିଲା । ଏକାଥରେ ମନେ ପଡ଼ିଗଲେ ଘରେ ସୁଲକ୍ଷଣା, ଦୂରରେ ଦୂରରେ ତାଙ୍କ ପିଲାଏ । କଏ କୁଆଡ଼େ ରହିଲେ । 'ଆଉ ମୁଁ ଯାଉଛି କୁଆଡ଼େ ? ହଁ ହଁ, କଟକ । ପ୍ରାଣବନ୍ଧୁ, ବ୍ରଜବନ୍ଧୁ, ବନ୍ଧୁବାନ୍ଧବ, ଟିକିଏ ଦେଖାଚାହିଁ, ସେ କ'ଣ କର୍ତ୍ତବ୍ୟ ନୁହେଁ ?'

ଉତ୍ସାହ ଉଲ୍ଲାସରେ ଯେଉଁ ଯାତ୍ରା ଆରମ୍ଭ ହୋଇଥିଲା ତାକୁ ତିଷ୍ଠି ହେବାକୁ ପଡ଼ିଲା କର୍ତ୍ତବ୍ୟବୋଧଦ୍ୱାରା ।

ଗାଡ଼ି ଭିତରେ କେମିତି ଛଟପଟ ଲାଗୁଛି । କେହି ଏଠି ତାଙ୍କ ବ୍ୟକ୍ତିତ୍ୱକୁ ଖାତିର କରୁନାହିଁ । ଦଣ୍ଡବତ ତ ଦଣ୍ଡବତ, କେହି ତାଙ୍କୁ ଅନାଉଁ ନାହିଁ ସୁଦ୍ଧା । ଟୋକାଗୁଡ଼ାକଙ୍କର ପ୍ୟାଣ୍ଟ ହାଓ୍ୱାଇ ପିନ୍ଧା ଛନଛନ ଚେହେରା ତାଙ୍କୁ ସତେକି ଖଟେଇ ହେଉଛି । ସେ ପଦାକୁ ଅନାଇଁ ରହିଲେ ।

ଏଣେ ବେଳୁବେଳ ଗାଡ଼ି ଭିତରେ ତାଙ୍କ ଶରୀର ଉପରେ ଚାପ ବଢ଼ି ବଢ଼ି ଚାଲିଛି । ପଛଆଡ଼ୁ କାହା ଆଣ୍ଠୁ, କାନ୍ଧ ଉପରେ କାହାର ଝୁଲୁଣାର ଓଜନ, ପିଠି ଉପରେ କାହା ଛତା ଅଗର ସେବା । ଜାଙ୍ଗି ଆହୁଦା ଭିତରେ ଗୋଲୁ ଗୋଠ ଖୁନ୍ଦ ଖୁନ୍ଦ ମୁରିଇଲା ପରେ ଆହୁରି ଆହୁରି ମଣିଷ ପୂରି ହେଉଛି । ବସିବା ଲୋକଙ୍କ ଛଡ଼ା ଖୁନ୍ଦାଖୁନ୍ଦି ହୋଇ ଠିଆହୋଇ ରହିଲେଣି ଧାଡ଼ିଏ ଗାଡ଼ିର ଏମୁଣ୍ଡୁ ସେମୁଣ୍ଡ ।

'ଆଉ ଟିକଏ ତ, ସହିଯିବାକୁ ପଡ଼ିବ' ସେ ମନକୁମନ ସାନ୍ତ୍ୱନା ଦେଲେ ।

ପୁଣି ମନେପଡ଼ିଗଲା ଆଉ ଗୋଟିଏ କଥା, ଜୀବନଯାକ ଆଉ ଟିକଏ ତ ଆଉ ଟିକଏ ତ କହି କହି ମଣିଷ ସବୁ ସହେ, ପର ପାଖେ ଗୋଲାମି, ଅତ୍ୟାଚାର, ଅବିଚାର, ନିଜର ସବୁ ଦୁର୍ଦ୍ଦଶା । ଚାକିରିରେ ତାଙ୍କ ତଳେ ଥିବା ଲୋକମାନଙ୍କୁ ତାଙ୍କ ଉପରକୁ ଡିଆଁଇଦେଇ ଯେତେବେଳେ ପଦୋନ୍ନତି କରିଦିଆଗଲା ସେତେବେଳେ ସେ ଚାକିରି ଛାଡ଼ି ଦେବାକୁ ତାଙ୍କର ଝୁଙ୍କ ବଳିଥିଲା; କିନ୍ତୁ ଇସ୍ତଫା ଲେଖିବାକୁ ହାତ ଗଲାନାହିଁ । ସେତେବେଳେ ସୁଲକ୍ଷଣା ବୁଝାଇଥିଲେ, 'ଆଉ କଏ ମାଛଭାତ ଖାଇଲା ବୋଲି ଛଳ କରି ଆମେ ଆମ ଶାଗଭାତ କାହିଁକି ଛାଡ଼ିଦେବା ?' କିନ୍ତୁ ସେ ମନେ ଚକୋଉଥାନ୍ତି, କେଡ଼େ ଅପମାନ । ସତେ ଯେମିତି ସେ ଚାକିରିରେ ଅଛନ୍ତି । ଆଘାତଟା କାଲି ସକାଳେ ତାଙ୍କ ଦେହରେ ବାଜନ୍ତା, ଦରଜ ଯିବ କ'ଣ, ହାକୁ ହାକୁ ।

ସେ ଚିନ୍ତାରୁ ଫେରିଆସି କେତେବେଳକୁ ସେ ନିଜ ଅନୁପସ୍ଥିତି ଯୋଗୁଁ ଘରର ସମସ୍ୟା । କଥା ଭାବୁଛନ୍ତି । ବୁଝିପାରିଲେ ତାଙ୍କୁ କ'ଣ ଘାରୁଛି । ସୁଲକ୍ଷଣା ଚଳିବେ କେମିତି ? ନିସ୍ଥାଟିଆ ଥାନ । ଅନ୍ତେବାଟାଏ ପର । କେହି କୁଆଡ଼େ ନାହିଁ । ମେଘ ଅନ୍ଧାର ରାତି । ଧର, ଶୁକୁଟା ମା ନଆସିବ, ମୂଳ ଗଉଡ଼ ନଆସିବ, ମାଇପିଟା ଛନ୍ଦିବାନ୍ଧି ହେଉଥିବ । ଧର, ଓରଗଣ୍ଡି ଚୋର ପଶିବେ । ଶୁନଆଁରେ ମହିଧିଟାର ପ୍ରାଣବାୟୁ ଉଡ଼ିଯାଇପାରେ । ଚୋର ନଆସୁ, ଖାଲି ଗଛ ଛାଇକି ଦେଖି ଘୋ ଲେଟେଣା ହୋଇପାରେ । ଏକୁଟିଆ ନିଜ ପାଇଁ ରାନ୍ଧିବାକୁ ମନରେ ସରାଗ ଆସିବ ନାହିଁ, ଓଳିଏ ଦେଲେ ପଖାଳ କରି ଭିଟାଓଳି ଚଳାଇ ଦେବାକୁ ବୁଦ୍ଧିବ । ଧର ତାଙ୍କୁ ହେବ ଜର, ପାଣିଟୋପାଏ ଦେବାକୁ କେହି ଲୋକ ନଥିବେ ।

କଟକ ସହର ପାଖ ହେଉ ହେଉ ପଦାରେ ଯେତିକି ଯେତିକି ଗହଳି ହେଉଥାଏ ସେତିକି ସେତିକି ନିସ୍ଥାଟିଆ ପଡ଼ିଯାଇ ସେ ଆପଣା ଘର କଥା ଭାବୁଥିଲେ ।

ହଁ, ଘରେ ରହୁଁର ନପଶିଲେ ସୁଦ୍ଧା ବାହାରେ ପଶି ଉଜାଡ଼ିବା ଅସମ୍ଭବ ନୁହେଁ । ଜାଲ ପାଇଁ ବାଡ଼ ଭାଙ୍ଗିନେବେ । ନଡ଼ିଆ, ପଣସ କଠା, କଦଳୀ, କାଜୁ ସବୁ ତୋଳି ନେଇଯିବେ । ଖୋପା ଜାଲ ପକାଇ ମାଛତକ ମାରି ନେଇଯିବେ । ଗୋରୁ ଛଡ଼ାଙ୍କୁ ବି ଘେରେଇ ନେଇଯିବେ । ଲାଗିଲା ଯେତେ ଯେମିତି କଳା କଳା ଗୁଳ ପରି ବାଉ ଭିତରେ ଲୋକେ ଏକର ସେକର ହେଉଛନ୍ତି, ଉଜାଡ଼ୁଛନ୍ତି ।

'ଗୋପାଳ, ତୁଇ ଅଛୁ, ତୁଇ ଜଗିଥିବୁ', ସେ ମନେ ମନେ କହିଲେ । ଲୁଗା କାନିରେ କପାଳରୁ ଝାଳ ପୋଛିଲେ ।

'ବକ୍ସିବାର ।'

ମଠରବାଲର ଶବ୍ଦାରଟା ଠିକ୍ ତାଙ୍କ କାନପାଖେ ଶୁଭିଲା । ମନେପଡ଼ିଲା ସେ ତୁଳସୀପୁର ଯିବା ବାଟରେ ଓହ୍ଲାଇବେ । ଏଥର କୁନାର ଘର ମନେପଡ଼ିଲା । ତାଙ୍କ ସାନଭାଇ ପ୍ରାଣବନ୍ଧୁଙ୍କ ଡାକ ନାଁ କୁନା । ପାଞ୍ଚବର୍ଷ ତଳେ ତା ଝିଅ ଝୁମୀକୁ ବାହାକଲାବେଳେ ସେ ତା' ଘରକୁ ଯାଇଥିଲେ । ଝୁମୀ ବର ଇଂଜିନିୟର, ବୁର୍ଲାରେ ଥାଏ । ତା'ର ଯୋଡ଼ିଏ ପୁଅ । କୁନା ! କୁନା ! କୁନା !' ମନକୁ ନାଁଟାକୁ ବାରମ୍ବାର ଉଚ୍ଚାରଣ କରି କରି ସେ ଅତୀତକୁ ଫେରାଇବାକୁ ଚେଷ୍ଟା କଲେ । ଦେହଟି ପୂରିଲା ପୂରିଲା, ଭୋଜନକୁ ପେଟୁ, ନିଦକୁ କୁମ୍ଭକର୍ଣ୍ଣ, ସବୁ କାମକୁ ମାନ୍ଦା, ଅଳସୁଆ, ବୁଦ୍ଧିରେ ଓଲା ଆଁପିଆ, ତା'ର ସମସ୍ତେ ସବୁ କନଷ ନେଇ ପଳାନ୍ତୁ ସେ ଆପତ୍ତି କରେ ନାହିଁ । ଅତି ଶାନ୍ତ, ଧୀରସ୍ଥିର । ଦଶପଦ ଶୋଧି ଦେଇଗଲେ ସେ ଖାଲି ଡବ ଡବ ଆଖିରେ ଅନାଇଥାଏ । କିଛି କହେ ନାହିଁ । ତେଣୁ ତା' ଉପରେ ରାଗି ହୁଏ ନାହିଁ । ସେହି କୁନା ହେଲା ପୁଲିସ । ଭଲ ନାଁ ଅଛି । ଲୋକେ କହନ୍ତି 'କଡ଼ା ହାକିମ' । କେହି କେହି କହନ୍ତି ଗୁଣ୍ଡାଙ୍କ ଯମ । ଆଉ କିଏ କହେ ଏତେ ବୁଦ୍ଧି । ହୁଏତ ସେମାନେ ଜାଣିଥିବେ । ସେହି କୁନାର ପାଞ୍ଚପୁଅ ତିନିଝିଅ । ଉମା ଡାକ୍ତରାଟି, ଝୁମା ପ୍ରଫେସର, ଝୁମୀ ତ ବାହାହେଲାଣି । ବାକି ପାଞ୍ଚୋଟି । ତାଙ୍କ ନାଁ ସବୁ କଅଣଟି ?

ମନେ ନପଡ଼ୁ । ବାବୁଲ୍, ବୁଢ଼ା, ପୁଅ, ମା', ବୁଢ଼ୀ ବୋଲି ଡାକ ଚଳାଇ ନେଇଥିବ । ତା' ପରେ ନାଁ ନିଜେ ଜଣାପଡ଼ିବ ।

ହେଲା ରିକ୍ସା । ରିକ୍ସାରେ ବସିବାଟା ଅଖଣ୍ଡ ହେଲା । ସୁଟକେଶ ଓ ତା' ଉପରେ ବିଛଣା ଅଡୁଆ କରିନଥାଆନ୍ତା । ଅଡୁଆ ମୋଇ ବସ୍ତାଟା । ବିଛଣା ଉପରେ ବସ୍ତା ଲଦା ହେଲା । ଝିଙ୍କା ମୋଟା ଖଣ୍ଡାଗଛ ବହୁତ ଜାଗା ମାଡ଼ିବସି ବସ୍ତାକୁ ଟେକିଦେଇଛି । ବଜ୍ରବାଣ ନଡ଼ିଆ ଆବୁ ଆବୁ ହୋଇ ବାହାରିଛି । ଗୋଡ଼ ଦି'ଟାକୁ ପଛନଠୁଁ ଉପରକୁ ଟେକି ରଖିବାକୁ ପଡ଼ିଲା ।

ଏଇଠି ରଖରେ ।

ଭଲ ଘର । ପ୍ରକାଣ୍ଡ ଦୋମହଲା । ରାଜପ୍ରାସାଦ ପରି । ବାପା ବୋଉ ଯାହା ରହିଲେ ନାହିଁ ଦେଖିଥାଆନ୍ତେ । ଏତେ ଜାଗା । ଏମିତି ବଗିଚା । ଜାତି ଜାତି ଫୁଲଫଳ । ନନ୍ଦନ କାନନ । ଘର ଆଗରେ କେତେ ସୁନ୍ଦର ଗୁନ୍ଦୁଆ ପରି ଲୁହା ଓ ସିମେଣ୍ଟରେ ତିଆରି ହୋଇଛି । ଗୁଆଗଛ ପରି ସଳଖ ଡେଙ୍ଗା ଡେଙ୍ଗା । ଆଉ କାଚଖମ୍ବ ପରି ଖମ୍ବ-ଗୁଡ଼ିକ, ମୋଜାଇକ ଚଟାଣ । କୁନାର ଘର ।

ଝିମ୍ରୀ ବରଘର ବେଳେ ଏ ସାମ୍ନା ପଟଟା ହୋଇନଥିଲା । ଆଖି ପଡ଼ିଗଲା ଘର ଉପରର ଗୋଟିଏ ଫଳକ ଉପରେ, ଲେଖା ହୋଇଛି 'କୁନ୍ତଳା-ନିବାସ ।'

କୁନ୍ତଳା ? କୁନ୍ତଳା ? କିଏ ସେ ? ଓହୋ, ବୋହୂଙ୍କ ନାଁ ହୋଇଥିବ । କୁନାର ସ୍ତ୍ରୀ । ତାଙ୍କରି ନାଁରେ ତେବେ ଘର । କୁନାର ବୁଦ୍ଧି ଅଛି ।

କଡ଼ ଝାଙ୍କି ଝାଙ୍କି ଯୋଡ଼ାଏ କୁକୁର ଦାନ୍ତ ଦେଖାଇ ଭୁକୁଛନ୍ତି । ବାଃ ବାଃ, ଭଲ ବିଲାତି କୁକୁର । ଇଂରେଜୀରେ ଭୁକୁଛନ୍ତି । ହୁଏତ କୁନା ଏମାନଙ୍କୁ ତାଲିମ କରିଥିବ ଶୁଙ୍ଘି ଶୁଙ୍ଘି ଚୋରକୁ ଖୁଣ୍ଟୀଙ୍କୁ ଧରିବାକୁ । ରାତି ହେଲେ କଣ୍ଠା ଖାଇଯିବେ । ସେ ଆଡୁ ମଟେଇ ମଟେଇ ଗୁଡ଼କଟିଏ ଆସୁଛି ।

ସେ ମୁଣ୍ଡରେ ପିଲା ତନୋଟି ଚେହିଁଲୁଛନ୍ତି, ସେମାନେ ଟିକିଏ ଅନାଇ ଦେଇ ପୁଣି ନିଜ ଖେଳରେ ମନ ଦେଲେଣି ।

ଆପଣ କାହାକୁ ଖୋଜୁଛନ୍ତି ? ଗୃହର ପଚାରିଲା ।

ଖୋଜୁଛି ?

ଆପଣଙ୍କ ଘର କେଉଁଠି ?

ଆପଣ—ଆପଣ—ଆପଣ ।

ସତେ ତ ସେ କାହୁଁ ଜାଣିବ ?

କିନ୍ତୁ ଏତେ ଉଦାର ହେଲେ ବି ଭଲ ଲାଗିଲା ନାହିଁ । ଟିକିଏ ଅଟକିଯାଇ କହିଲେ ହୁଁ ।

କିନ୍ତୁ ତେଣୁ ଅଠର ବର୍ଷର ଟୋକାଟିଏ ଦଉଡ଼ ଦଉଡ଼ ଆସୁଛି, ଗୋଡ ତଳେ ପଡ଼ିଯାଇ ସିଧା ଠିଆହେଲା । କହିଲା, 'ବଡ଼ବାପା, ବୋଉ ଗୋଡ଼ତଳେ ପଡ଼ୁଛି ।'

ଜଗବନ୍ଧୁ ଆଶୀର୍ବାଦ କରି ଧୀରେ ତା' ମୁହଁକୁ ଅନାଇଁଲେ । ହସି ଦେଇ ସେ କହିଲା ମୁଁ ବୁନା ।

ବୁନା । ଓ, ହୁଁ ହୁଁ—ଅଇଗ୍ଲା କ'ଣ ପଢ଼ୁଛ । ତୁ ଚଳିବଟେଁ ଆପେ ଆପେ ତୁମେ ହୋଇଗଲା ।

ବୁନୁ କହିଲା ବି. ଏସ୍‌ସି. ପଢ଼ୁଛି ।

ବାଃ ବାଃ ଭାରି ଭଲ । ତା' ମୁହଁକୁ ଆଉଁସିବାକୁ ହାତ ଟେକିଲେ । ବୁନା ତାଙ୍କଠୁଁ ଛ'ଇଞ୍ଚ ଢେଙ୍ଗା ।

ଜଣାଗଲା, ବୁନା ନାହିଁ ପଡ଼ାକୁ ଯାଇଛି ।

ବୁନା ତାଙ୍କ ପରିଚର୍ଯ୍ୟାର ଭାର ନେଲା ।

ତା' ତଳେ ରୁମୀ, ଆର୍ଟ୍‌ସ କ୍ଲାସରେ ପଢ଼େ, ତା' ତଳେ ମାମୀ, ତା'ର ମାଇନର କ୍ଲାସ୍, ତା' ତଳେ ଟୁନା, ତା'ର ଚତୁର୍ଥ ଶ୍ରେଣୀ । ପରିଚୟ ଆରମ୍ଭ ହେଲା । ବସ୍ତା ଖୋଲାଗଲା ।

ଏଗୁଡ଼ାକ ଯାନ ସାନ ପିଜୁଳି, ଟୁନା ମନ୍ତବ୍ୟ ଦେଲା, ଆମ ବାରି ପିଜୁଳି ପ୍ରାୟ ଦ୍ୱି'ଗୁଣ ବଡ଼, ଆଉ ସେଉଁ ମିଠା । ତଥାପି ସେହି ପିଜୁଳି

ଛଡ଼ାଛଡ଼ି ହେଉ ହେଉ ରୁମୀ, ମାମୀ ଓ ନୂନାଙ୍କର ଭଲ ଲାଗିଗଲା, କାରଣ ତା' ସଙ୍ଖ୍ୟା ଭିତରେ ସମ୍ପୂର୍ଣ୍ଣରୂପେ ବର୍ଜନୀୟ ନୁହେଁ ଓ ସେଥିରେ ହଳଦୀ ରଙ୍ଗ ରଙ୍ଗ ହୋଇଥିଲା ଗୋଟିଏ ପିଜୁଲି । ଅନ୍ୟାନ୍ୟ ପଦାର୍ଥରେ ସେମାନଙ୍କର ମନ ନଥିଲା ।

ସେମାନେ ଯିଏ ଯୁଆଡ଼େ ଆପଣା, କାର୍ଯ୍ୟରେ ଗଲେ । ଏକୁଟିଆ ବସି ରହିଲେ ବୁନା ଓ ଜଗବନ୍ଧୁ । ବୁନା ଅପେକ୍ଷା କରି ବସିଛି, ଯାହା ପ୍ରଶ୍ନ ପଚରାହେବ ସେ ତା' ଉତ୍ତର ଦେବ ।

କିନ୍ତୁ ପ୍ରଶ୍ନ ତ ହେଲାହିଁ ନାହିଁ ।

ଚାହା, ଜଳଖିଆ, ପାନ, ସିଗାରେଟ୍, କୌଣସିଥିରେ ସ୍ପୃହା ନଥିଲା । ସଜାସଜ ହୋଇ ରହିଥିବା କୁଣିଆଘର ବଖରା ଖୋଲା ହୋଇ-ଥିଲା । ସେଥିରେ ଦାମୀ ଖଟ, ବିଛଣା, ଆଲମାରି, ଚଉକି, ଟେବୁଲ ସବୁ । ସବୁ ସଫା ଝକ ଝକ । ଭିତରୁ ଲାଗି ବାଥ୍ରୁମ୍ ।

ପଙ୍ଖା ବୁଲିଲା । ଗୃହର ଏକର ସେକର ହେଲା । ଏତେ କାଳରେ କେତେଶୁର ଆସିଥିଲେ । ଭିତ୍ରୁଆଳରେ ରହି କୁନ୍ତଳା ଯତ୍ନ ନେଉଥାନ୍ତି ।

ଘଣ୍ଟାଏ ପରେ ପଦାରେ ଜନ୍ଦ ଶବ୍ଦ ହେଲା । ପୋଷାକ ପିନ୍ଧି ନେପାଳିନାଲ ଗୃହଜଣ ଓହ୍ଲାଇ ଆସିଲେ । ଆରପାଖକୁ ଗୃଲିଗଲେ । ଅଳ୍ପ ସମୟ ଗ୍ରହଣ ନେଇ ବେଶରେ ବୁନା ଆସି ପହଞ୍ଚିଗଲା । ଭାଇଙ୍କୁ ଦଣ୍ଡବତ ହୋଇ ହସ ହସ ହୋଇ ଠିଆହେଲେ । ଭାଉଜଙ୍କ କଥା, ଝିଅଣ ପୁତୁରାଙ୍କ କଥା, ଘରକଥା ସବୁ ପଚାରିଗଲେ ।

କୁଆଡେ ଆସିଛନ୍ତି ?

ଏମିତି । ତମମାନଙ୍କୁ ସବୁ ଦେଖିବାକୁ ଟିକିଏ ।

ଆପଣ ଏଠି ହନାକେତେ ରହନ୍ତୁ । ଆଦୌ ଆସୁନାହାନ୍ତି କି ରହୁନାହାନ୍ତି ।

ଏଥର ତା' ଉତ୍ତର ଦେବା କଷ୍ଟ ହେଲା ନାହିଁ । ଜଗବନ୍ଧୁ କହିଲେ, "ଆରେ ତେବେ ତୋ ଭାଉଜ ପରି ଏକୁଟିଆ, ଘରେ କେହି

ନାହିଁ । ଗୋଟୁ ଗାଈ ଓନଟା । ଗାଁ ଅବସ୍ଥା ତ ଜାଣୁଥିବୁ, କଟେଜ ନରହିଲେ ଯେଉଁ ଅବ୍ଧୁଆ । ଆଇଲା, ଏମିତ ଟିକଏ ଦେଖିଗଲ ।''

ଦୁଇଭାଇ ଘରଟର ଆଗିଲୁ ଅନାଅନ ହେଲେ । ଦୁହିଁଙ୍କ ସ୍ମରଣ ପିଠିଆଢ଼େ ସତେ ଯେମିତ ବାଲ ମଖିଚକାର ଡାଇ ପଣ କ'ଣ ନାଚୁଛୁ । କାହିଁ କେତେ ଦୂରରେ । ସେମାନେ ଏକା ଗୁଳ ତଳେ ଏକା ବିଛଣାରେ କେବେ ଶୋଉଥିଲେ, ଏକା ଥାଳରୁ ଖାଉଥିଲେ, ଏକାଠି ଦନ ଦନକର କେତେ ଅନୁଭୂତ ।

ସେ ମୁହୂର୍ତ୍ତ ଦୂର ଦେବାଳୟରୁ ଶୁଭୁଥିବା ଘଣ୍ଟାଧ୍ୱନପରି । କନ୍ତୁ ତାକୁ ଉଚ୍ଛୁବାଇ ଦେଇ ପାଖକୁ ପାଖ ଆଉ କେତେ ପ୍ରକାର ଶବ୍ଦ, ଖିଚ୍ର, କର୍କଶ, ଗୋଳଆମିଶା ।

ଆପଣ ରହନ୍ତୁ ଭାଇ ।

ତା'ର ଉତ୍ତର ମୁର୍ଦ୍ଧାରିଆ ହସ ।

ପ୍ରାଣବନ୍ଧୁ ଉଠିପଡ଼ିଲେ । କହିଲେ ଟିକଏ କାମରେ ଯାଉଛି ଭାଇ । ଆସୁ ଆସୁ ସନ୍ଧ୍ୟା ହେବ । ଆପଣ ଖାଇଦେବେ । ମୋ ପାଇଁ ଅପେକ୍ଷା କରିବେ ନାହିଁ । ଆଜକାଲ ଯେଉଁ କାମଭିଡ଼ ।

ଜପ୍ ଚାଲଯାଉଥିବା ଶବ୍ଦ ଶୁଭିଲା ।

ଚୁନା କଲେଜକୁ ଗଲା । ଆଉ କେହି ପାଖକୁ ଆସୁନାହାନ୍ତି । ମାମୀକୁ ଆଉଁସିବାକୁ ମନ ହେଉଛି, କୁଳୁକୁଳିଆ ଗେହ୍ଲା ଝିଅଟିଏ । ଦେଖା ପଡ଼ିଗଲେ ସେ ହସିଦେଇ ପଳାଇଯାଏ । ଚୁନା ବି ଡାକଲେ ଆସୁନାହିଁ ।

ଚକ୍ ଚକ୍ ଏଭରସ୍ତ୍ରାଇଟ୍ ଷ୍ଟିଲ ବାସନରେ ଓ ଚିଣାପଣି ପ୍ଲେଟରେ ଭାତ ତରକାରି ନେଇ ଆସି ଚୁଥାସି ଟେବୁଲ ଉପରେ ସଜାଇଦେଲା । କୁନ୍ତଳା ଯତ୍ନରେ ରାନ୍ଧିଛନ୍ତି, ରାନ୍ଧାଇଛନ୍ତି । ଦେଢ଼ଶୁର ଆସିଛନ୍ତି । ଗୋଟିଏ ଗ୍ରେଟ ଭୋଜ ।

କିନ୍ତୁ ଜଗବନ୍ଧୁ ସେହି ନାନାପ୍ରକାର ଭୋଜ୍ୟବସ୍ତୁର ଏକତ୍ର ସମାବେଶକୁ ଅନାଇଁ ଦେଖିଲାମାତ୍ରେ ତାଙ୍କୁ ଲାଗିଲା ଯେମିତି ସବୁ ପର-ପର ଅଚିହ୍ନା ଅଚିହ୍ନା । କୌଣସିଠି କିଛି ତ୍ରୁଟି ନାହିଁ । ବ୍ୟବସ୍ଥା, ଚର୍ଚ୍ଚା ସବୁ ଅତି ଉଚ୍ଚଦରର । ପ୍ରତି ଜିନିଷ ଅତି ସୁଆଦ, ରାନ୍ଧିବା କଳାର ଏ ଯେପରି ଗୋଟିଏ ଗୋଟିଏ ଚମତ୍କାର ନମୁନା । ସବୁ ଅଛି, ଗୋଟାଏ କ'ଣ ନାହିଁ । ତେଣୁ ଖାଇବା ତୃପ୍ତି ହେଲା ନାହିଁ ।

ପାନ ଚୋବେଇ ଚୋବେଇ ନରମ ବିଛଣାରେ ଗଡ଼ି ପଡ଼ି ବିଶ୍ରାମ କଲାବେଳକୁ ଆଖିଆଗରେ ଖାଲି ଦିଶୁଥିଲେ ସୁଲକ୍ଷଣା, ଘର, ବଗିଚା ଘୁଇଚାଳ, ପୁଅଝିଅ, ସେମାନଙ୍କ ଘରକରଣା । ଚିନ୍ତା ଭ୍ରମି ଭ୍ରମି ଆପଣା ଘରକୁ ଆରବାର ଘୂରିବୁଲୁଥାଏ । ସୁଲକ୍ଷଣା କ'ଣ କରୁଥିବେ ? ଗୋରୁମାନେ ପେଟଭରି ଖାଇଥିବେ କି ନାହିଁ ? ପଦିଆ ନନା ଆସିଥିବେ କି ନାହିଁ ? ନାନା ପ୍ରଶ୍ନ ଏକାଠି ବନ୍ଧ ହୋଇ ଟାଣ ହେଲା । ତା' ପରେ ସେ ଉଠିପଡ଼ିଲେ ।

'ଆରେ ଗୋଟିଏ ରିକ୍ସା ଡାକିଦେ ଆଉ କହିଦେ ମୁଁ ଯାଉଛି ।'

ପୂଝାରୀ ଆସି କହିଲା, ମା' କହିଲେ ଆପଣ ଆସୁ ଆସୁ ଚାଲିଯିବେନା ? ରହନ୍ତୁ । ବାବୁ ଆସନ୍ତୁ ।

ହଉ ହଉ ହେଲା, ଆଉ କେବେ ଆସିବି । ତେଣେ ସେ ଏକୁଟିଆଟା ଅଛନ୍ତି ପରା । ପାଖରେ ତ କେହି ନାହିଁ । ସେ ସବୁ ଅଡ଼ୁଆ ସେମାନେ ବୁଝିପାରିବେ ନାହିଁ । ମା'ଙ୍କୁ କହିଦିଅ, ଆଉ ବଳାନୁ ନାହିଁ ? ମୁଁ ପୁଣି ଆସିବି ଯେ । ମୋର କ'ଣ କାମ ଅଛି ଯେ ଆସିପାରିବି ନାହିଁ ? ଖାଲି ଟିକିଏ—

ଆଉ ସେ ବୁଝାଇଲେ ନାହିଁ । ଜୋତା ମାଡ଼ିଲେ ।

କବାଟ ଆଡ଼ପାଖେ ଥାଇ କୁନ୍ତଳା ଶୁଣୁଥିଲେ । ଗୋଟାଏ ଦୀର୍ଘଶ୍ୱାସ ପକାଇଲେ ।

ରିକ୍ସା ଆସିଲା, ପିଲାଏ ଗୋଟି ଗୋଟି ହୋଇ ଗୋଡ଼ ତଳେ ପଡ଼ିଲେ, ତାଙ୍କ ପଛଆଡ଼େ ଓଢ଼ଣା ପକାଇ ଭୂଇଁରେ ମୁଣ୍ଡ ଲଗାଇ କୁନ୍ତଳା । ମୁହୂର୍ତ୍ତେ ଜଗବନ୍ଧୁ ସର୍ବଦ୍ରବଣ ହୋଇଗଲେ । କହିଲେ,

ହଉ ହଉ ହଉ ଆଶୀର୍ବାଦ କରୁଛୁ । ଆରେ ପିଲେ ଗାଁକୁ ତ ଗଲ ନାହିଁ ଗାଁକୁ ଚହ୍ନି ଲ ନାହିଁ । ପ୍ରାଚୀ ନଈକୂଳ ମୁନିଋଷିଙ୍କ ଆଶ୍ରମ ଥିଲା । ଆଉ—ଆଉ ବିଶ୍ୱାସ ଦେଖାଇ କହି ପକାଇଲେ, 'ସେଠି ବଜ୍ରବାଣ ନଡ଼ଆ ।'

ଚୂନା ପ୍ରତିଧ୍ୱନି କଲା, 'ବଜ୍ରବାଣ ନଡ଼ଆ ।' ପିଲାଏ ହସିଲେ ।

ଅତି ଉତ୍ସାହରେ ସେ ରିକ୍ସାରେ ବସିଲେ । ମନରେ ଥିଲା ମୁକ୍ତିର ଆନନ୍ଦ, ଆଖି ଆଗରେ ଦୂରରେ ଦିଶୁଛି, ଶାଗୁଆ ବଳିଷ୍ଠ ଦଳ ଭର୍ତ୍ତି ଶାନ୍ତ ପ୍ରାଚୀ ନଈଧାର, ଆପଣା ଘରବାର ଅଗଣା । ନଡ଼ଆଗଛ ବାହୁଙ୍କାରେ ପବନ ହିଲି ହିଲି ଦିଶୁଛି, କସ୍ତା ଖଣ୍ଡେ ପିନ୍ଧି ବାଟକୁ ଅନାଇଁ ସୁଲକ୍ଷଣା ଠିଆହୋଇଛନ୍ତି ।

ରିକ୍ସା ଚାଲିଲା ।

ମନେ ମନେ କହିଲେ—'ଗୋପାଳ ଡାକ ପକାଇଛି । ଆଉ କୁଆଡ଼େ ରଖାଇ ଦେବନାହିଁ ମୁଁ ପରା ଜାଣେ ।

କହିଲେ, ଆରେ ବାପୁ, ଜଲଦି ଚାଲ । ଗୁନ୍ଦିମାଟୀକ ମଠର ଷ୍ଟାଣ୍ଡ ।

ସଞ୍ଜ ଆଗରୁ ପ୍ରାଣବନ୍ଧୁ ଫେରିଲେ ଗୋଟାଏ ବଡ଼ ମହାନଦୀ ଇଲିଶି ଘେନି ।

କୁଣିଆ ଘର ଖାଲି ।

ପଚାରିଲେ, ଗଲେ କାହାନ୍ତି ?

'ଆସନ୍ତା କାଲି' ଜାନୁଆରୀ ୧୯୭୭



# ନିଶାଣ

କଟକ ଭୁବନେଶ୍ୱର ରାସ୍ତା, ଚଉଡ଼ା, ଚକ୍‌କଣ କଳା ମିଶ୍‌ମିଶ୍‌ । ଲମ୍ବି-ଛୁ ।

ଗୋଟାଏ ବ୍ୟବସାୟର କେନ୍ଦ୍ରସ୍ଥଳ, ଆରଟା ଶାସନର ଦପ୍ତରର ଦୁହେଁ ଦୁହିଁଙ୍କୁ ସାପେକ୍ଷ, ଭିତରଘର ଦାଣ୍ଡଘର ପରି । ଯୋଡ଼ିକ ମିଶି ଗୋଟାଏ ସହର ବୋଲି ଧାରଣା କରାଯାଏ । ଦୋଳମୁଣ୍ଡେଇରେ ବସା କରି ଚୌଧୁରିବଜାରକୁ ସଉଦା କିଣି ଗଲା ଭଳି ଅନେକେ ପ୍ରତିଦିନ ଯା-ଆସ କରନ୍ତି ଭୁବନେଶ୍ୱରରୁ କଟକ, କଟକରୁ ଭୁବନେଶ୍ୱର । ଗୋଟାଏ ବାସସ୍ଥଳ ଆରଟା କାର୍ଯ୍ୟକ୍ଷେତ୍ର । ଦିନକେ ନିର୍ଦ୍ଦିଷ୍ଟ ସମୟରେ ରେଲଗାଡ଼ି ଛଡ଼ା ପ୍ରାୟ ପ୍ରତି ଘଣ୍ଟାରେ ମଟରବସ୍ ବି ଚାଲେ । ବେଳେବେଳେ ଟିକିଏ ଧୈର୍ଯ୍ୟ ଅଭ୍ୟାସ କରିବାକୁ ପଡ଼େ । କଟକରୁ ଭୁବନେଶ୍ୱର ଆସିବାକୁ କେହି ଯଦି କଲେଜ-ଛକରେ ଅପେକ୍ଷା କରିଥିବ ତେବେ ସକାଳ ସାଢ଼େ ନଅଟା ବାଜିଗଲେ ତେଣିକି ଅନେକ ସମୟରେ ଯାହା ଆସେ ସେ 'ହାତହଲା' ବସ୍, ଅର୍ଥାତ୍ ଜାଗା ନାହିଁ ବୋଲି କଣ୍ଡକ୍‌ଟର ହାତ ହଲାଇ ଦିଏ, ବସ୍ ଅଟକେ ନାହିଁ । ତା'ପରେ ହୁଏତ ଯିବାକୁ ପଡ଼େ ମଙ୍ଗଳାବାଗ୍, ତା'ପରେ ପୁଣି ଗୋଟିଏ 'ହାତହଲା' ବସ୍, ତା'ପରେ ପୁଣି ରିକ୍‌ସା ଚଢ଼ି ହାଉଡ଼ା ମଟର ଆଗ, ହୁଏତ ପୁଣି ଗୋଟିଏ 'ହାତହଲା' ତା'ପରେ ହୁଏତ ସିଧା ଗୁହାଳିଗୋଳ, ଆଉ ଅଟକି ରହିବା ଆବଶ୍ୟକ ପଡ଼େନାହିଁ, ଅନ୍ତତଃ ଘଣ୍ଟାକରେ ବସ୍ ମିଳେ । ବାଇଶି ମାଇଲ ରାସ୍ତା ସାଧାରଣ ପ୍ରକାରେ ବସ୍‌ରେ ଲାଗେ ଦେଢ଼ଘଣ୍ଟା, କିନ୍ତୁ ତା'ଉପରେ ଥାଏ କଟକ ଲେଭେଲ୍‌କ୍ରସିଂ ଘାଟି, ସେ ଫାଟକ ଯାତ୍ରୀଙ୍କ ଇଚ୍ଛାଧୀନ ନୁହେଁ । ସେଠି ଯେତେବେଳେ ଫାଟକ ପଡ଼ିଥାଏ, କଟକଆଡ଼କୁ ଅଧ ମାଇଲିଏ ଲମ୍ବ

ଭୁବନେଶ୍ୱର ଆଉ ଅଧମାଇଲଏ ଲମ୍ବ ତା'ପଛକୁ ତା'ପଛେ ହୋଇ ଗାଡ଼ିମାନ ନିସ୍ପନ୍ଦ ହୋଇ ଅପେକ୍ଷା କରିଥାନ୍ତି ଆଉ ଦେଖୁଥାଆନ୍ତି ମାଲ୍‌ଗାଡ଼ିଟିଏ କିପରି ଧୀରେଧୀରେ ମାଡ଼ିଆସୁଛି ପଳେଇଯାଉଛି । ତହିଁରୁ ଖଣ୍ଡିଏ ଖଣ୍ଡିଏ ଡବା ରଖିଦେଇ ଫେରି ଆସୁଛି, ଫେରି ପଳେଇଯାଉଛି, ସେତେବେଳେ ଅନ୍ତତଃ ଗୋଟାଏ କଥା ମନେପଡ଼ିଲେ ମନରେ ଗର୍ବ ଆସେ କି ଆତ୍ମ-ବିଶ୍ୱାସ ଆସେ କି ଆଉ କ'ଣ ଆସେ—

ଏଇ କଳିବଳି ଦୁନିଆଁରେ, ଯେଉଁଠି ଶାସନ-ଶୃଙ୍ଖଳା ମାନି ଚଳିବାକୁ ଲୋକେ ଅନିଚ୍ଛୁକ ବୋଲି ଅଭିଯୋଗ ହୁଏ, କେହି ଅପେକ୍ଷା କରିବାକୁ ରାଜି ନୁହେଁ, ସମସ୍ତେ ନିଜ ହାତରେ ନିଜେ ଚଉଦପୁଆ, ଯେଉଁ ଯୁଗରେ ଦାଆଁଙ୍କ ଆଗରେ ଠେଲିପେଲି ଥିଲେ ବି ଲୋକେ ଆଗୁଳ ମାନିବାକୁ ନାରାଜ । ଏଇ ଦେଶରେ ଏଇ ଯୁଗରେ ତଥାପି ଅଛି ଗୋଟାଏ ଆଗୁଳ ସ୍ୱୟଂ ନିର୍ବାଚକ, ଯେ ମାନେ ନାହିଁ କିଏ କ'ଣ ଅଥବା କିଏ ଆଉ କାହାର ପୁଅ କି ଜୋଇଁ କି ବନ୍ଧୁ, ଯେ କାହାର ତରବର ମାନେନାହିଁ । କାହାର ଲୋଭଲାଳସାକୁ ଅନାଏଁ ନାହିଁ, ଏପରିକି କାହାର କାନ୍ଦଣାକୁ ବି କାନ ଡେରେ ନାହିଁ । ଶୁଣାଯାଏ ବି କାହାଣୀ— "କେଉଁ ରୋଗୀ ଡାକ୍ତର-ଖାନାକୁ ଯାଉ ଯାଉ ଲେଭେଲ୍‌କ୍ରସିଂ ଫାଟକ ପଡ଼ିଗଲା, ତା'ପରେ ତା'ପରେ ଆଉ ଡାକ୍ତରଖାନାକୁ ଯିବା ଦରକାର ହେଲା ନାହିଁ । କେଉଁ ପ୍ରସୂତି ପ୍ରସୂତିଭବନକୁ ନିଆ ହେଉ ହେଉ ହୋଇଗଲା ଏ ଫାଟକ । ଅପେକ୍ଷା କରୁ କରୁ ଏଇଠି ଖଲାସ ପାଇଲା ।" ବେଶି ଏସବୁ କଥା ପଡ଼େ ଭୁବନେଶ୍ୱର ଆଉ କଟକ ଆସୁଥିଲେବେଳେ, ସେତେବେଳେ ସେ ଯାହାର ନକ୍ଷତ୍ରମୁଣ୍ଡରେ ପାଟି । ତାତ୍ତ୍ୱିକ ଆଲୋଚନା ପାଇଁ ପୃଷ୍ଠଭୂମି ହୁଏ ପାର୍ଶ୍ୱପାର୍ଶ୍ୱିକ ଦୃଶ୍ୟାବଳୀ । ଡାହାଣ ପାଖେ ଖୋଲା ପଡ଼ିଆରେ ଉଦୁଉଦିଆ ଖରାବେଳେ ବି ଗୁଡ଼ିଏ ବାସହୀନ ମଣିଷ ସଂସାର ମେଲେଇ ପଡ଼ିଥାନ୍ତି, ଚୁଲି, କନ୍ଥା, ପିଲା, ବାପ ମା' ଗାଧେଇବା, ଲୁଗାପିନ୍ଧିବା, ମୁଣ୍ଡ କୁଣ୍ଡେଇବା, ଖାଇବସିବା, ପିଲାଙ୍କୁ କ୍ଷୀରଦେବା ଆଦି ନାନା ପରେଇ ଦୃଶ୍ୟ । ବାଁ ପାଖେ ଖାଲଖମା, ଖୋଲା ନର୍ଦ୍ଦମା, ଅଳିଆଗଦା ଆଦିର ଦୃଶ୍ୟ, ନାକରେ ଶଢ଼ା ଗନ୍ଧ ('ଗନ୍ଧ' ଶବ୍ଦର ଓଡ଼ିଆ ଅର୍ଥରେ) । ହୁଏତ ଉପରେ ଉଡ଼ିଯାଏ ଜେଟ୍ ଉଡ଼ାଜାହାଜ ।

କିନ୍ତୁ ଫାଟକ ବନ୍ଦ ଥାଏ, ଦର୍ଶନର ତତ୍ତ୍ୱ ମନେ ପଡ଼ୁଥାଏ—

"ଏମିତି ଜୀବନର ଶେଷ ପରିଣତି, ଯେତେ ଛଟପଟ ହୁରୁ ହୁରୁ ତରତର ହେଲେ ବି କିଛି ଫଳ ନାହିଁ, ସବୁ ଧ୍ୱଂସମଇଁ ଯାଏ, ଶେଷରେ ଅମିଯାଏ, ଗୁଡ୍‌ଗୁଡ୍, ହଲଚଲ ନାହିଁ ।"

ଫାଟକ ଖୋଲେ । ଲାଗେ ସତେ ଅବା ଜନ୍ମାନ୍ତର ହେଲା ।

କିନ୍ତୁ ରାଜଧାନୀ ଭୁବନେଶ୍ୱରରୁ କଟକର ଲେଭଲ୍‌କ୍ରସିଂ ପର୍ଯ୍ୟନ୍ତ କଳାପିଚିଆ ରାସ୍ତାର ଯେ ଯେଉଁଟିକ, ତା'ର ଭିନ୍ନ ରୂପ । ଲେଭଲ୍‌କ୍ରସିଂ ଦେଖି ଯଦି ଶୃଙ୍ଖଳା କଥା ମନେପଡ଼େ, ଏ ରାସ୍ତା ଖଣ୍ଡିକ ମନେପକାଏ ଲଗାମ୍ ଛଡ଼ା ଶୃଙ୍ଖଳାହୀନତା କଥା । ଯେଉଁଠି ଯାତ୍ରୀବାହୀ ବସ୍ ସହିତ କାର୍ ସହିତ ବାଦବୁଦିଆ ଲଗାଇ ଆଗବଢ଼ି ଧାଇଁଯାଆନ୍ତି ପଥରବୁହା ଟ୍ରକ୍‌ମାନ, ସେଠି ଏକାସଙ୍ଗେ ମୌଳିକ ଅଧିକାର ଜାରି କରନ୍ତି । ଶଗଡ଼ଗାଡ଼ି, ରିକ୍ସା, ମାଲ୍ ଲଦା ହୋଇଥିବା ଟଳଟଳ ସାଇକଲ, ବାଟଚଲା ଗୋରୁ ବଳଦ, ଆଉ ଟ୍ରକ୍, ଜିପ୍, ବସ୍, କାର୍, କେବେ କ୍ୱଚିତ୍ ହାକୁଦିତଲେ ହାତ୍‌ଦୋଳିଲେ ବୋଧହୁଏ ସବାରି ବି ହାବୁଡ଼ିଯାଏ ।

ସାଧାରଣତଃ ବାଟକରରେ ଗୋଟାଏ ଦି'ଟା ମଟର ଟ୍ରକ୍ ଦାନ୍ତ କାଟି ପଡ଼ିଥିବାର ଦେଖାଯାଏ, କେଉଁଟା ବାଁକରେ କି ଡାହାଣ କରେ ମାଡ଼ି ଶୋଇଛି, କେଉଁଟା ଓଲଟି ପଡ଼ିଛି, କେଉଁଟା ରାସ୍ତାରୁ ଖସି ପଡ଼ିଛି । କେବେ ଦେଖାଯାଏ କେଉଁ ଟ୍ରକର କେଉଁ ଅଂଶ ଚୂନା ହୋଇଯାଇଛି । କେବେ ଦେଖେ ଟ୍ରକ୍ ଧକ୍କାରେ ଆହତ କି ଧ୍ୱସ୍ତ ଶଗଡ଼ଗାଡ଼ି । ଅତି ସାଧାରଣ ଆଖିସହା ସେ ଦୃଶ୍ୟ, ତଥାପି ପ୍ରତିଥର ସେଠି ଯାତ୍ରୀବାହୀ ବସ୍‌ର ଯାତ୍ରୀ ପଦାକୁ ବେକ ଉହୁଙ୍କେଇ ଦେଖିଦେଖି ଯାଆନ୍ତି, ଆଲୋଚନା ଚଳେ— "କେତେଜଣ ମଲେ ? କେତେଜଣ ଖଣ୍ଡିଆ ହେଲେ ? କେମିତି ଯେ ଘଟିଲା ?" ଯେପରି ଇତିହାସରେ ଏଇ ପ୍ରଥମ ଥରକ । ଆଗପଛ ତରତର ହୋଇ ଗାଡ଼ି ଉଡ଼ାଇ ନେଉ ନେଉ ପ୍ରତି ମଟରଚାଳକ ସେ ହତଭାଗ୍ୟ ଗାଡ଼ିର ଅନୁପସ୍ଥିତ ଚାଳକ ଉଦ୍ଦେଶ୍ୟରେ ମନଇଚ୍ଛା ଗାଳି ଦେଇ ଦେଇ ଯାଆନ୍ତି "ହ୍ୟାଁ, ଏତେ ଗୁଣ୍ଡା, ଏତେ ଅଣଦୁସିଆର, ଏଣେ ଦୁର୍ଘଟଣା ଘଟୁଛି ତଥାପି ଯେଉଁ କଥାକୁ ସେଇ କଥା ।"

ବାରମ୍ବାର ଅନଦ୍ଭୁତ ଦୁର୍ଘଟଣାରେ ମଣିଷଙ୍କ ମରଣ କି ଖଣ୍ଡିଆ ଖାବଡ଼ା କି ଅନ୍ୟପ୍ରକାର କ୍ଷତର କାହାଣୀ ଯଦି ମଣିଷସମାଜ ଆଖିରେ ଗୁରୁତ୍ୱପୂର୍ଣ୍ଣ ଇତିହାସ ବୋଲି ଧରାଯିବ ତେବେ ଏ କଳାପିଠିଆ ଚଉକସ ରାସ୍ତାରେ ବହୁତ ଇତିହାସ ଘଟିଛି । ଯେ ଯେତିକ ଜାଣେ ସେ ସେତିକ କହିପାରିବ—ହେଇ ସେଠି, ସେଇ ଛକରେ, ଏକାଥରକେ ତିନିଜଣ । ମଣିଷ, ତାଙ୍କ ଉପରେ ପଥର, ତାହା ଉପରେ ଗାଡ଼ିଚକ—ହେଇ ସେଠି, ମଧୁବାବୁଙ୍କ ଡାହାଣ ହାତଟା ଗଲା ଆଉ ଦାନ୍ତଦପାଟି, ହେଇ ସେଠି, ସେ ତ ବଡ଼ଲୋକ କାହାଣୀ, ନୂଆଗୃହ ପ୍ରତିଷ୍ଠା କରସାରି ଗାଡ଼ିଚଢ଼ି ଉଦ୍ରଲୋକ ଫେରି ଆସୁଥିଲେ, ଟ୍ରକ୍‌ଟାଏ ସାଇଁ କରି ଚାଲିଗଲା, ସେଥିରେ କ'ଣ ଥିଲା କ'ଣ ବାଜିଲା ଯେ ଗାଡ଼ିଟା ଚାଲିଛି, ବାବୁ ବସିଛି, ବାବୁର ମୁଣ୍ଡଟା ନାହିଁ । ହେଇ ସେଠି ଆମ ଯୋଗୀବାବୁ ପରି ଏଇଠି—ହଁ ଏଇଠି ଏଇଠି ଏ ବରଗଛତଳେ ଏଠି ସେ ସର୍ଦ୍ଦାର ବୁଢ଼ା ଏଠି ଆଉ ଜଣେ ପଞ୍ଜାବୀ ଏଠି ।"

କିନ୍ତୁ ଜାଣିବା ଲୋକ ନ ହେଲେ ନିକଟ ଅତୀତର ଏତେଗୁଡ଼ାଏ କାହାଣୀ କେହି କହିପାରନ୍ତି ନାହିଁ, ତେଣୁ ଯେଉଁଦିନ ଯେତିକ ଆଖିରେ ପଡ଼େ ସେତିକ ନୂଆ । ଘରକୁ ଫେରି ଆସିଲେ ସେମାନେ ସେତିକ କହି ବୁଲନ୍ତି, ଯାହା ହେଲଣି ଜୀବନର ସାଧାରଣ କଥା ତା ଲାଗେ ଅତି ଆଶ୍ଚର୍ଯ୍ୟ ।

ସେ ସଡ଼କରେ ବେଶିଦିନଯାକେ ଚିହ୍ନ ରହେ ନାହିଁ, ଅନେକ ଚିହ୍ନ—ଯେପରି ମଲା ବିଲୁଆ କି କୁକୁର ରାତିରେ ଦଳିଲେ ସକାଳେ ନଥାଏ । ଅଣ୍ଟା ଭାଙ୍ଗି ଥିବା ଶଗଡ଼ବୁହା ବଳଦ, ଅନ୍ତବୁଜୁଳା ବାହାରିଥିବା ବଳଦ । ଚୂନା ହୋଇଥିବା ଗାଡ଼ିଟା କି ବଳଦ, ସେଗୁଡ଼ାକ କୁଆଡ଼େ କୁଆଡ଼େ ବୁହାହୋଇ ଚାଲିଯାଏ ।

ରାସ୍ତା ପଡ଼ିଥାଏ ନିର୍ଦ୍ଦୋଷୀ ନିମଣାପରି, ଯେମିତି ସବୁଦିନିଆଁ । ଟେଲିଫୋନ୍ ମୁହଁ ପାଖେ ଚାହାରି ଅଭ୍ୟାସ କରିଥିବା ହସ ପରି, ବନ୍ଧୁମେଳରେ ବସି ବେଲୁନ୍ ଫୁଙ୍କି ଖେଳୁଥିବା କେଉଁ ଆମଦାନୀ-ରପ୍ତାନୀ-ବିଶାରଦ ବଡ଼ ବ୍ୟବସାୟୀ ପରି, ବନ୍ଧାଚ ଆଣ୍ଠି ଯୋଡ଼ିକ ଉପରକୁ ଟେକି

ଜନତା-ଜନାର୍ଦ୍ଦନଙ୍କୁ ହାତଯୋଡ଼ି ଦଣ୍ଡବତ କରୁଥିବା କେଉଁ ନାଁଡାକ ନେତା ପରି, ସରଳ ପିଲାଏ ମୁହଁ ବୁଲେଇ ଧଳା ଚକ ଚକ ଦାନ୍ତ ହ'ପାଟି ଦେଖାଇ ମଲ୍ଲୀଫୁଲପରେ ହସି ଦେଉଥିବା କେଉଁ କୃଷ୍ଣମୁଣ୍ଡଙ୍କ ମୁହଁର ଠାଣିପରି ସେ ରାସ୍ତାର ଚହଲା ଠାଣି ନଅଳ, ସୁଧାର, କାଲ୍ଲାହୀ ।

କଳା କଳା ମୁଗୁନି ଆଉ ମୁଗୁନିଭଳି ଟାଣ ପଥରଖଣ୍ଡମାନଙ୍କ ଉପରେ ବାଲି ଆଉ ତରଳ ବଟିବଳ ଢାଳି ତା ଉପରେ ଷ୍ଟିମ୍ ରୋଲର୍ ମଡ଼ାଇ ମଡ଼ାଇ ତାକୁ ସବସହଣି କରାହୋଇଛି, ସେ ମାଉଁସିଆ ନାଲିରୁ ବଦଳି ହୋଇଛି ଅଙ୍ଗାରକଳା, ନରମରୁ ହୋଇଛି ଟାଣ, ଯେପରି ଗୋଟାଏ ମଣିଷଗୋଷ୍ଠୀ ନାନା ଯୁଗର ନାନା ଭାର ନାନା ଦୁର୍ବିପାକରେ ପାଗ ହୋଇ ନୂଆ ରୂପ ଧରୁଛି ।

ପାଦରେ ଚାଲିଲେ ଲାଗନ୍ତା, ସେ ଗୋଟାଏ ବ୍ୟାପ୍ତି, ଯେଉଁ ମଣିଷ ସହିତ ଅନ୍ୟ ମଣିଷ ଓ ପ୍ରକୃତିର ଆପଣାର ହେଲାପରି ସମ୍ବନ୍ଧ ଅଛି, ସେ ବ୍ୟାପ୍ତି ଉଦ୍ଧୁମୁଦା ହୋଇ ଅତିକ୍ରମ କରିଯିବାକୁ ସତ ବଳେ ନାହିଁ, ଧରା-ଆକାଶ ଭୁଇଁ-ଆଲୁଅର ଚଲାବାଟ, ଯେ ସମ୍ବନ୍ଧ ଲଗାଏ; କିନ୍ତୁ ମଟରରେ ଗଲେ ସେ ଖାଲି ଗୋଟାଏ ଗତି-ରେଖା, ତା'ର ଅନ୍ୟ ପରିଚୟ ନାହିଁ ।

କେଉଁ କାଳର ରାସ୍ତା, ତହିଁରୁ ଖଣ୍ଡେ ଖଣ୍ଡେ ନୂଆ ସୃଷ୍ଟି ହେଲେ ବି ଆଗକାଳର କେତେ ଅଂଶ ଏବେ ବି ଅଛି । ସେହି ନାନା ନାନା ଯୁଗରେ, ମିଞ୍ଜି ମିଞ୍ଜି ଯୁଗରେ କେତେ ଇତିହାସ ତା' ଉପରେ ଘୁଷୁରି ଘୁଷୁରି ଚାଲି ଯାଇଥିଲି । ଏହିବାଟେ ଚାଲି ଚାଲି ଯାଇଥିଲେ ମହାତ୍ମାଗାନ୍ଧି, କେତେ କେତେ ଦୂରରୁ ଗାଁଗହଳି ଭିତରୁ ବାଟ କରିକୁ ଉଠି ଆସିଥିଲେ ମାଇପେ, ପିଲାଏ, ମିଣିପେ, ତାଙ୍କ ପାଦଧୂଳି ନେବେ ବୋଲି, ଶଙ୍ଖ-ହୁଳହୁଳିରେ ଉଚ୍ଛୁଳି ପଡ଼ୁଥିଲା ଏ ସଡ଼କ । ତା' ଆଗରୁ ଆସିଥିଲେ ମହାପୁରୁଷମାନେ, ପୁରୀ ଜଗନ୍ନାଥ ଦର୍ଶନକୁ ଗଲାବେଳେ, ସାଧୁମାନେ, ବାଟେ ବାଟେ ଭଜନ, ସଂକୀର୍ତ୍ତନ, ହରିନାମ ।

ଆଉ କେତେବେଳେ ଚାଲିଥିଲେ ମାରଣାଥାଟ, ଝଣ୍ଟ୍‌ଖାଣ୍ଡ୍, ଛୁଟ୍ରା, କିନ୍ତୁ ଲୋକେ ଜାଣିଥିଲେ ସେମାନେ ମାରଣା ବୋଲି, କପଟ ନଥିଲା ।

ସେଥି ସଡ଼କର କାହାଣୀଟିଏ କହିବି । କେବେ କେଉଁ କେଉଁ ଯୁଗରେ ଦେଉଳରୁ ମୁଖଶାଳ ବଡ଼ କରାହୁଏ, ଯେପରି, କୌଣସି କୌଣସି ସାହିତ୍ୟକାରର ସୃଷ୍ଟିଠୁଁ ମୁଖବନ୍ଧ ବେଶି ଲମ୍ବା, ମୂଳଠୁଁ ଭାଷ୍ୟ ବହୁତ ଲମ୍ବା, ସଙ୍ଗୀତରୁ ଆଳାପ ବହୁତ ବହୁତ ଲମ୍ବା । ଚରଣିଆ ର ଆଖିପିଛୁଳାକ କଥା, ଯେପରି ପରମାଣୁ ବୋମାର ବିସ୍ଫୋରଣ, ଅଥବା କବୁଳ ବରଗଛ ମୂଳରେ ଟିକ ପୋକଟିଏ ହଲଚଲ ହେଲେ ମଞ୍ଜି ଧରିଲା ପରି, ଅଥବା କେଉଁ ଉଡ଼ାଜାହାଜ, ରେଳ ବା ମଟର ଦୁର୍ଘଟଣା ଘଟିଲା ପରି; କିନ୍ତୁ ଜୀବନ ଗୋଟାକଯାକ ସତେ କ ଗୋଟାଏ ଉଦ୍‌ଯୋଗପର୍ବ ।

ଗାଡ଼ି ଚାଲିଥାଏ । ଗଲି ଭୁବନେଶ୍ୱର ରାଜଧାନୀ ଆଡ଼ର ମାଳ-ମାଳ କୋଠା, ଗହଳି ଅଳ୍ପ, ସଡ଼କ ଫାଙ୍କା ଫାଙ୍କା । ଯେମିତି ପୋଖରୀ-କୂଳରେ ବସି ପାଣିକି ଚାହିଁଥିଲେ ହଠାତ୍ କେତେବେଳେ ଦିଶେ ଯେ ଟିକିଏ ଆଗରୁ କୁଆଡ଼ୁ କିଛି ନଥିଲା, କିନ୍ତୁ ଚଞ୍ଚଳ ଟିକି ଟିକି ମାଛ ସହି ଶହ ମାଛ କେତେବେଳେ ଭାସି ଉଠି ଉଭା ହୋଇଛନ୍ତି, ସେମିତି ଏ କୋଠାସବୁ, ଘରକାରୀ, ବେସରକାରୀ ମାନ ବଡ଼ ହୋଇ ଅନେକ ଦମ୍ଭିଲା କୋଠାମାନ ବାରହୋଇ ପଡ଼ୁଛି ।

ହୁଏତ ଏ ଇତିହାସ ତିଆରି କରିବ ।

ବସ୍‌ରେ ଦେଉଡ଼ିବସ୍ ଆମେ । ଠିଆହୋଇ ଛାତ ତଳର ବାଡ଼ାକୁ ଦୁଇ ହାତରେ ମୁଠେଇ ଧରିବା କାର୍ଯ୍ୟରେ ବି ଅନ୍ୟମାନଙ୍କ ସଙ୍ଗରେ ତୀବ୍ର ପ୍ରତିଯୋଗିତା; ପ୍ରତି ମୁହୂର୍ତ୍ତରେ ସତର୍କ ରହିବାକୁ ପଡ଼ିବ ନ ହେଲେ ମୁଠେଇ ଧରିବାକୁ ସ୍ଥାନ ମିଳିବ ନାହିଁ । ଆଗଜଣକ ପଛଆଡ଼କୁ ବାରମ୍ବାର ଧକ୍କାପରି ହେଉଛନ୍ତି । ଆପଣା ଦେହର ଯେତେ ଭାର ସେ ପଛଆଡ଼କୁ ଲଦି ପାରିବେ ତାଙ୍କର ସେତେ ସୁବିଧା ହେବ । ପଛ ଜଣକ ପ୍ରଗତିଶୀଳ, କ୍ଷୀଣ ହେଲେ ବି ତାଙ୍କର ଆହୁରି ସ୍ଥାନ ଦରକାର, ସେ ଯେ ଉଦ୍ୟମୀ ପୁରୁଷ ତା' ପ୍ରତିମୁହୂର୍ତ୍ତରେ ବୁଝାଯାଉଛି, ମତେ ଟିକିଏ ଅନ୍ୟମନସ୍କ ଦେଖି ସେ ତାଙ୍କ ବାଁ ଗୋଡ଼ଟି ସୁବିଧା ଜାଗାରେ ରଖି ସାରିଲେଣି, ମୁଁ ଅନୁଭବ କଲିଣି ମୋର ଭାରସାମ୍ୟ ବିପନ୍ନ । ବାଁ-କରେ ଯେଉଁ ଭାଗ୍ୟବାନ୍ ବସିଛନ୍ତି

ଦେଇ ମଝିରେ ମଝିରେ କ୍ଷୁଣ୍ଣ ଆନ୍ଦୋଳନ ଚଳାଇଛନ୍ତି । ତାଙ୍କ ସାମ୍ନାରେ ବସିଲେ ଯେଉଁ ବଡ଼ ପୁଟୁଳିଟି ମୋର ପାଦ ସହିତ ବାରମ୍ବାର ସ୍ପର୍ଶ କରୁଛି ତା' ଆଡ଼କୁ ମୋର ନଜରକୁ ବାରମ୍ବାର ଓଟାରିବାକୁ ଜଗର ଧରି କହୁଛନ୍ତି, "ମୁଁ ଆପଣଙ୍କୁ ପୁଣି ସତର୍କ କରି ଦେଉଛି, ଏଥିରେ କାଚ ଅଛି । ଯଦି ଭାଙ୍ଗିଯିବ ମୋ ନିଶ୍ଚିତ ଆପଣ ଦାୟୀ ହେବେ ।" ମୋର ମନେଅଛି, ମୁଁ ଯେତେବେଳେ ଗାଡ଼ିରେ ଚଢ଼ିଲି, ସେ ସେଠି ନଥିଲେ, ଖାଲି ତାଙ୍କ ମୁଣିଟି ଓ ପୁଟୁଳାଟି ସେଠି ଥୁଆ ହୋଇଥିଲା, ସମ୍ଭବତଃ ଟିକଟ କରି ଯାଇଥିଲେ; କିନ୍ତୁ ଟିକଟ ନକରି ବି ଆଗ ଜାଗା ଉପରେ ରୁମାଲ ଖଣ୍ଡେ ଥୋଇଦେଇ ଜାଗା ଦଖଲ କରିବାର ଯେଉଁ ସାଧାରଣ କୌଶଳ ମାତ୍ର ପ୍ରୟୋଗ କରାଯାଏ ମୁଁ ତା' କରି ନଥିଲି, ତେଣୁ ତାଙ୍କର କହିବାର ହିଁ କଥା । ବାଟରେ ଆହୁରି କେତେ ଲୋକ ଆସିଲେ, ସେମାନେ ସେହି ରେଲିଂରୁ ଝୁଲିବାକୁ ଚେଷ୍ଟା କଲେ । ଏଥର ସବୁ ମୁହଁ ସବୁ ଦେହ ଲାଗାଲାଗି, ଏକ, ଅବିଚ୍ଛେଦ୍ୟ, ତେଣୁ ମୁହଁକୁ ମୁହଁ ଦିଶୁନାହିଁ । କାହା କାନ୍ଧ ବୁଜୁଳାର ନଡ଼ିଆ ମୋ ଦେହରେ ଆଘାତ କଲା । କିଏ ଧରିଥିଲା ଲମ୍ବ ଲୁହା କରଚୁଲି, ତା'ର ଲଙ୍ଗର ମୁନ ମୋ ଗୁପ୍ତ ପକେଟକୁ ବାଛି-ନେଲା । କାହାର କହୁଣି ମାଡ଼ରେ ଚଷମାଟି କାନରୁ ଖସି ପଡ଼ିବାରୁ ଗୋଟାଇବାକୁ ନଇଁପଡ଼ିଲା ବେଳକୁ ପଡ଼ୋଶୀଙ୍କ ଝୁଲିମୁଣିର ନଡ଼ିଆ ଯୋଡ଼ିଏ ମୋ ମୁଣ୍ଡରେ ଡାଇଡାଇ ଆଶୀର୍ବାଦ କଲେ ।

ଗରମରେ ଶସ୍ତା ସିଗାରେଟ୍ର କଡ଼ା ଆଲୌକିକିଆଁ ଧୂଆଁ ନାକରେ ବାଜୁଛି । ଯେଉଁଆଡ଼ୁ ଧୂଆଁ ଆସୁଛି ସେ ଆଡ଼କୁ ନଜର କଲାବେଳକୁ ସେଠି ଲେଖା ହୋଇଛି "ଧୂମପାନ ନିଷେଧ ।"

ଗାଡ଼ି ଭିତରେ ଯୋଡ଼ିଏ ସ୍ଥାନରେ ପଡ଼ୋଶୀ ପଡ଼ୋଶୀଙ୍କ ଭିତରେ ଜାଗା ଦଖଲ ସତ୍ତ୍ୱ ସମ୍ବନ୍ଧରେ କଳି ଆରମ୍ଭ ହୋଇଗଲାଣି, ଠାଏ ମାଇନର ଶ୍ରେଣୀର ଇଂରେଜୀରେ ଆଉ ଠାଏ ପ୍ରଥମ ଶ୍ରେଣୀର ବିଶୁଦ୍ଧ-ଭାଷାରେ ।

ନାନାପ୍ରକାର ଆଲୋଚନାର ବାକ୍ୟ ଶୁଭୁଥାଏ । ଠାଏ ସ୍ବଳ୍ପ ଦୁର୍ମୂଲ୍ୟ ବିଷୟରେ ଆଲୋଚନା; ପରେ ଯେପରି ବିପ୍ଳବକମଣ୍ଡଳୀର

ବୈଠକ ବସିଛି । ଆଉ ଠାଏ ଦେଶ ବିଦେଶର ରାଜନୀତିର ଖବର ଆଲୋଚିତ ହେଉଛି, ସେହି ଭାଷାରେ ଯହିଁରୁ ନ ଜାଣିଲା ଲୋକର ଧାରଣା ହେବ ଯେ ପୃଥିବୀର ରାଜନୀତିରେ ବଡ଼ ବଡ଼ ଲୋକମାନେ ଏ ବକ୍ତାମାନଙ୍କର ସାଙ୍ଗ କି ସାଙ୍ଗ-ପତ୍ରୁଆ ତ ନିଶ୍ଚୟ, ଆପଣା ଉଦ୍ଦେଶ୍ୟ ଓ ଭବିଷ୍ୟତ ଯୋଜନା ସମ୍ପର୍କରେ ତାଙ୍କ ପାଖକୁ ମାସରେ ଅନ୍ତତଃ ଦୁଇଥର ଚିଠି ଲେଖୁଥିବେ ।

ଏକାଠି ବହୁତ ଲୋକଙ୍କ ସଙ୍ଗରେ ମେଞ୍ଚାମେଞ୍ଚି ହୋଇ ଏକ-ହେବାର ଅନୁଭୂତ ବଢ଼ି ବଢ଼ି ଆସୁଥାଏ, ଆଉ ସେହି ଘର-ଦ୍ୱାର ଭାବ ଯେ ମଣିଷ ମନଭିତରେ ଲୁଚି ଛପିଥାଏ, ଉନ୍ମତାନି ହୋଇ ବାହାରେ, ଚରିସରଯାକ ପୂର୍ଣ୍ଣ ହୋଇ ରହେ । ଲାଗୁଥାଏ, ଏ ବସ୍ 'ଆମ ବସ୍', ରାସ୍ତାରେ ଆଉ ଯେତେ ଗାଡ଼ି ମଟର ଚାଲିଯାଉଛି ତାଠୁଁ ପୃଥକ ଭିନେ, ସେ ସବୁ ପର । ଏ୍ୱ ଆମ ଆପଣାର ।

କିଛି ଦୂରରେ ଯେପାଖୁ ଆସୁଥିବା ବସ୍ ତା'ର ବେଗ କମାଇଲା, ପାଖ ହେବାରୁ ସେଥିରୁ କିଏ ଖବର କହିଗଲା—"ହୁସିଆର, ଆଗରେ ଜମାବାଇଲ କୋର୍ଟ ।" ବସ୍‌ର ଆଗରୁ ଶେଷଯାକେ ଗୋଟାଏ ଉତ୍ତେଜନା ଖେଳିଗଲା । ଯେଉଁମାନେ ବସିଥିଲେ ଆଉ ଯେଉଁମାନେ ଊର୍ଦ୍ଧ୍ୱବାହୁ ହୋଇ ଓହଳିଥିଲେ ତହିଁରୁ ଅନେକେ 'ଆମବସ୍' ପ୍ରତି ସ୍ଥାନ—ଅନୁରକ୍ତିରେ ଉଦ୍‌ବୁଦ୍ଧ ହୋଇ ଉଠିଲେ, ଠିକ୍‌କଥା, 'ଆମବସ୍' ଯେପରି ବିପଦରେ ନ ପଡ଼େ । କଣ୍ଡକ୍‌ଟର ତା'ର ନିର୍ଦ୍ଦୋଷିତା ବୟାନ କରିବାକୁ ଲାଗିଲା—"ଆମ ଶେଠଙ୍କ ଉପରେ ସବୁ ଚଡ଼କ, ଦେଖନ୍ତୁ ଆଜ୍ଞା, ମୋର କି ଦୋଷ । ମୁଁ ମନା କରୁ କରୁ ସମସ୍ତେ ପଶିଆସିଲେ, ମୋର କି ଗୁରୁ, ଏଣିକି ଆପଣ ରଖିଲେ ରଖନ୍ତୁ ନ ରଖିଲେ ନାହିଁ ।"

'ସତ ସତ ଠିକ୍-ଠିକ୍, ଆମର କାମ ଥିଲା ଆମେ ଆସିଲୁଁ, ତା'ର କି ଦୋଷ । ସମସ୍ତିଙ୍କ ଭିତରେ ସହାନୁଭୂତି । ସମସ୍ତେ ପ୍ରତିଜ୍ଞାବଦ୍ଧ, ତାକୁ ସାହାଯ୍ୟ କରିବାକୁ ପଡ଼ିବ ।

ଉପାୟ ବଡ଼ ସହଜ ଆଉ ଅଭ୍ୟସ୍ତ । ଠାଏ ସେ ଗାଡ଼ି ଠିଆକଲା, ଅନେକ ଲୋକ ଓହ୍ଲାଇଗଲେ । ସେମାନେ ହସି ହସି ଉତ୍ସାହରେ ଓହ୍ଲାଇଗଲେ, ଆପଣା ହକକୁ ଫାଙ୍କିବା ଲାଗି ଆପଣା ଚତୁରତାରେ ଆଜେ ସେମାନେ ଗର୍ବିତ । କଣ୍ଡକ୍ଟର ଉତ୍ସାହ ଦେଉଥାଏ, 'ମୋଟେ ପାଏ ବାଟ, ସେ ଏକ ତାହଆ ବରଗଛତଳେ ତା' ଗାଡ଼ି ଠିଆହେବ, ବାଟଚଲା କ'ଣ; ଖାଲି ଘୁରଟାବେଳଆ ହାଓ୍ୱାଖିଆ ସିନା ।'

ଖଣ୍ଡେଦୂରରେ ଆଗରେ ଉପରକୁ ଟେକହେଲା ଆଇନ୍‌ର ହାତ । ଗାଡ଼ି ଅଟକଲା । କଣ୍ଡକ୍ଟର ଓହ୍ଲେଇଲା । ଅଳ୍ପସମୟ ପରେ ପୁଣି ଛାଡ଼ ମିଳଲା । ଗାଡ଼ି ଚାଲିଲା । ପଛକୁ ଚାହିଁଲେ ଦିଶୁଛି ଯୋଉଁମାନେ ଓହ୍ଲେଇ ଥିଲେ ସେମାନେ ଏକାଠି ଧାଡ଼ିହୋଇ ଚାଲି ଚାଲି ଆସୁଛନ୍ତି ।

ଏକ ତାହଆ ପୁରୁଣା ବରଗଛତଳେ ଗାଡ଼ି ଅଟକଲା, ଅପେକ୍ଷା କଲା । ସେମାନେ ଆସିଲେ, ବସିଲେ, ଠିଆହେଲେ, ଓହଳଲେ, ଗାଡ଼ି ଚାଲିଲା ।

'ତେରା ମେରା ରାଜୀ ତୋ କ୍ୟା କରେଗା କାଜୀ' କିଏ କହିଲା । ହସ ଉଠିଲା ।

ମୁଁ ଝରକାପାଖେ ବସିଲିଣି, କାଚ-ଜନପୋଇଁ ଯେ କ୍ଷତିପୂରଣ ଆଦାୟ କରିବେ ବୋଲି ଚଢ଼ିଥିଲେ ସେ କ୍ଷତିପୂରଣ ନ ନେଇ ଓହ୍ଲାଇ ଗଲେଣି । ଏଥର ଆପଣାର ଦେହକଷ୍ଟ ଅଳ୍ପ ଅଳ୍ପ ବାରି ହେଲାଣି । ଠାଏ ଠାଏ ବଥା କି ଜଳାପୋଡ଼ା, କାମିଜର ଦ'ଜାଗା ଚିରିଯାଇଛି । ମୁଣ୍ଡ ଉପରବାଟେ ପଦାକୁ କିଏ ପାନରସ ପିଚକାରି ମାରିଥିଲେ, ଧଳା କାମିଜ୍ ଉପରେ ଠାଏ ଠାଏ ତା'ର ଛିଟା ରହିଯାଇଛି, ଆଉ କଞ୍ଚା-ଅର୍କ ଦିଆ ଜର୍ଦ୍ଦାର ବାସ୍ନା ।

ଏଥର ନଦାକର ହେଲା କେତେ କେତେ ଚହ୍ଳା ମୁହଁ, ମୁଁ ସେମାନଙ୍କ ପରି ସିଟ୍‌ରେ ବସିଲିଣି, ତେଣୁ ଉଭୟ ପକ୍ଷରୁ ଦମ୍ଭାଷରେ ଆପତ୍ତି ନାହିଁ । ଆଗେ ମୋର ଝୁଲନ୍ତ ଅବସ୍ଥାରେ ଯେ ମୁହଁ ମଙ୍ଗେ

ବଲ୍‌ବଲ କରି ଚାହିଁଥିଲେ, କଥା କହୁନାହାନ୍ତି, ଟାଇପ୍ ସିକ୍ସ ବଡ଼ ଘର ପିଣ୍ଡାରୁ ଯେପରି ମୁହଁମାନ ଚାହିଁରହନ୍ତି ଦୃଷ୍ଟା ସେପାଖେ ଟାଇପ ଫୋର୍ ମାନ ଘର ପିଣ୍ଡାର ମୁହଁମାନଙ୍କୁ ।

'ବ୍ୟବସାୟ କେମିତି ଚାଲିଛି ଜଟିବାବୁ', ଧର୍ମବାବୁ ପଚାରିଲେ । ଏକା ଦପ୍ତରରେ ଆମେ କାମ କରୁଥିଲୁଁ, ତା' ଆଗରୁ ଏକାଠି ପଢ଼ୁଥିଲୁଁ, ବୋଧହୁଏ ଏକା ସାଲରେ ଜନ୍ମ ହୋଇଥିଲୁଁ, କିନ୍ତୁ ତାଙ୍କୁ ଅଠାବନ ବର୍ଷ ହେବାର ତିନିବର୍ଷ ପୂର୍ବରୁ ମୋର ଅଠାବନ ପୂରିଥିଲା, ତେଣୁ ମୁଁ ପେନ୍‌ସନ୍ ନେଲି । ଔଷଧ ବିକିବା ଏଜେନ୍‌ସି ନେଲି । ସମସ୍ତଙ୍କ ଗୋଚରାର୍ଥେ ପ୍ରକାଶ କରିବା ଉଚିତ, ଆମର କେତୋଟି ଔଷଧର ଚାହିଦା ଚାରିଧାମରେ ବଢ଼ିଯାଇଛି । ଗୋଟିଏ କୃଷ୍ଣାବେଣୀ ତେଲ ଚନ୍ଦା ହୋଇ ଆସୁଥିବା ମୁଣ୍ଡପାଇଁ ଭାରି ଦରକାରୀ । ଗୋଟିଏ ଗିରିଗୋବର୍ଦ୍ଧନ ତେଲ, ବାତବେଗ ହୋଇ ଯେଉଁମାନଙ୍କର ହାତ ଟେକିହୁଏ ନାହିଁ, ଏ ତେଲ ତାଙ୍କର ଉପକାର କରେ । ଗୋଟିଏ ବୃହତ୍ ପାତାଳ ଗରୁଡ଼ମୋଦକ, ରକ୍ତଚାପ କମାଏ, ଆଉ ଗୋଟିଏ 'ମହର୍ଷି ଆନନ୍ଦବର୍ଦ୍ଧିନୀ ସାଲସା' ଦପ୍ତରରେ ଅତ୍ୟଧିକ ପରିଶ୍ରମ, ଚାକିରିରେ ବେଇମାନ, ଅବହେଳା ଓ ସମାଗତ ସୁପରସେସନ୍-ଜନିତ ଅବସାଦ, ପରୀକ୍ଷାରେ ଫେଲ୍, ଜୀବିକା-କ୍ଷେତ୍ରରେ ନାକଚ୍, ଘରେଇ ବ୍ୟାପାରରେ ଝିଅପାଇଁ ବର ଅଭାବ ଇତ୍ୟାଦି ଯେତେ ଯେତେ ମନସ୍ତାପର କାରଣମାନ ଘଟିଥାଏ ଏ ଔଷଧ ସେବନ କଲେ ସେସବୁ କାରଣ ନିଶ୍ଚିହ୍ନ ହୁଏ । ଧର୍ମବାବୁ ଶୁଣି ଖୁସି ହେଲେ ତାଙ୍କର ମହର୍ଷି ଆନନ୍ଦବର୍ଦ୍ଧିନୀ ଦରକାର ହେଲାଣି । କିନ୍ତୁ ସମସ୍ତ ଆଲୋଚନା ତାହାର ଉପରେ ଚାଲିଲା, ଅନେକେ ଯୋଗ ଦେଲେ । କେତେ ଲୋକ ହସି ଉଡ଼ାଇ ଦେବାକୁ ଚେଷ୍ଟା କଲେ, କିନ୍ତୁ ପ୍ରଦେଶ ବାହାର କେତୋଟି ବଡ଼ ବଡ଼ ଗରାଖଙ୍କ ନାଁ ଶୁଣୁ ଶୁଣୁ ସେମାନେ ଚୁପ ହେଲେ । ଏ ମଧ୍ୟ ବ୍ୟବସାୟର ପ୍ରଚାର ପାଇଁ ଗୋଟିଏ ସୂତ୍ର, ଏ ଦେଶରେ ବାହାରର ମତ ପ୍ରତି ବେଶି ସମ୍ମାନ ।

ସେ ଆଲୋଚନା ବି ସରିଲା । ବିସ୍ ଯାହାର ବିଷୟ ଅଧିକରେ ଅନେକେ ଆଶ୍ୱସ୍ତ ହୁଅନ୍ତି ।

ପଦାକୁ ବିଦା କଲି ।

କେତେ ଗଞ୍ଜଳ ଦେଶର କେତେବ ବଦଳ ଯାଉଛି । ଯନ୍ତ୍ରକ କରେ କରେ ଅପନ୍ତରର କ୍ଷେତରେ ନୋକା ଲଗିଛି କୋଠା, ଦତା ବୁଲୁଛି, ଘାନେ ହ୍ଳାବେନ ସାଇନ୍‌ବୋର୍ଡ଼ । ବେପାର କାରବାର ।

ମଝିରେ ମଝିରେ ଜଅନ୍ଧା ତୋଫାନ ପରି ଧାଇଁ ପଳାଉଛି ନେଗାଟାକ ପରେ ଗୋଟାଏ ଟ୍ରକ୍, ପଥର ବୋହୁଛି ।

ମନେପଡ଼ୁଛ, ପାରାଦୀପ୍ ବନ୍ଦର ତିଆର ହେଉଛି । ଏ ପୃଥିବୀ ତିଆର ହେଲାଦିନୁ କେତେଠି ଲୁହାର ପାହାଡ଼ ସୃଷ୍ଟି ହୋଇ ପଡ଼ିରହିଥିଲା, କେଉଁ ଗଡ଼ଜାତ ଭିତରେ, କେଉଁ ମାଳ ଅଞ୍ଚଳରେ । କେଉଁଠି ସେ ଘୁଙ୍ଗା ମଉଥିଲା, କେଉଁଠି ଅବା ଜଙ୍ଗଲ ଘୋଡ଼ହୋଇ ତା'ର ସେ ଥିଲା, କାହାର କାମରେ ଲଗୁ ନଥିଲା । ଲୁହାପଥର ତଡ଼ାହୋଇ ଗୋଟା ହୋଇ ଜାପାନ ଦେଶକୁ ଯାଉଛି । ତାଙ୍କର ଲୁହା ଦରକାର, ଆମର ଦରକାର ବିଦେଶୀସ୍ମ ମୁଦ୍ରା, ନାନା ଆବଶ୍ୟକ ଜିନଷ ବିଦେଶରୁ କଣିବା ପାଇଁ । ଆମଦାନ ରପ୍ତାନ, ଦେଣ ଆଉ ନେଣ, ଅତି ପୁରୁଣା ଏ ପ୍ରଥା, ଆଦିମ ଯୁଗରୁ, ଉଭୟେ ଉପକୃତ ।

ବନ୍ଦର ଆଣିବ ସମୃଦ୍ଧି, କେତେ ଲୋକ ନିଯୁକ୍ତି ପାଇବେ, କେତେ ଗୁଡ଼ଏ ଆଉ ଉଠିବ ଶିଳ୍ପ । କୋଠାବାଡ଼, ମଟରଗାଡ଼ି, ବିଜୁଳି, ଉଡ଼ା-ଜାହାଜ, ଜୀବନରେ ବେଗ, ଉନ୍ମାଦନା, ଉତ୍ତେଜନା, ଆଉ ମାନ୍ଦା ମଠଆ ଦିନ ନାହିଁ ।

ସେଇ ସୁଦିନର ଆଗୁଆ ବାହିନୀ ଏମାନେ, ଏଇ ବିଜୁଳିବେଗରେ ଏତେ ଏତେ ଟ୍ରକ୍, କେଉଁ କେଉଁ ଆଡ଼ର । କ୍ଷେପେ କଲେ କୁଆଡ଼େ ତିନଶହ ଟଙ୍କା ।

ଯେଉଁ ବଳୁଆଟି ଟ୍ରକ୍ ଚାପରେ ମଲା, ଯେଉଁ ବଳଦ ମଲା, ସେମାନେ କ'ଣ ଜାଣିଥିଲେ ଏ ଟ୍ରକ୍ ଆଗୁଆ ଯୁଗର ପ୍ରତୀକ । ଯେତେ ଯେତେ ଟ୍ରକ୍ ଓଲଟିଲା, ଯେତେବେଳେ ଯେଉଁ ଲୋକ ମଲେ ସେମାନେ କ'ଣ ବୁଝିଥିଲେ ସେମାନେ ଏ ଯୁଗର ମେଉଆବଳ, "ରାଜ ଉଜେଡା ଆଡାଇ ଦେଶ ଉଜେଡା ଆଡାଇ ଷଣ୍ଢିମ୍ ଜାନେ", ଅର୍ଥାତ୍ କହିବ

ଶ୍ଳୋକରେ, ଦେବତା ଏ ବଳି ଖାଇଲେ ରାଜ୍ୟ ଉଜ୍ଜ୍ୱଳ ହେବ, ଦେଶ ଉଜ୍ଜ୍ୱଳ ହେବ । ସେମାନେ କ'ଣ ଜାଣିଥିଲେ ସେମାନେ ପାଗଳର୍ ପାଇଁ ଶହୀଦ୍, ଦେଶର ବିସ୍ତାର ପାଇଁ ଶହୀଦ୍ । ଏଇ ଫୁଲ୍‌ନାଖରା ଯେତେବେଳେ ଶିକାଗୋ ପରି ସହର ହେବ ଯେଉଁମାନେ ଯେତେବେଳେ ଥିବେ ସେମାନେ କ'ଣ ଏମାନଙ୍କ ନାଁ ଜାଣିବେ ? ହୁଏତ ହୀରାକୁଦ ଉପରେ ଯେପରି ହୋଇଛି ସେପରି ଗୋଟିଏ ସ୍ମୃତିସ୍ତମ୍ଭ କରି ସେ ନାଁଗୁଡ଼ିକ ଲେଖି ରଖିଲେ ରହିଯାଆନ୍ତା; କିନ୍ତୁ ଯେତେବେଳେ ବୋଧହୁଏ ଆହୁରି ଆହୁରି ପ୍ରଗତି-ପାଇଁ ଆହୁରି ଆହୁରି ଶହୀଦ୍ ଜୀବନ ଦେଉଥିବେ, ନମେଷ୍ଟକ, ନମେଷ୍ଟକେ ।

ଚିନ୍ତାରେ ବାଧା ଜନ୍ମାଇ ବସ୍ ଠିଆହେଲା, ଗାଡ଼ିଯାକ ଦବିଲା ଦବିଲା ଧୀର ଧୀର କଥା ।

"ହଁ, ଏଇଠି ! ଏଇଠି !"

ଗୋଷ୍ଠି ଗୋଷ୍ଠି ହୋଇ ସେମାନେ ଓହ୍ଲାଇ ଠିଆହେଲେ । କାହା ଠାଣିରେ ଔଦ୍ଧତ୍ୟ ନାହିଁ, ଦାମ୍ଭିକତା ନାହିଁ ।

ଭଙ୍ଗା ଟ୍ରକ୍ ନାହିଁ, ମଣିଷ ମୁର୍ଦ୍ଦାର ନାହିଁ । ସଡ଼କରେ ଅଳ୍ପ ବାଙ୍କ, ବାଁକୁ । ସେଠି ଗଛ ଗହଳ ଫାଙ୍କା, ଖାଲି ପାଖକୁ ପାଖ ହୋଇ ଯୋଡ଼ାଏ ପୁରୁଣା ଖଜୁରିଗଛ ଠିଆ ହୋଇଛି, ତା ଉପରେ ପେନ୍ଥା ପେନ୍ଥା କସର୍ କସର୍ ଫଳ, ଅଳ୍ପ କେତୋଟା ବାହୁଙ୍ଗା, କେତୋଟା ବାୟା ବସା । ତା ପିଠିଆଡ଼େ ଖାଁ ଖାଁ କ୍ଷେତ, ଦୂରରେ ବାଲିପଟା, ଆଉ ଅତି ଦୂରରେ ଢଳି ପଡ଼ୁଥିବା ସୂର୍ଯ୍ୟ ।

ତୀର୍ଥକୁ ଯାଇ ଦୀଅଁ ଦର୍ଶନ କଲାପରି ଆମେ ତାକୁ ଅନାଇଁ ରହିଲୁଁ । "କାହିଁ କ'ଣ ?" କିଏ ଜଣେ ପଚାରିଲା । "ହେଇଟି ପରା", କଣ୍ଡକ୍ଟର୍ କହିଲା, "ଉପରକୁ ଅନାନ୍ତୁ ।"

ସମସ୍ତଙ୍କ ଆଖି ଏକାଠି ଉପରକୁ ଉଠିଲା । ଗୋଟାଏ ଖଜୁରି ଗଛର ଗଣ୍ଡିରେ ବହୁତ ପୁରୁଣା ଲମ୍ବା ଧଳା ଦାଢ଼ି କେମିତି ଲାଖି

ଯାଇଛି । ଯେମିତି କିଏ ସେଠି ଗାତ ଖୋଳି କାହା ଯୋଡ଼କୁ ଟାଣି ନେଇ ସେଠି ପୋତି ଦେଇଛି ।

ମଣିଷ ଚାଲିଯାଇଛି ।

ଦାଢ଼ି ରହିଯାଇଛି ।

ପବନରେ ସେ ଲମ୍ବା ଦାଢ଼ି ଫୁରୁଫୁରୁ ହୋଇ ଉଡ଼ୁଥାଏ । ବେଗ ଓ ଗତିର ଶହୀଦ୍ ଖଜୁରି ଗଛର ସ୍ମୃତିସ୍ତମ୍ଭ ଉପରେ ଆପଣାର ନିଶାଣ ଥାପି ଏ ପୃଥିବୀରୁ ବିଦାୟ ନେଇ ଚାଲିଯାଇଛି ।

ଗାଡ଼ିରେ ବସିଲୁଁ । ଗାଡ଼ି ଚାଲିଲା । ଏଥର ଟିକିଏ ଧୀରେ ।

"ଝଂକାର" ଏପ୍ରିଲ୍ ୧୯୬୭



# ଚନିକାଳ

## ଏକ

ତଥାପି ଦୂରରେ ଦଶୁଛି ସେହି ବାଙ୍ଗର ଧୂଆଁଳିଆ ପାହାଡ଼ର ଦାନ୍ତ, ଆସ୍ତେ ବାଙ୍କ ବୁଲିଛି, ବାଁକୁ ଆଉ ଡାହାଣକୁ । ଜଙ୍ଗଲ ବି ହୋଇପାରେ, ଅଥବା ସମୁଦ୍ର, ଖରାବେଳେ ଏ ଘରର ସାମ୍ନା ଲମ୍ବା ବାରଣ୍ଡା ଉପରୁ ଠିଆହୋଇ ମୁଁ ଯେତେବେଳେ ଅନ୍ୟମନସ୍କ ହୋଇ ଅନାଇଁ ରହେ, ଅର୍ଥାତ୍ ଅନାଏଁ ନାହିଁ, ତେଣିକି ମୁହଁ ଡେଇଁ ନଜରକୁ ଝୁଲାଇ ରଖେ ସମସ୍ତ ଉପରେ, କେବେ କେବେ ତାକୁ ଦେଖିଲା ପରି ଲାଗେ, କେତେଥର ଭାବିଥିବ ସେ ସମସ୍ତର ଢେଉ ନାଚୁଛି, ବଙ୍କୋଉଛି, ଅଦୃଶ୍ୟ ହେଉଛି, ପୁଣି ତା ସ୍ଥାନରେ ଭର୍ତ୍ତିହେବ ପାଣି, ସେହି ଢେଉର ନାଚ । ଦୂର, ଖୁବ୍ ଦୂର, ତେଣିକି ମୁଁ କେବେ ଯାଇନାହିଁ, ଚାଲି ଚାଲି, କି ସାଇକଲରେ, ବସ୍‌ରେ, ରେଲ୍‌ରେ, ଏଗୁଡ଼ାକ ବାଟରେ ଚାଲେ, ସେଠିକି ବାଟ ନାହିଁ, କେଉଁପଟେ ସୂର୍ଯ୍ୟ ବୋଲି ମନରେ ଗୋଟାଏ ନିର୍ଦ୍ଦିଷ୍ଟ ଧାରଣା ନକଲେ ତା ଦିଗ ବି ମୁଁ କହିପାରିବ ନାହିଁ । ଆଖି ବୁଜି ଠିଆ ହେଲି, ଏପଟ ସେପଟ ବୁଲି ପଡ଼ିଲି, ଠିଆ ହେଲି, କୌତୁକରେ ଭାବିଛି ଦେଖେଁ କେଉଁ ଦିଗରେ ସେଇଟା, ଆଖି ବୁଜି ସିଆଡ଼କୁ ମୁହଁ କରେ, ପାରି ନାହିଁ । କିନ୍ତୁ ମନେ ମନେ ଦେଖିଛି, ସେଇ ଧୂଆଁଳିଆ ବେଢ଼ର ଦାନ୍ତ, ସେ ପାହାଡ଼ କି ଦରିଆ କି ବଣ । ଆଜି ଲାଗିଛି, ସେସବୁ ଯେ କିଛି ନୁହେଁ, ଖାଲି ଶୂନ୍ୟର ଢେଉ । ଖରାବେଳେ ଶୁଖିଲା କ୍ଷେତ ଉପରେ ଯେମିତି ତେଉ ନାଚେ । କି ଆଶ୍ଚର୍ଯ୍ୟ ! ମୋ ଦେଖାଚାକ୍ଷ ସଂସାରରେ, ଆମ ଦେଶରେ ଏତେ ପରିବର୍ତ୍ତନ ହେଲା, ଇଂରେଜ ଥିଲେ, ସ୍ୱାଧୀନତା ଆସିଲା, ଆସିଲା 'ଅନୁଶାସନ ପର୍ବ' ଅମଳ, ଏମର୍ଜେନ୍‌ସି,

କୋଡ଼ିଏ ପଏଣ୍ଟ୍ କାମ, ଦେଶକୁ ଟାଣକରି ବାନ୍ଧି ଏକାଠି କରି ରଖି ଛେଳି ପିଟି ନଦୀ କରି ଇସ୍ପାତ୍ ଲୁହା ପରି ଦମ୍ଭ କରିବାକୁ ନୂଆ ଉତ୍ସାହ, ତଥାପି ଦୂରରେ ସେହି ମୁଣ୍ଡ଼୍ଳାର ଚେଉ ।

ଖାଲି ସେତିକି ନୁହେଁ, ଯେତେବେଳେ ବି ଶୂନ୍ୟ ଆଉ ଆକାଶ ଦେଖୁଥିଲି, ଝିଣ୍ଟିକାଟିଏ ଘାସରୁ ଡେଇଁଲେ ମାଟି ଗୁଡ଼ିଲି, ସେଉଠୁ ସେ ଉପରକୁ ଉପରକୁ କାହିଁକା କାହିଁ । ଯାଆ ଯେତେଦୂର ଖାଲି ଶୂନ୍ୟ ପହଁଞ୍ଚ, ନିଜେ ଥକି ପଡ଼ି ଅଚେତ ହେବାଯାକେ । ସେ ଶୂନ୍ୟ ବି କେମିତି ନିବିଡ଼ ଭାବେ ଗୋପନରେ ଛପି ରହିଥାଏ ପ୍ରତି ବସ୍ତୁକୁ ଘେରି, ପ୍ରତି ବସ୍ତୁର ପ୍ରତ୍ୟେକ କଣିକା ଭିତରେ, ମୋ ନିଜ ଚେତନା ଭିତରେ । ସବୁଠି ତ ସେ, ଯେମିତି ସବୁ ଜିନିଷର ସବୁ କଥାର ଆଉ ଗୋଟିଏ ସତ୍ତା ।

ଏତେ କାଳ ହୋଇଗଲା ଏଠି ମୋର, ଯେତେ ଯାହା ଦେଖିଲି, ଅଙ୍ଗେ ନିଭେଇଲି, ପଢ଼ିଲି, ଶୁଣିଲି, ଜାଣିଲି, ସ୍ୱପ୍ନ ଦେଖିଲି କି କଳ୍ପନା କଲି, ବାରମ୍ବାର ସବୁ ଆପେ ଯୋଖିହୁଏ ସେ ଶୂନ୍ୟ ଉପରେ, ଆଗ ଆଗ କେଡ଼େ ସୁନ୍ଦର ସ୍ପଷ୍ଟ ହୋଇ ଝଟକି ଉଠେ, ଲାଗେ ମୁଁ ଛୁଇଁପାରୁଛି ତାକୁ, ଧରି ପାରୁଛି, ସେଉଠୁ କେମିତି ଝିଲମିଲ ଝିଲମିଲ ହୁଏ, କ୍ଷୀଣରୁ କ୍ଷୀଣତର ହୁଏ, ମଉଳିଗଲା ପରି, ଯେଉଠୁ ଦେଖେ ସେ ନାହିଁ । ନାହିଁ ? ଅସମ୍ଭବ ଲାଗେ । ମନ କହେ, ସବୁ ଅଛି, ଖାଲି ତା ରୂପ ପାଲଟି ହୋଇଛି ଶୂନ୍ୟ ରୂପ ।

ଯେମିତି ଆକାଶ—ଦିନ ରାତି, ବାର ମାସି, ବର୍ଷକୁ ବର୍ଷ, ସେଥିରେ କେତେ ଦୃଶ୍ୟ କେତେ ଛବି, ଚଢ଼େଇ, ବଉଦ, ମେଘ, କେତେ ବର୍ଣ୍ଣ, ପୁଣି ଦେଖିଲା ବେଳକୁ ସବୁ ପୋଛିପୋଛି, କାହିଁ କିଛି ନାହିଁ ତ ! ପୁଣି ଯେତେବେଳେ କେଉଁ କଣରେ ବିକଟ କାଳିଆ ମେଘ ମୁହଁ ଦେଖାଏ, ସେହି ସେ ଗୁହୁଁ ଗୁହୁଁ ବଢ଼ିଯାଏ, ଆକାଶ ଗୋଟାକ ବ୍ୟାପି-ଯାଏ, ମନେ ଅଜାଣତେ, ମୁଁ ଭାବେ ଏଥରକ ଏ ନୂଆ ନୁହେଁ, ଆଗେ ବି ଥିଲା, ତା'ପରେ ମୋ ଆଖିରୁ ଛପିଥିଲା ଶୂନ୍ୟ ରୂପ ଧରି । ଓ ପୁଣି ସେ ଧରିବ ସେହି ଶୂନ୍ୟରୂପ, ଆଉ ଆଖିକି ଦିଶିବ ନାହିଁ ।

ଏପରି ଭାବିବା କାରଣ ହୋଇପାରେ ଏତିକି, ଯେ ମୁଁ ଇତିହାସ ଛଡ଼ା ଇତିହାସ ଚର୍ଚ୍ଚାରେ ମୋ ଦିନ ବିତେଇଛି । ମୋ ଜୀବନରେ ଯେତେ ଯାହା ଇତିହାସ ଘଟିବାର ମୁଁ ଦେଖିଲିଣି ଜାଣିଲିଣି, ସେ ବିନ୍ଦୁ ଗୁଡ଼ିକରେ ଅଛି ତାଠୁଁ ବହୁଗୁଣ ବେଶି ଇତିହାସ, ମୋ ଜୀବନ ପଦ ନାଚିଆଏ ପାଣି, ସେସବୁ ତ ଅପରନ୍ତ ଶୂନ୍ୟ ସମୁଦ୍ର ! ବନ୍ଧ ହରିଯାଏ, ଆମେ ନାନା ସ୍ମାରକ, ଶିଳାଲେଖ, ମୂର୍ତ୍ତି, ମୁଦ୍ରା, ଭଙ୍ଗା ଖପର, ସେ ବି ସରିଯାଏ, ମିଳେ କେଉଁ ପଥରରେ କେଉଁ କୋଣରେ କେଉଁ ସ୍ମାରକ, ସେ ବି ସରିଯାଏ, ଇତିହାସ ସରେ ନାହିଁ । ଭାବିଲେ ଏଇ ମୁହୂର୍ତ୍ତରେ ଆଖି ଆଗରେ ଯାହା ଅଛି, ସେ ଅଛି, ଯେମିତି—ଅଧା କନ୍ଦରିଆ ଅଧା ଶାଗୁଆ ହୋଇ ବରେଣ୍ଡା ତଳେ ଏଇ ଘାସ ପଡ଼ିଛି, ନାଲି କଙ୍କର ଫୁଟିଲେ ଯେ ଉନ୍ନତି ରହିଛି, ଆଜ ଯେତେ ଘଟଣା ଦିଶୁଛି, ଶୁଭୁଛି—ବଡ଼ ବଡ଼ କଥା, ଆମର ସାଂସ୍କୃତିକ ଉତ୍ସବର ପ୍ରଥମ ଦିନରେ ମନ୍ତ୍ରୀ ବିକ୍ରମ ମଲ୍ଲ ଉତ୍ସବ ଉଦ୍‌ଘାଟନ କରିବେ, ଆମେ ଖଣ୍ଡା ପୂଜା ଓ ପାଇକ ଖେଳ ଦେଖାଇ ଆରମ୍ଭ କରିବୁଁ ଠିକ୍ କରିଛୁଁ, ସେ ଅବଶ୍ୟ ପରିବହନ ବିଭାଗର ମନ୍ତ୍ରୀ, କିନ୍ତୁ ଆମେ ଆଶା କରୁଛୁଁ ଆମର ଆନ୍ତରିକତା ସହଯୋଗ ଓ ନିଷ୍ଠା ତାଙ୍କୁ ଭଲ ଲାଗିବ, ସେକଥା ସେ ତାଙ୍କ ଉତ୍ତରରେ କହିବେ, ଆମର ଆଉ ଗୋଟିଏ କୋଠାଘର ଦରକାର, କଲେଜରେ ଜାଗା ହେଉନାହିଁ, ଅନେକଥର ଜଣାଇଲୁଣି, ଆଶା କରୁଛୁଁ ମାନ୍ୟବର ବିକ୍ରମ ମଲ୍ଲ ଏଥର ଆସି ବୁଲି ଗଲେ ସେ ଆଶା ପୂରଣ ହେବ, ଆମମାନଙ୍କୁ ସେ ନିହାତିପୋଷ୍ଟ କରିବେ ତ ! ଯେ ଲାଗିଲେ ହେବ । ଅବଶ୍ୟ ସେ ଏଠି ଅଚିହ୍ନା ନୁହନ୍ତି, ଅର୍ଥାତ୍ ଏ କଲେଜ ତାଙ୍କୁ ଅଚିହ୍ନା ନୁହେଁ, ସେ ବି ମୋ ଛାତ୍ର ଥିଲେ, ଘର ବି ତ ପାଖରେ । ଦୁଇବର୍ଷ ଏଠି ପଢ଼ିଥିଲେ । ପାସ୍ କରି ପାରିଲେ ନାହିଁ ସେ ଭିନ୍ନ କଥା, ଇତିହାସ ଓଡ଼ିଆ ଗ୍ରୁପ୍ ଥିଲା, କିନ୍ତୁ ସେତେବେଳେ ସେ ଭବିଷ୍ୟତ ଗଢ଼ୁଥିଲେ, ଛାତ୍ର ନେତା ଥିଲେ, ନାନା କାମ । ହଁ, ସେ ସବୁ ତ ଅଛି, ଗୋଟି ଗୋଟି କରି କହିପାରିବ ଏମିତି କେତେ କଥା । କେତେ ଅବା ଭୁଲିଯାଇଥିବ । ସେ ଏକା କଥା, ଯାହା ମନେ ପଡ଼ିବ ସେତିକି କହିବ ତ ! ଯାହା ଦେଖିପାରୁଛି ସେଇଆକୁ ଦେଖୁଛି ବୋଲି କହିବ ତ ! ଅର୍ଥାତ୍ ଏବେ ମୋଠିଁ ଯେତିକି ଅଛି ସେହି ଶକ୍ତି ଅନୁସାରେ, ଯାହା ନାହିଁ ମୋ ଶକ୍ତିରେ, ତାକୁ ମୁଁ କାମରେ ଲଗାଇ ପାରିବ ନାହିଁ ।

ଆଉ, ଯେତେ ଯାହା ମୋ ଆଖରେ ଅଛି, ମନେପଡ଼ୁଛି, ମୁଁ ଜାଣେ ତା ପିଠିଆଡ଼େ ଆହୁରି ତାର ନାନା ରୂପରେ ଅଛିପଣ ଥିଲା, ତା ଶୂନ୍ୟ ରୂପ ତା ଇତିହାସ, ସବୁ ଶୂନ୍ୟ ରୂପ ପାଲଟିଛି, ଯେସୁ ବି ଶୂନ୍ୟ-ରୂପ ପାଲଟିବ, ଇତିହାସ ହେବ, ରୁହୁଁ ରୁହୁଁ ହେଉଛି, ମୁଁ ତା କଳି-ପାରୁନାହିଁ । ହେଇ ତ ମୁଁ ନିଜେ, ଆଜି ଦର୍ପଣରେ ଦେଖି ଆସିଲି ଆଜି ସକାଳର ମୋର ଅଛି-ରୂପ, ଫଟୋରୁ ଚାଳିଶି ବର୍ଷ ତଳର ଅଛି-ରୂପରେ ଗୋଟାଏ ପ୍ରକାର ଛବି ଏବେ ବି ଦେଖିପାରେ, କିନ୍ତୁ ପ୍ରକୃତରେ ମୋର ସେହି ସବୁ ଅଛିପଣ ଶୂନ୍ୟରୂପ ପାଲଟି ଇତିହାସରେ ମିଶିଛି, ଧ୍ୟାନ କଲେ ଗୋଟାଏ ଧାରଣା ଆସିବ, ଯେମିତି ଇତିହାସରେ ଥାଏ, ଆଉ ମୁଁ ତାକୁ ମନେରଖି ଭୁଣ୍ଡରେ କହି ବାଣ୍ଟେ । କିନ୍ତୁ ସବୁ ଧ୍ୟାନରେ ଏକା ରୂପ ଦିଶେ ନାହିଁ, ସମସ୍ତଙ୍କ ଧ୍ୟାନରେ ଏକା ରୂପ ଆସେ ନାହିଁ । ରାମ, କୃଷ୍ଣ, ସୀତାଙ୍କ ଛବି କି ମୂର୍ତ୍ତି ଭିନ୍ନ ଭିନ୍ନ ଲୋକଙ୍କ ଧ୍ୟାନରେ ଭିନ୍ନ ଭିନ୍ନ ହୁଏ ।

ଆଜି ମୋ ଧ୍ୟାନରେ ସେତେବେଳର ବିକ୍ରମ ମଲ୍ଲ ପ୍ରଶଂସା ପାଇବାକୁ ଖୁବ୍ ଯୋଗ୍ୟ ଥିଲେ, କହିପାରିବି ନାହିଁ ତ ! କେତେ କାହାଣୀ—ଗୁଡ଼ । ନୂଆ ଧ୍ୟାନରେ ନୂଆ ଇତିହାସ ଗଢ଼ିବାକୁ ପଡ଼ିବ । ଯେମିତି ଖାପିବ ଅସଲ କଥା, ସେମିତି ଖାପିବ । ଯୁଗୋପଯୋଗୀ ହେଲେ ସବୁ ଆଦର ପାଏ, ନହେଲେ ହତାଦର । ମାନପତ୍ରକୁ ଆମେ ଯୁଗୋପଯୋଗୀ କରିଛୁ । "ହେ ମହାତ୍ମନ୍, ହେ କର୍ମବୀର, ଆପଣ ଏ କଲେଜର ଉଜ୍ଜ୍ୱଳ ଆଦର୍ଶ ହୋଇ ରହିଥିଲେ । ଥିଲେ ଯୁବକଙ୍କର ପ୍ରେରକ, ସଙ୍ଗଠନର ଆଦର୍ଶ, ଜୀବନ୍ତ, କର୍ମତତ୍ପରତା । ଗୁଣ ଥାଇ ମୂର୍ଖତା କି ବିନୋଦ ମହାନୁଭବତା । କି ଆତ୍ମତ୍ୟାଗ ।" ମୋର ତ ଦୃଢ଼ ବିଶ୍ୱାସ, ଭବିଷ୍ୟତରେ ଏଠି ତାଙ୍କର ମଶାଲ ଧରା ମୂର୍ତ୍ତି ଥୁଆ ହେବ, ପୂଜାପାଇବ, କଲେଜର ନାଁ ଯା 'ଅଟର୍ଲି ସାହୁ କଲେଜ୍' ହୋଇଛି ତେଲିବାଜ ସାର ଶ୍ରେଷ୍ଠୀ ଅଟର୍ଲି ସାହୁ ଏଥିପାଇଁ ସବୁ ଜମି ଦେଇଥିଲେ, ସବୁ ଖର୍ଚ୍ଚ ଦେଇଥିଲେ ବୋଲି, ତା' ବଦଳି ନାଁ ହେବ ବିକ୍ରମ ମଲ୍ଲ କଲେଜ୍ । ମୁଁ ପ୍ରସ୍ତାବ ଦେବି । ପିଲାଏ ଖୁସି ହେବେ, ଦଳେ ଡାକ ଛାଡ଼ିବେ "ଆମର ଦାବି ଆମର ଦାବି", ଆଉ ଦଳେ କହିବେ "ପୂରଣ ହେଉ ପୂରଣ ହେଉ ।" "ଆମ କଲେଜର

ନାଁ" "ଆମ କଲେଜର ନାଁ", "ବନ୍ଧମ ମଲ୍ଲ କଲେଜ ହେଉ ।" "ବନ୍ଧମ ମଲ୍ଲ କଲେଜ ହେଉ ।"ଠିକ୍ ହେବ । ଲୋକଙ୍କ ଇଚ୍ଛା ହିଁ ଯୁଗର ଡାକ । ଡାକ ଜାଣିଲେ ଯୁଗର ଡାକରୁ ଲୋକଙ୍କ ଇଚ୍ଛା ଜଣାପଡ଼ିବ । ମାନନୀ ଲୋକ ସମ୍ମ ଦେଲେ ହିଁ ହେଲା । ହେଉ । ତାହା ହିଁ ହେଉ । ମୋର କଷ୍ଟ ମନେ-ରହୁନାହିଁ ସତ । ନାଁ ଭୁଲିଛି—ମୋ କୋଡ଼ପୋଛା ପୁଅ, ମାନେ, ଆଠଟି ଭିତରୁ ସବା ସାନ, ଡାକ ନାଁ ବଗା—ଭଲ ନାଁ ମନେ ପଡ଼ୁନାହିଁ, ଉହ ଭାବେ—ମଣିଷ ଆପଣା ପୁଅ ନାଁ ବି ଭୁଲେ ? ହଁ ତ । ନା ନା, କିଶୋର ଚନ୍ଦ୍ରାନନ ଆଚାର୍ଯ୍ୟ ତା' ନାଁଟି—ତା' ଡାକ୍ତରୀ ପଢ଼ା ସରୁ ସରୁ ଆଉ ତିନିବର୍ଷ ଅଛି—ଯଦି ଫେଲ୍ ନହୁଏ ତେବେ । କିଏ ଜାଣିଥିଲା ପଚାଶ-ବର୍ଷରେ ପୁଣି ଅଷ୍ଟମ ପୁତ୍ର ଲାଭ ଅଛି ? ହେଲା, ମୋ ଦାୟିତ୍ୱ ଲାଗିଲା । ମୋ ପର୍ଯ୍ୟନ୍ତ ରହିବାକୁ ଚାହେଁ ଏ କଲେଜରେ । ଆଜିକାଲି ସବୁବେଳେ ଠିଆ ହୋଇ ପଢ଼ାଇପାରେ ନାହିଁ । ଦେହ ଥରେ, ଗୋଡ଼ ଟଳେ । ବେଳେବେଳେ ନିଦ ବି ହୋଇଯାଏ । ଟେବୁଲ ଉପରେ ମୁଣ୍ଡ ଲଦି ଶୋଇ ରହେ ଇତିହାସ, ପିଲାଏ ଶୁଣୁଥିବେ । ବେଶି ପାଟି ହେଲେ ଉଠି ପଡ଼େଁ, କିଛି କହିଥାଏଁ, ଅଧ୍ୟକ୍ଷ ବାରମ୍ବାର ଉପଦେଶ ଦେଲେଣି "ଆପଣ ସ୍ୱାସ୍ଥ୍ୟ ଦୃଷ୍ଟିରେ—", ମୁଁ ହସିଦିଏଁ । ଯେଉଁ ହସ ହିଁ ସବୁ ବୁଝାଏ, ଇତିହାସର ହସ । କାମ କରିବ । ବଞ୍ଚିଥିଲେ ଦରମା ଗଣ୍ଠିକ । ଏଇଠି କେବେ ଯଦି ମୋର ମୃତ୍ୟୁ ଘଟେ, ସଭାର କହିବ ମୁଁ କର୍ତ୍ତବ୍ୟ କରୁ କରୁ ଆତ୍ମୋତ୍ସର୍ଗ କଲି ।

ତେଣୁ ଏଇଥର । ଆସନ୍ତୁ ମାନ୍ୟବର ମଲ୍ଲ । କଲେଜର ନାଁ ବଦଳିବା ଅଭିଯାନ ପର୍ବ ଆରମ୍ଭ ହେବ । ଅତୀତ ସାହୁଙ୍କ ନାଁ ଏଠି ବହୁ କାଳ ଭୋଗ କଲେଣି । କାହା ଧନରେ ଦାତା ବୋଲାଇ ଥିଲେ ? ନିଜ ଦେହରୁ ଝାଳ ବୋହିଥିଲେ ? ସବୁ ଧନ ତ ଅର୍ଜିଥିଲେ ଏ ଦେଶର ଲୋକଙ୍କଠୁଁ ନେଇ, ସତ ନୁହେଁ ?

## ଭୁଲ

ଅତୀତ ସାହୁ ଜାଗା ଦେଲେ, ଘର ତୋଳି ଦେଲେ, ବହିପତ୍ର, ସବୁ ଦରକାରୀ ଜିନିଷ କିଣି ଦେଲେ, ଦୁଇବର୍ଷ ନିଜ ହାତରୁ ସମସ୍ତଙ୍କ

ଦରମା ଦେଲେ, ଆଉ ଉନବିଂଶଫାଙ୍କ ଅଧେ ଖର୍ଚ୍ଚ ସାହାଯ୍ୟ ଦେଇଥିଲେ । ଯେତିକବେଳେ ମୁଁ ବି ଆସିଲି । "ହାଉ ନନା, ତମ ବିଦ୍ୟା କେହି ଚାହିଁଲେ ନାହିଁ, ଚାଲୁ ଫାଯନ୍ସ ପର ମୁଣ୍ଡରେ କେତେ ନୁଆ ଜିନ ବୁଲିବ ? ଏଇଠି ରହ, ଥାକ ଯା, ଦେଖି ଭାଇନା ତମ କଥା ବୁଝିବେ", ଅତିଥି ସାହୁ ମତେ କହିଥିଲେ । ମୁଁ ହେଲି ଅଧ୍ୟାପକ ହରବନ୍ଧୁ ଆଗ୍ରହୀ । ଦଧିବାବନ ପାର୍ଟୀ, ଆଗେ ଅଧ୍ୟାପକ ଥିଲେ ଠାଏ, ସେ ଥାନ୍ତି ଅଧକ୍ଷ । ଇଂରେଜୀରେ ଏମ୍.ଏ. । ସରୁ, ଡେଙ୍ଗା, ଜକ୍ ଜକ୍ କଳା, ଇଂରେଜୀ ଉଚ୍ଚାରଣ ଭୁଲ୍ ହେବ ବୋଲି ପାନ ଛୁଅନ୍ତି ନାହିଁ, ଇଂରେଜୀ କହନ୍ତି, ଏମିତି ଉଚ୍ଚାରଣ ଯେ କିଛି ବୁଝିହୁଏ ନାହିଁ । ସେ କହନ୍ତି ବହୁ କଷ୍ଟରେ ସେ ବିଶୁଦ୍ଧ ଇଂରେଜୀ ଶବ୍ଦ ଉଚ୍ଚାରଣ ଶୁଣି ଦେଖି ଅଭ୍ୟାସ କରି ଆୟତ୍ତ କରିଛନ୍ତି, ମୁହଁ, ଓଠ, ପାଟି ନାନା ପ୍ରକାର କରି ସେ କଥା କହନ୍ତି, ପିଲାଏ କାବା ହୋଇ ଅନାନ୍ତି, ଡରନ୍ତି, ମାନନ୍ତି ।

ଆଉ ମୁଁ ବି ଖୁବ୍ ଉତ୍ସାହରେ ନାନା ବହି ପଢ଼ି, ଘୋଷି, ଲେଖି ପିଲାଙ୍କୁ ଇତିହାସ ଗିଳେଇବାରେ ଲାଗିଥାଏ । ମନେ ପଡ଼ୁଛି, ଯେତେ ପରିଶ୍ରମ ଯେତେବେଳେ କରୁଥିଲି, ତା'ର ଅଧେ ପରିଶ୍ରମ ଅଧେ ଆଗ୍ରହ ଯଦି ମୁଁ ନିଜେ ପରୀକ୍ଷା ଦେବା ଅବସ୍ଥାରେ କରିଥାନ୍ତି, ଏମ୍. ଏ.ରେ ଦ୍ୱିତୀୟ ଶ୍ରେଣୀ ମୋର ହୋଇ ନଥାନ୍ତା । ନିଜେ ପଢ଼ି ପଢ଼େଇବାକୁ ଆରମ୍ଭ କଲାବେଳେ ମନେ ଲାଗୁଥାଏ ନୂଆ ନୂଆ ଜ୍ଞାନ ମୁଁ ପାଉଛି, ନୂଆ ନୂଆ ତଥ୍ୟ ଆବିଷ୍କାର କରୁଛି, ଦେବି, ସେଇ ମୋର ଆନନ୍ଦ । ପିଲାଙ୍କ ତୃଷ୍ଣାପୂରକ ଫିଟାଇ ଦେବି, ସେମାନେ ବି ପଣ୍ଡିତ ହେବେ ।

ପିଲାଙ୍କୁ ପଢ଼ାଏ ବହିରେ ଥିବା କଥା, କିନ୍ତୁ ସ୍ୱାଧୀନ ଭାବେ ନିଜ ମତ ବି କହେଁ, ଯେମାନେ ଅନୁପ୍ରାଣିତ ହୁଅନ୍ତୁ, ମୋ ମତ ତିଆରି ଆରମ୍ଭ ହୋଇଯାଇଥାଏ, ସେଇଥିରୁ ବଖାଣି ଯୁକ୍ତିକରି ମୁଁ ଅନ୍ୟାନ୍ୟ ଅଧ୍ୟାପକଙ୍କ ନାକେଦମ୍ କରେ, ଦଧିଭାଇନା ଉତ୍ତେଜିତ ହୋଇ ମୁଣ୍ଡ ହଲାଇ ଇଂରେଜୀରେ କ'ଣ ସବୁ କହନ୍ତି, ସମର୍ଥନ କି ବିରୋଧ, କି ମଝିଆ-ମଝି—ବୁଝିହୁଏ ନାହିଁ ।

ଯେଉଁସବୁ ମତ ଆଉ ମୋର ଅଛି କି ନାହିଁ ବୁଝି ନାହିଁ, ତା'ର ଭାବାର୍ଥରୁ କିଛି ମନେ ପଡ଼ିପାରେ, ତା' ଜୀଅନ୍ତାରୂପ ମନେ ନାହିଁ ।

ମନେକୋର ଯାହା କହୁଛ ସେଇଆ ମୋ ମତ କି ବର୍ତ୍ତମାନ ଶୁଣୁଛି ଯେ ସେତେବେଳେ ସେଇଆ କହୁଥିବ—ସନ୍ଦେହରେ ପଡ଼େ ।

“ମନଦେଇ ଶୁଣ ପିଲେ, ଇତିହାସର ସ୍ଥାନ ଅଦ୍ୱିତୀୟ, ସେ ସମଗ୍ର ଜୀବନ ବିଷୟରେ ତତ୍ତ୍ୱଜ୍ଞାନ । ପ୍ରତି ମଣିଷର ଜୀବନ ନୂଆ, ପୁଣି ଅତି ପୁରୁଣା, ସବୁ ଏକାଠି ଦେଖିଲେ କେତେ ଛନ୍ଦ ବାରହନ୍ଦ, ପୁଣି ନାନା ଘଟଣା ଲାଗେ ଆକସ୍ମିକ ବୋଲି, କିଛି ନଥିଲା, ହଠାତ୍ ହେଲା, ହଠାତ୍ ଛପିଗଲା, ଆଉ ଦିଶିଲା ନାହିଁ । ଇତିହାସର ନାନା କ୍ଷେତ୍ର, ନାନା ବିଷୟ, ସବୁଠିଁ ଏକା କଥା ଖାଟେ ନାହିଁ । ତମର ସମ୍ପର୍କ ଯୋଡ଼ଏ କଥା ବିଷୟରେ, ଗୋଟିଏ ହେଲା—ଶାସନର ଇତିହାସ, ଆଉଟି ସାମାଜିକ ଅବସ୍ଥାର କେତୋଟି ଦିଗର । ଶାସନ କଥା ଦେଖ, ବଳ ଥିଲେ କେହି କ୍ଷମତା ଚଳାଇବ । ବଳର ଏଠି ସାଧାରଣ ଅର୍ଥ, ଅନ୍ୟକୁ ଦବେଇବା ଶକ୍ତି, ନିଜେ କାମକରିବା ଶକ୍ତି । ବଳ ବଢ଼େ ନିଜ ଭିତରେ ବଳ ତିଆରି କଲାଭଳି ମାଲ ଯୋଗେଇ ତାକୁ ହଜମ କଲେ, ସେ ମାଲର ଅନ୍ୟ ବିଚାର ନାହିଁ । ଲୋକେ ଅଭକ୍ଷ୍ୟ ଖାଉଥିଲେ, ଯାବତ କ୍ରୂର କର୍ମ କରୁଥିଲେ, ପାପରେ ବୁଡ଼ିଥିଲେ, ତଥାପି ବଳ ଥିଲା ବୋଲି ରାଜୁତି କରିଗଲେ । ସମସ୍ତେ ମରନ୍ତି, ସେ ବି ମଲେ । ସମସ୍ତିଙ୍କର ବିପଦ ଆପଦ ଥାଏ, ତାଙ୍କର ବି ଥିଲା । କିନ୍ତୁ ଅତ୍ୟାଚାରୀ ଥିଲେ ପାପୀ ଦୁରାଚାର ଥିଲେ ସେଥିପାଇଁ ମଲେ ଏ ଯୁକ୍ତି ଠିକ୍ କାହିଁକି ହେବ ? ସମ୍ରାଟ ଅଶୋକ ହଠାତ୍ ଯୁଦ୍ଧକରିବା ବନ୍ଦ କଲେ, ଅହିଂସା ପ୍ରଚାର କଲେ, କିନ୍ତୁ ତାଙ୍କର ବିପୁଳ ଓ ପରାକ୍ରମୀ ସେନାକୁ କ’ଣ ଭାଙ୍ଗିଦେଲେ ? କାହା ରାଜୁତିର ବଢ଼ତି ବା କମ୍ତିର କାହାଣୀ ତା’ ବଳର ବଢ଼ତି ବା କମ୍ତିର । ବଳ ଗାଦିମାଡ଼ି ବସେ, ଭିତରେ ଭିତରେ ତା’ ବିରୁଦ୍ଧରେ ପ୍ରତିବଳ ବି ଲାଗି-ଥାଏ, ସେ ବଢ଼ିଲେ ପଦାକୁ ଫୁଟେ, ଜିତିଲେ ଆଗର ବଳ ଚିତ୍ପଟ୍ ହୁଏ ।

ଭାରତକୁ ଦେଖ । ଦିନୁଦିନ ତା’ ବଳ ହଟିବା କାହାଣୀ ଦେଖି ଦେଖି ଆସିବି ହଜାରେ ବର୍ଷ ହେଲା, ଯାହାର ବଳ ଅଛି ସେ ଆସିଛି, ରାଜୁତି କରିଛି, ଯେମିତି ଆମର ଏ ସରକାର, ମାନେ ଇଂରେଜ

ସରକାର । ପ୍ରତିବଳ ବି କାମ କରୁଛନ୍ତି ତା' ବାଗରେ, କିନ୍ତୁ ସେ ନିସ୍ତେଜ, ହୀନବଳ । ପାଖେ ଟୋପ ବନ୍ଧୁକର ବଳ, ଠେଙ୍ଗାର, ଜେଲ୍ ଠୁଙ୍କିବାର ଯାହାଖେ ପ୍ରତିବଳ ବୋଲନ୍ତେ ଚାଟିଭୁଣ୍ଡ, କଟୁ ମନ୍ତବ୍ୟ, ସାନ ସାନ ଅଟକେଇବା କାମ, ଗୁଳି ବର୍ଷୁ ହଜାରେ ବର୍ଷ, କ'ଣ ହେବ ?

– ପ୍ରତିବଳର ଶକ୍ତି ଅଛି ଯେ ଦେଶଟା ତାକୁ ଦେଲେ ସେ ସମ୍ଭାଳିବ ? ଦେଶରେ ଖାଲି ହିନ୍ଦୁଧର୍ମରେ ତେତିଶିକୋଟି ଦେବତା, ଜଣେ ନୁହେଁ । ଆହୁରି ତ ଅଛନ୍ତି । ହଜାରେ ହଜାରେ ମତ, ରୁଚି, ଉଦ୍ଦେଶ୍ୟ । ଠାଏ ହିମାଳୟ ତ ଠାଏ ସମୁଦ୍ର । ଠାଏ ଶାଗୁଆ କ୍ଷେତ ତ ଠାଏ ମରୁଭୂମି । "ମୁଁ ଆର୍ଯ୍ୟ" ବୋଲି ଜଣେ ଗର୍ବ କରେ ତ 'ମୁଁ ଅନାର୍ଯ୍ୟ' ବୋଲି ଆଉ ଜଣେ ଗର୍ବ ଦେଖାଏ । ଏମାନେ ଏକା ମନ ଏକା ମତ ହେବେ ? ଇତିହାସରେ ହୋଇଛନ୍ତି କେତେବେଳେ କେଉଁ ଦେଶରେ ? କେବେ ନାହିଁ । ଅଥଚ ଆରମ୍ଭଗ୍ରାହୀ, ବନ୍ଧୁଆ ଶାସକ-ଡରରେ ତା' କଥାର ଚାଲି ଧରି ଏକା ମତ ଗାଉଛନ୍ତି ସବୁଠେଇଁ । କାହା ଜିଭରେ ହାଡ଼ ଅଛି, କାହାର ନିଜ ପ୍ରାଣକୁ ଡର ନାହିଁ ଯେ ବଡ଼ପାଟି କରି ବନ୍ଧୁଆର କଥା ଉପରେ ଅନ୍ୟଥା କହିବ ? ଯେ କହୁଛନ୍ତି ସେ ପାନେ ପାଉଛନ୍ତି । ବନ୍ଧୁଆ ବେମାର ହେଲେ କି ଦୁର୍ବଳ ହେଲେ ବି କ୍ଷମତା ଛାଡ଼େ । କିନ୍ତୁ ଜାଗା ଦଖଲ କରେ ଅନ୍ୟ ଗୋଟାଏ ବନ୍ଧୁଆ, ଗୋଟାଏ ମଣିଷ ହେଉ କି ଦଳେ ହୋଇଥାନ୍ତୁ । ଅଘୋରହାସ୍ୟ ସମସ୍ତେ ନୁହନ୍ତି ।

ଆଉ, 'ସମସ୍ତେ' ବୋଲି ଯାହାକୁ ବୁଝାଯାଏ, ଇତିହାସରେ ତାଙ୍କ ସ୍ୱରୂପକୁ ଚିହ୍ନ । ସବୁପ୍ରକାର ମିଶିଲେ 'ସମସ୍ତେ' । ସେଥିରୁ ଅଳ୍ପ ଥୋକେ ଖୋଜନ୍ତି ରାଜୁତି କରିବା ମଉଜ । ସେ ରାଜନୀତିକ ନିଶାକୁ ସମସ୍ତେ ବାଇ ନୁହନ୍ତି, ସମସ୍ତେ ତାଙ୍କୁ ଧରିଲେ ବଞ୍ଚିପାରିବେ ସେ ବି ଅସମ୍ଭବ । ନାଗସାପ ଗରଳ ସମସ୍ତେ ପିଇବାକୁ ଲୋଭନ୍ତି ନାହିଁ । ନାନା ଉଦ୍ଦେଶ୍ୟ ଥାଏ, ଶାସନ ପାଖ ଚଳିଆ ହେଲେ କେତେ ଉଦ୍ଦେଶ୍ୟ ପୂରଣ ହୁଏ ବୋଲି ଆଉ ଥୋଡ଼ାଏ ଲୋକ ସେ ଆଡ଼କୁ ଆଖି ରଖିଥାନ୍ତି । କିନ୍ତୁ ବେଶୀ ଭାଗ ? ଅନାନ୍ତି ନାହିଁ କେଉଣେ । ନିଜ ନିଜ ଧନ୍ଦା କରନ୍ତି । ଖୋଜନ୍ତି "ଆମ ସଙ୍ଗେ କେହି ନ ଲାଗୁ", ତେଣୁ ଖୁଞ୍ଜୁବୁଞ୍ଜୁ ବନ୍ଦ କରି ବାଘ ଛେଳିକ ଏକା

ଘାଟରେ ପାଣି ପେଇବା ଭଳି ସାମର୍ଥ୍ୟ ଥିବା ବନ୍ଧୁଆ ହୋଇ କେହି ରହନ୍ତି କରୁ ସେମାନେ ଖୋଜନ୍ତି । ସେ ଧୋତି ପିନ୍ଧନ୍ତୁ କି ପାଇଜାମା ପିନ୍ଧନ୍ତୁ, ହବିଷ କରନ୍ତୁ କି ଅଭକ୍ଷ୍ୟ ଖାଇନ୍ତୁ, ସେଗୁଡ଼ାକ ଗ୍ରାହ୍ୟ ନାହିଁ । ସେ ଯାହା କହିବ, ବାପ୍ପୁଙ୍କ ପରି ହଜାରେ ଜଣ ହେଲେବି ସେମାନେ ସେଇଆ ରଖିବେ, କାରଣ ସେମାନେ ଜାଣନ୍ତି ଠିକ୍ କଲେ ନଂପର୍ ରହିବେ, କଳକା ଲଭ ବି ହୋଇପାରେ । ଆଉ କଏ ଚୁଟିବନ ଆସି ଗାଦିମାଡ଼ି ବସିଲେ ତା' ପାଇଁ ବି ସେଇଆ କରିବେ ।

ଆମ ସରକାର, ଇଂରେଜ ସରକାର, କାହିଁକି ଦୃଢ଼ଭିତ୍ତିରେ ନିରଙ୍କୁଶ ହୋଇ ରହିଛି ରହିଥିବ ତୁମେ ଏଇଥିରୁ ବୁଝିଥିବ । ଆଇନ ଅମାନ୍ୟ ବାଗ ଗୋଟାଏ ଅକନେଇବା କାମ । ତା'ର ନିଜ ଉପରେ ବି ଉଣା ବିପଦ ନାହିଁ । ଯେ ଆଇନ ନ ମାନିଲା, ଘଙ୍ଗିଲା, ସେ ତା' ନିଜ ମେଣ୍ଟର ଆଇନକୁ ବି ଅମାନିଆ ହେବାକୁ ଶିଖିବ, ତା' ଅଭ୍ୟାସ ପଡ଼ିଯିବ । ତୁମେମାନେ ଏଥିରେ ଭୁଲନ ଭଲକରିଛ । ପାଠ ପଢ଼ିବ, ମଣିଷ ହେବ, ନାନା ରୋଜଗାରିକର କରିବ, ନାନା ଧନ୍ଦାରେ ଲାଗିଯିବ, ନିଜ ଦାୟିତ୍ୱ ତୁଲେଇବ । ପିଲାମାନେ ଖୁବ୍ ଭକ୍ତିରେ ଶୁଣୁଥିଲେ, ଚିପୁଥିଲେ ।

ଆଃ, ସେ କାଳର ଛାତ୍ର, ଗୁରୁ ତାଙ୍କ ଆଖିରେ ଦେବତା । ଗୋଡ଼ତଳେ ପଡ଼ନ୍ତି ।

ଓଲଟି ପଦେ ବି ପ୍ରଶ୍ନ ପଚାରିବେ ନାହିଁ, ଜାଣନ୍ତି, ସେ ସବୁ ଅନାବଶ୍ୟକ ।

ବିଶ୍ୱାସ ହିଁ ତାଙ୍କର ମୌଳିକ ପ୍ରବଣତା ଓ ଜୀବନର ଧାରା ।

ସାର୍ କହୁଛନ୍ତି, କେବେ ଭୁଲ୍ ହୋଇପାରେ ?

ବାପା କହୁଛନ୍ତି, କେବେ ମିଛ ହୋଇପାରେ ?

ସରକାର କହୁଛନ୍ତି, କେବେ ଅନ୍ୟାୟ ହୋଇପାରେ ?

ବିଶ୍ୱାସ କଲେ ଝିନ୍‌ଝଟ୍ ନଥାଏ, ଭାବିବା ଦରକାର ପଡ଼େ ନାହିଁ, ମୁଣ୍ଡ ବିଥାଏ ନାହିଁ, ଖୋଜିବା ଦରକାର ପଡ଼େ ନାହିଁ, ଗଳିଁସଳିଁ ହେବା ନାହିଁ । ବିଶ୍ୱାସ ସଙ୍ଗେ ସଙ୍ଗେ ତୃପ୍ତ ଆସେ । ସବୁ ତ ବୁଝିହେଉଛି—

ମଣିଷ ଜୀବନ ଟି ଏଇଆ, ବଳକା ନାଟକୀୟ ଅଥବା ହାଟଲ୍‌ଟେମ୍ପର କ'ଣ ହେବ ? କିଏ କହିଲା— ଖଣି ଭିତରେ ଗ୍ରାମ ଭୂଷଣ୍ଡ ତିନିଶ ଲୋକ ମଲେ । ସହଜେ ଉତ୍ତର ବାହାରେ—ଆହା । ନୂଆ ନୁହେଁ ଯେମିତି ହୁଏ । ତାଙ୍କ କର୍ମ ପୂରିଲା । ଘରେ ବସିଥିଲେ କ'ଣ ବଞ୍ଚି ପାରିଥାନ୍ତେ ? ବାଅ ଗ୍ରାମ । କିଏ କହିଲା—ବାଘ ଖାଇଲା । ଉତ୍ତର ସଙ୍ଗେ ସଙ୍ଗେ—ତା' ସ୍ୱଭାବ । ଯାହାକୁ ଯେମିତି ଭଗବାନ ଜନ୍ମଦେଇଛନ୍ତି ନା ।

ଆଉ, ନୂଆ ନୂଆ ଗଜୁରିଥିବା ମୋର ଐତିହାସିକ ଦୃଷ୍ଟିଭଙ୍ଗୀ ଯୋଗିଦେଇ ମୁଁ ଆବିଷ୍କାର କରୁଥିଲି, ଲୋକେ ଯେ କହନ୍ତି ଯୁଗ ଯୁଗର ଆଘାତ ସହି ତଥାପି ଭାରତୀୟ ସଭ୍ୟତା ଅନ୍ୟ ଦେଶର ସଭ୍ୟତା ପରି ନିଶ୍ଚିହ୍ନ ହୋଇ ନାହିଁ, ସବୁ ପ୍ରଭାବ ନିଜ ପେଟରେ ଆଉଟି ହଜମ କରି ବଞ୍ଚି ଶିଖିଛି ତା'ର ମୂଳ କାରଣ ବି ଏତିକି, ଏଠି ବିଶ୍ୱାସର ମୋଡ଼କ ହାତପାହାନ୍ତରେ । ପଛୁ ପାହାର, ସିଧାଗୋଇଠା ଯେତେ ଇଚ୍ଛା, ଉଁ କି ଚୁଁ ନାହିଁ ।

ତେବେ, ସବୁଗୁଡ଼ାକ ବିଶ୍ୱାସୀ ନଥିଲେ, ଥୋଡ଼ାଏ କହିପାରୁ ବିଶ୍ୱାସ ଭାଙ୍ଗୁଥିଲେ । ମୁଁ ଜାଣେ, ସେଇଟା ବିଦେଶୀ ଚିନ୍ତାଧାରାର ପ୍ରଭାବ । ଭାରତରେ ଅଳ୍ପ ସେପରି ଅଜ୍ଞାତରେ ଥିଲେ, ମାନୁ ନଥିଲେ । କିନ୍ତୁ ତାଙ୍କରୁ ପୁରୁଷା କେତେକ, ଅବିଶ୍ୱାସରେ ଆରମ୍ଭ କରି ଶେଷରେ ନିଜା ନିଜା ସଙ୍ଗଠନ ଓ ଆଶ୍ରମ ଗଢ଼ିଗଲେ, ବିଶ୍ୱାସ ହୋଇଗଲେ, କହିଲେ ପାଠ କରନା, ବିଶ୍ୱାସ କର । ବୋଧହୁଏ ଐତିହାସିକ ପରମ୍ପରାର ପ୍ରଭାବ । କହି ନାହାନ୍ତି, "ଆମେ ଏତିକି ଦେଖିଲୁ, ତୁମେ ଆମ କଥା ମାନ ନାହିଁ, ଆହୁରି ଖୋଜ, ଆହୁରି ନୂଆ କିଛି ଥିବ ପରା ।"

ବିଶ୍ୱାସକୁ ଫୁଟ୍‌କି ମାରିବା ଲୋକ ଭୁନଭୁନ ଫୁସ୍‌ଫାସ୍ ହେଉଥିଲେ, କେତେବେଳେ ଦଳେ ହେଲେ ପାଠ କରୁଥିଲେ । ଅଧିକାଂଶ ଥିଲେ, ଯେଉଁମାନେ କେତେଟା କଥାରେ ବିଶ୍ୱାସ ନ କଲେ ସୁଦ୍ଧା ଅନ୍ୟସବୁ କଥାରେ ବିଶ୍ୱାସ କରୁଥିଲେ, କାହାର ଅବିଶ୍ୱାସ ବି ପରଠୁଁ ମାଗି ଆଣିଥିବା ଅବିଶ୍ୱାସର ସଂସ୍କାର, ପ୍ରକୃତରେ ନିଜର ନୁହେଁ, କାହାର ଅବିଶ୍ୱାସ ନିଜର କେଉଁ ସ୍ୱାର୍ଥ ଲାଗି ଛଳନା, ଏମିତି ପ୍ରକାର ପ୍ରକାର ।

ରାଜନୈତିକ ଆନ୍ଦୋଳନ ଖୁବ୍ ଚାଲିଥିଲା, କିନ୍ତୁ ଜାତି, ଧର୍ମ, ଛୁଆଁ ଅଛୁଆଁ ଭାଷା, ଧନୀ ଦରିଦ୍ର, ଏମିତି ନାନା ଶ୍ରେଣୀ ଭିତରେ ଭେଦ ଓ ବ୍ୟବଧାନ ଦୂର ହୋଇଗଲା ଆଖିଦୃଶିଆ କିଛି ଘଟୁନ ଥିଲା ।

ଆମ ଅପଢ଼ି ସାହୁ କଲେଜ୍‌ର ରାଜନୈତିକ ଆନ୍ଦୋଳନ ସଙ୍ଗେ କିଛି ସମ୍ବନ୍ଧ ନ ଥିଲା, ଅନ୍ଧ, କେତେ ଜଣ କିଏ କେତେବେଳେ ମାତୁଥିଲେ, କଲେଜ୍ ଭିତରେ ଆମେ କଡ଼ାନଜର ରଖିଥିଲୁଁ ।

– "ଖବର୍ଦ୍ଦାର୍ ବାପା, ଏଠି ସେ ସବୁ ନୁହେଁ, ପାଠ ପଢ଼ିବ ତ ଆସ, ନହେଲେ ଯାଅ, ଯାହା ମନ ତା' କର, ସଫା କଥା ।"

ଦେଶର ରାଜନୈତିକ ଆନ୍ଦୋଳନକୁ ବନ୍ଧପାଚିରେ ଗାଳି ଦେବାକୁ ବି ମୋର ଇଚ୍ଛା ହୋଇନାହିଁ । ପିଲାଙ୍କୁ ସେତେ ବୁଝେଇଲେ ବି ମନଭିତରେ କହେ, "କେଜାଣି କ'ଣ ହେବ ? ଇତିହାସ କରଲେଉଟାଏ ତ ! ଅଶାନ୍ତ କୁହୁଳି ଉଠୁଛି ଦେଶଯାକ । ଅସଂଖ୍ୟ ଲୋକ ଲାଗିଛନ୍ତି । ପୃଥିବୀ ବି ଆଗପରି ନାହିଁ । କିଏ କହିବ ? ଆଜି ଯାହାକୁ ଛୁଆଁଛୁଟକର କରିଥିବା କାଲି ସେବେ ତା'ର ହାତରେ ରହିବ ଆମ ଲଗାମ୍ ? ଭିନ ରହିବା ଭଲ ।" ଆଉ ବେଳେବେଳେ, ତ୍ୟାଗୀ ଲୋକଙ୍କ କଥା ଭାବିଲେ ମୁଣ୍ଡ ନୁଇଁଯାଏ, ଯାହାଙ୍କୁ କଲବଲ କରାଯାଇଥାଏ ତାଙ୍କକଥା ମନେପଡ଼ି-ଗଲେ ତ ପ୍ରାଣଭିତର କ'ଣ ହୋଇଯାଏ, ମନ ଡାକେ—ଡେଇଁପଡ଼୍ ହାଡ଼୍ ଆଗ୍ରହ୍ୟ, ଯାହା ହେବାର ହେଉ । ଠିକ୍ ଆଉ ମୁହୂର୍ତ୍ତରେ, ଗୁଡ଼ିକଳ ଦବ ଦବ ଯାଏ, ସରକ୍ଷଣକାରୀ ବୁଦ୍ଧି ଆଣେ ସ୍ଥୈର୍ଯ୍ୟ, ଭାବେଁ,—ପାଗଳ ନା କ'ଣ ?

ଭାବୁଥାଏଁ, ସେମାନେ ବି ସେହିପରି ଭାବୁଥିବେ, ମୋ ସହକର୍ମୀମାନେ, ମୋ ଛାତ୍ରମାନେ । ମନ ଭିତରେ ଭୂମିକମ୍ପ ଆସ୍ତେ ଥରେଇ ଦେଇ ଚାଲି ଯାଉଥିବ, ଖୁବ୍ ଭିତରେ । ବାହାରକୁ ସବୁ ନିତି-ଦିନିଆ । ସଂସ୍କୃତ ଅଧ୍ୟାପକ ଜଗୁ ବଶ୍ୱାଳ ବାରମ୍ବାର ପ୍ରାଚୀନ ଆଦର୍ଶ ବୁଝାଉଥିଲେ, ସେ ମନ ବଚନ କର୍ମ ଏକାପରି ହେବ । ମୁଁ ବାରମ୍ବାର ତାଙ୍କ ମତକୁ ବିରୋଧ କରୁଥିଲି, କହୁଥିଲି ଏ ତିନିଟା ଭିତରୁ ଯେ ଯାହା କ୍ଷେତ୍ରରେ ଯେତେବେଳେ ଯେପରି, ପ୍ରୟୋଜନ ଅନୁସାରେ, ଏକାଠି

ଛାଡ଼ିବା ନଜିର୍ ଇତିହାସରେ ନାହିଁ । ସେ ଭାରି ଚିଡ଼ୁଥିଲେ । ମୁଁ କହୁଥିଲି—କେହି ମନ ବଚନ କର୍ମ ଏକାଠି କଲେ ଅନ୍ୟ ଲୋକେ ତାଙ୍କୁ ମାରି ଗୋଡ଼େଇବେ, ନ ହେଲେ ନିଜେ ସେ ବାୟା ହୋଇ ବୁଲିବ, ନୋହିଲେ ବଣରେ ରହି ଅପନ୍ତରରେ ପଡ଼ି ମରିବ ।

ମୋର ସେତେବେଳର ସେସବୁ ବିଗ୍ରହ 'ଆବିଷ୍କାର' କ'ଣ ଝଞ୍ଜାରପାଏ ଜଙ୍ଗଲ ପରି ମାଡ଼ିଲ ? ନା ମୋ ଅଜ୍ଞାତ ସଙ୍ଗେ ଲୁପ୍ତ ହେଲା ? ବେଳେବେଳେ ଭାବେ ଏଇଟା, ବେଳେବେଳେ ସେଇଟା । କିନ୍ତୁ ଏତିକି ଜାଣେ, ମୋଠି ଆଉ ନାହିଁ । ମୋଠି ଗୋଟାଏ କ୍ଳାନ୍ତି ହିଁ ଅନୁଭବ କରିଥାଏଁ, ମୁଁ କରଛଡ଼ା ଦେଲିଣି ।

ହିଁ, ଅଟକିଗଲି । ମୋ ପକ୍ଷରେ ଅଟକି ଅଟକି ଯିବା ହିଁ ସ୍ୱାଭାବିକ । ଆଉ, କଥା ଭୁଲିବା, ଉଦ୍ଦେଶ୍ୟ ଭୁଲିବା, ବାଟ ଭୁଲିବା । ଆଃ ! ଭୁଲିବା ହିଁ ତ ସ୍ୱାଧୀନତା । ମଣିଷ କେଉଁଥିରେ ବନ୍ଧାହୋଇ ନଥିବ । ଯେ ସବୁ ଭୁଲିଯାଏ ସେ ଠାକୁର ହୁଏ । ସମସ୍ତେ ବର ମାଗନ୍ତି, ଦିଅ ଦିଅ ଦିଅ । କାଳେ ଦେବ ବୋଲି ମୁଣ୍ଡିଆ ମାରୁଥାନ୍ତି । ଯେ ଭୁଲିଯାଏ । ସେମାନେ ମୁଣ୍ଡିଆ ମାରୁଥାନ୍ତି ।

ମନେପଡ଼ିଲା । ମୋର 'ସେମାନେ' ବୋଲିନ୍ତେ ସେକାଳର ଛାତ୍ର । ଶାନ୍ତ, ଧୀର, ଗାଈ ଆଖିପରି ମୂକ ଆଖି, ଡେରି ହୋଇ ରହିଥାଏ ମୋ ଆଡ଼େ, ସତେ ଯେମିତି ମୁଁ ନଡ଼ାବଡ଼ା ଧରିଛି । କେହି କେହି ଓଠ ଗୁଟନ୍ତି । ବିଶ୍ୱାସରେ ଅନାଇଥାନ୍ତି ମୋ ମୁହଁକୁ । ମୁଁ କହୁଥାଏଁ । କେହି କେହି ଉତ୍ସୁକ ହୋଇ ଲେଖନ୍ତି । କେହି କେହି କାଠପରି ବସିଥାନ୍ତି । ମୁଁ ଜାଣେ ସେମାନେ ଏଠୁ ଉଠିଯିବେ ଗୃହସ୍ଥଧର୍ମ କରିବେ, କେଉଁ ଅଫିସରେ ବସି କଲମ ଚଳେଇବେ, ନ ହେଲେ ଅନ୍ୟ କିଛି ସରକାରୀ ଚାକର, ଭଦ୍ରଲୋକ ହେବେ । ମଣିଷ ହିଁ ତ ମୁଁ ତିଆରି କରିଛି । ସେଇଠି ମୋ ଗର୍ବ ।

## ତିନି

ତା'ପରେ କାଳ ବଦଳିଗଲା ଭଳି ଦିଶିଲା । କିଏ ସେ ଏମାନେ ? ତୁନିତାନି ହୋଇ ବସି ଶୁଣିବା ନା ନାହିଁ । ଚଡ଼ୋମଣ୍ଡିରେ ବାରମ୍ବାର ବାଧା ଦେବା—"ପଚାରିବାକୁ ଅଛି ସାର୍ ।"

"କହିସାରେ ପଚାରିବ ।"

"ସେତେବେଳକୁ ଖିଅ ଛୁଟିଯିବ, ଅଇଗ୍ରା ନ ବୁଝିଲେ ସା'ପରେ ଯାହା କହିବେ ତା' ବୁଝିହେବ ନାହିଁ ।"

ପାଠ ପଢ଼େଇବା ନୁହେଁ, ଯୁକ୍ତି କରିବା । କିନ୍ତୁ କିଏ ତାଙ୍କୁ ବୁଦ୍ଧି ଦେଇଥାଏ କେଜାଣି, ସେମାନେ ନିଜେ ବହିପତ୍ର ଆଣିଥାନ୍ତି, କେତେ କେତେ ମୁକାବିଲା କରିବାକୁ ବହି ଆଣିଥାନ୍ତି ।

"ଆମ୍ଭକୁ ଆହୁରି ବତାନ୍ତୁ ସାର୍, ଆହୁରି ନୂଆ ନୂଆ କଥା କହନ୍ତୁ । ବହିମାନଙ୍କ ନାଁ କହିଲେ ଆମେ ନିଜେ ବି କିଛି କିଣି ଆଣନ୍ତୁ ।"

"ଖାଲି ବହିରେ ଲେଖା ହୋଇଥିବା କଥାକୁ ଆଉ ଥରେ ଆମ ଆଗରେ ପଢ଼ି ଶୁଣେଇ ଦେଲେ କିଛି ଲାଭ ନାହିଁ ସାର୍, ଆମେ ନିଜେ ପଢ଼ିପାରିବୁ । ଆମେ ଚାହୁଁଛୁ ଆପଣ ଆମକୁ ନୂଆ ନୂଆ କଥା କହନ୍ତୁ, ନୂଆ ନୂଆ ପଏଣ୍ଟ୍ ବତାନ୍ତୁ ।"

"ଆମେ ବି କିଛି ଗବେଷଣା କରିବୁ ଆପଣ ଆମକୁ ବାଟ ବତାନ୍ତୁ ।"

ପଛଆଡ଼େ ଦଳେ କୌତୁକରେ ଅନାଇଁଥାନ୍ତି । ତାଙ୍କ ପଛଆଡ଼େ ଦଳେ ଗପସପ ହାଉଯାଉ ଲଗେଇଥାନ୍ତି, ବାରମ୍ବାର ତୁନି କରଏଁ, ବାରମ୍ବାର ପାଟି ଶୁଭେ । ବେଳେବେଳେ ଜନତା ଭିତରୁ ସ୍ପଷ୍ଟ ଶୁଭିଲା ପରି ସ୍ୱର ଆସି କାନରେ ବାଜେ—"ସେ ଜାଣେ ନାହିଁ, କାହିଁକି ମିଛରେ ତା' ସଙ୍ଗରେ ଲଗେଇଛ ? ସେ କ'ଣ କହିବ ?"

"ସେ କେବେ ପଢ଼ିଥିଲା ଆଉ କ'ଣ ମନେଅଛି ?"

ଗବେଷଣା ବନ୍ଦ କଲି । ନିଜ ଇଜ୍ଜତ ରଖିବାକୁ ବଡ଼ ଗୋଟାଏ ଯାଏ ପଢ଼େଁ ତାହାଁଆର ବଦନ ଦେଇଁ ପାଠ ଦେଉଛନ୍ତି ସେହି ପାଠ । ପର୍ସେଣ୍ଟ୍ ଝିଟେଁ । ଦଶଟା ବହିରୁ ପଢ଼ି ଖାତାରେ ଝିପେଁ । କ ପିଲା ଏ ? ଛାତ୍ର ନା ପ୍ରତିଯୋଗୀ ? ଠାକୁରଙ୍କୁ ଡାକେଁ, ଗଣ୍ଡିଆ ନ ହୁଏଁ । ଏମିତ ପ୍ରସ୍ତୁତ କର ପଢ଼ାଉଥାଏଁ । ତଥାପି ସେମାନଙ୍କ ମନରେ ଶାନ୍ତି ନାହିଁ । ଜଣେ କହିଲ, "ଏତକ ପର୍ସେଣ୍ଟ୍ ଲେଖିଦେଲେ କ'ଣ ନମ୍ବର ମିଳିବ ?"

ଆଉ ଜଣେ କହିଲ, "ଏମିତ ତ ଇସ୍କୁଲ ପିଲାଏ ଲେଖନ୍ତି । ଏଠି ସିନା ଆମେ ଶିଖିବୁ ଘଟନା ଉପରେ କେମିତ ବିଚାର କରିବାକୁ ପଡ଼େ ଓ ଗୋଟାଏ ବିଚାର ଠିକ୍ କ ନୁହେଁ ଘଟନାକୁ ପ୍ରମାଣସ୍ୱରୂପ ବ୍ୟବହାର କରି ସେ ବିଚାରକୁ କେମିତ ପରୀକ୍ଷା କରିବାକୁ ପଡ଼େ— କାହାଣୀ ଗାଇଗଲେ କ'ଣ ହେବ ?"

ମୁଁ ବିରକ୍ତ ହୋଇ କହେଁ, "ଯାହା ଆମବେଳେ ଥିଲ ସେଇପାଠ ଆମେ ଶିଖିଚୁ ବାବା, ଜାଣିଚ ନ ସେ କାଳର ଲୋକ, ତହିଁରେ ପୁଣି ଥାର୍ଡ଼୍‌କ୍ଲାସ୍ ଏମ୍. ଏ. ।"

"ସେତିକ କହିଲେ କଏ ଛାଡ଼ୁଚି ସାର୍ ? ଯେ ଯେଉଁ ଦାୟିତ୍ୱ ଆବୋରିଚି ତାକୁ ସେ ତୁଲାଇବାକୁ ପଡ଼ିବ । ଆପଣଙ୍କ ବେଳ ଭାରତର ପରାଧୀନ ଅମଳ, ପଛରେ ପଡ଼ିଥିଲ, ଆମେ ସ୍ୱାଧୀନତା ଯୁଗର, ଆମେ ଜାଣୁ, ତେଣୁ ତ ଦାୟିତ୍ୱ ବଢ଼ିଛି, ବିଚାର ବି ଉଦାର ହେବା ଦରକାର ।"

ଅନାଇ ନେଇ ଗୁଣୁଁକନା ଶନ୍ତି ପଣେ, ସତେ ତ, ଏଇମାନେ ହେବେ କାଲି ଏକାଳେ କ'ଣ ନାହିଁ କ'ଣ, ଯୁବଙ୍କର ଭିତରୁ ବାହାରିବେ ନେତା !

ସମସ୍ତେ ସେମିତ ଖୁଦ୍‌ବୁଡ଼ିଆ ନ ଥିଲେ, ଥିଲେ କେତେଜଣ, ଓ ସେମାନେ ବହୁତ ବହି ପଢ଼ୁଥିଲେ, କୁଆଡ଼ୁ କୁଆଡ଼ୁ ବହି ଆଣୁଥିଲେ, କେଉଁ କେଉଁ ସହରକୁ ଯାଆନ୍ତି, ନାନା ଛାତ୍ର ଓ ଅଧ୍ୟାପକଙ୍କ ସଙ୍ଗେ ମିଶନ୍ତି, ନାନା ପ୍ରକାର ସଭାସମିତିରେ ବସନ୍ତି, ବହି ମାଗିଆଣନ୍ତି କଣି

ଆଣନ୍ତି । ଯେପରି ମୁଁ ଆଗେ କେବେ ଦେଖି ନ ଥିଲି । ତାଙ୍କୁ ମୁଁ ଡରେଁ, କିନ୍ତୁ ତାଙ୍କ ପ୍ରତି ମନରେ ଭକ୍ତି ଆସେ । ମୋ ଅନ୍ତର ଭିତରେ ବୁଝେଁ— ଭାରତର ସ୍ୱାଧୀନତାର ଆରମ୍ଭରୁ ଫଳ ଏତିକି, କିଛି ସ୍ୱପ୍ନ, ଆଶା, ନୂଆ ଉଦ୍ୟମ, ମୌଳିକ ସୃଷ୍ଟି ପାଇଁ ଏ ଶୁଭସୂଚନା ।

ଦଧି ଭାଇନା କହନ୍ତି, "ଧୀରେ ଧୀରେ ଉଚ୍ଛୃଙ୍ଖଳତା ବ୍ୟାପୁଛି, ଡିସିପ୍ଲିନ୍ ଯିବ ।"

ମୁଁ ତାଙ୍କୁ ବୁଝାଏଁ । "ଥାଏ ଧର, ଆଗେ ସବୁ ମଲ୍‌କାଉଦା ଥିଲା, ତେଣୁ ହଲଚଲ ନଥିଲା ଆଦୌ । ଏବେ ସବୁ ଜାଗନ୍ତା । ଏ ହାଉଯାଉ ଉହାଡ଼ରେ ଅଛି ସର୍ଜନର ଗହନ ।"

ଚାହୁଁ ଚାହୁଁ କେତେ ପିଲା ଖୁନ୍ଦ ହୋଇଗଲେ ଆମ କଲେଜ୍‌ରେ ! ଆଗଠୁଁ ହେଲେ ତିନିଗୁଣ । ଆହୁରି ଘର । ଆହୁରି ଅଧ୍ୟାପକ । ବଡ଼ ବଡ଼ ଛାତ୍ରାବାସ । ଛାତ୍ରୀ-ଆବାସ । ଆଖପାଖରେ ବଜାର ବି ବଢ଼ିଗଲା ।

ଅପଣ୍ଡି ସାହୁ କଲେଜ ନାଁ ଡାକ୍ ହେଲା । ପାଠରେ, ଖେଳରେ, ଏନ୍‌ସିସିରେ, ନାନା କ୍ଷେତ୍ରରେ ତା ନାଁ । ଏଠୁ ବି. ଏ. ପାସ୍ କରି ସଙ୍ଗୀନ ମଲିକ, ପାଣୁ ବେହେରା, ଗୋବର୍ଦ୍ଧନ ଷଣ୍ଢ, ଅଶୋକ ମିଶ୍ର ଏପରି ଚାରିଜଣ ଖୁବ୍ ବଡ଼ ଚାକିରିଆ ହେଲେଣି, ସଙ୍ଗୀନ କଲେଜର, ଅନ୍ୟମାନଙ୍କ ଭିତରୁ ଉତ୍ତମ ହେଲେଣି ମନ୍ତ୍ରୀ, ଏମେଲେ ଛ ସାତଜଣ ହେଲେଣି, ଏମ୍‌ପି ଥିଲେ ଜଣେ ।

କିନ୍ତୁ ମୋଟାମୋଟି ଭାବେ ବିଚାରକଲେ ମତେ ଲାଗେ, କଲେଜ ନା କଲେଜ—ଗୋଟାଏ କାରଖାନା, ଅଧିକା କିଛି ନୁହେଁ, ସବୁଠି ଯେମିତି ଏଠି ସେମିତି, ଧନୀ ଇଲାକା, ଲୋକ ବେଶି, ଇସ୍କୁଲ ବେଶି, ପଢ଼ୁଆ ପିଲା ବେଶି, କଲେଜରେ ଗୁଡ଼ାଏ ପିଲା, ଗୁଡ଼ାଏ ମାଷ୍ଟର, ତେଣୁ ବେଶି ପାସ୍ କରନ୍ତି, ନହେଲେ ବିଶେଷତ୍ୱ କିଛି ଦେଖେ ନାହିଁ ।

ଆଗ ଆଗ ଯେଉଁ ଯେଉଁ ସ୍ୱପ୍ନ ଉଙ୍କିଥିଲା, ଯାହାକୁ ବର୍ଣ୍ଣନା କରିହୁଏ ନାହିଁ ଅଥଚ ଯାହାର ମୋହ ଭାରି, କ'ଣ ନିଶାଳିଆ ଅଜଣା

ମହକ ପରି—ସେତେବେଳେ ପିଲାଏ ମତେ କାମ କଲେଇଥିଲେ, ସେ ସ୍ମୃତି ଆଉ ଆସିନି ନାହିଁ । ଅଥବା ଆସିଥିବ ସେ, ଥିବ ବି, କିନ୍ତି ମୋର, ମୁଁ ତାକୁ ଆଉ ଦେଖିଲି ନାହିଁ । ଏତେ ପିଲା, କିଏ କ'ଣ କଲା ଗୋଟି ଗୋଟି କରି ସମସ୍ତଙ୍କ କ'ଥା ମୁଁ କ'ଣ ଜାଣିଛି ? ବର୍ଷକର ପିଲା ନୁହନ୍ତି, ତା ଉପରୁ ତା ଉପରୁ ହୋଇ କାହିଁ ପଚିଶି ତିରିଶି ବର୍ଷର । ତାଙ୍କ ଭିତରେ ପଡ଼ାରେ—ଆଗ୍ରହ, କୁତୂହଳ, ପ୍ରକୃତରେ ଜ୍ଞାନ-ପିପାସା ଥିବା ପିଲା ବି ଥିବେ ନିଶ୍ଚୟ, କିନ୍ତୁ ସେମାନେ ସାଧାରଣ ସ୍ରୋତର ନମୁନା ନୁହନ୍ତି, ଉଦ୍ଭଟ ସୃଷ୍ଟି ।

ମୁଁ ପାଠ ପଢ଼ାଇବାକୁ ଠିଆହୁଏ, ଆରମ୍ଭ କରିଦିଏ, ଯାହାର ମନେହୁଏ ସେ ଉଠି ଚାଲିଯାଏ । ଆଉ ଦଳେ ବସି ଟୁପୁରୁଟାପୁରୁ ଗପ କରନ୍ତି, କିଏ ବା ବଡ଼ପାଟିରେ, ତାପରେ ହଠାତ୍ କିଏ ଜଣେ ଉଠିପଡ଼ି ପ୍ରଶ୍ନ ପଚାରେ, କେଉଁ ରାଜନୈତିକ ନେତାଙ୍କ ବିଷୟରେ— "ତାଙ୍କ ବିଷୟରେ ଆପଣଙ୍କ ମତ କ'ଣ ?"

"ସେ କ'ଣ ତୁମେ ପଢ଼ୁଥିବା ଇତିହାସ ଅନ୍ତର୍ଭୁକ୍ତ ?"

"ନହେବେ କାହିଁକି ? ଇତିହାସକୁ ତାଙ୍କ କାମର ଅବଦାନ କିଛି ହେଲା ନାହିଁ ଆପଣ କହିବାକୁ ଚାହାନ୍ତି ? କହନ୍ତୁ, ସେ ଶୁଣିଲେ କ'ଣ ଭାବିବେ କେଜାଣି ।"

"ଆରେ ବାବୁ, ସେକଥା କ'ଣ ପରୀକ୍ଷା ପ୍ରଶ୍ନରେ ପଡ଼ିବ ?"

"ବୁଝିଲେ ସାର୍, କ'ଣ ପଡ଼ିବ ତା' ଆପଣ ଜାଣନ୍ତି ନାହିଁ କି ଆମେ ଜାଣି ନାହୁଁ । ପରୀକ୍ଷା ପଡ଼ା ପାଇଁ ନୋଟ୍ ବହି ଅଛି, ଖାଲି ପରୀକ୍ଷା ହଲ୍‌ରେ ହାତ ପାଖରେ ଥିଲେ ହେଲା । ସେକଥା ଛାଡ଼ନ୍ତୁ । ଏବେ ସାର୍, ତାଙ୍କ ବିଷୟରେ ଆପଣଙ୍କ ମତାମତ କହନ୍ତୁ, ଆମ ଭିତରେ ସେଥିପାଇଁ ଭାରି ବାଦାନୁବାଦ ।"

"ତୁନି ହୁଅ ।"

ସଙ୍ଗେ ସଙ୍ଗେ ଗୁରିଆଡ଼ୁ ଟେବୁଲ୍ ବାଡ଼ଆ ଶବ୍ଦ ।

"ଭୁଲ ହୁଅ। ଏସବୁ ବାଜେ ପ୍ରଶ୍ନର ଉତ୍ତର ଦେବାକୁ ମୁଁ ଆସିନାହିଁ।"

"ତା'ହେଲେ ସାର୍, ଆମେ କକ୍ଷ ତ୍ୟାଗ କରିବାକୁ ବାଧ ହେଲୁଁ।" ଗଲେ ଉଠି ପଞ୍ଚାଏ। ଏମିତି ନିତିଦିନ। ପାଠ ଗାଇବା ମୋ କାମ, ହାଜର ପାଇଁ ଉପସ୍ଥିତ ହେବା ସେମାନଙ୍କର। ତା'ପରେ କିଏ ବସେ, କିଏ ଉଠିଯାଏ, କିଏ ଗପେ, କିଏ ବୁଲିଯାଏ। ଉଚିତାଚିତ ହେବା କି ପ୍ରୟୋଜନ? ଆଲୋ ସଖି, ଆପଣା ମହତ ଆପେ—।

ତାଙ୍କ ଆଖିରେ ମୁଁ ଗୁରୁଜନ ନୁହେଁ, ସାଧାରଣ ମଣିଷ, ବେତନଭୋଗୀ, ତେଣୁ ଗୁରୁର ସବୁ କର୍ମଗୁଣ ଗୁରୁର ବନ୍ଧା କାମକୁ ବନ୍ଧା ମୂଲ। ଆଉ କି ସମ୍ବନ୍ଧ?

ସେତିକିରେ ଅଟକିଥାନ୍ତା କି? କିନ୍ତୁ ସେମାନଙ୍କ ଭିତରେ ନାନା ଦଳ, ପ୍ରତି ଦଳ ପଛଆଡ଼େ ଗୋଟାଏ କିଛି ରାଜନୀତି-ମତର ଦଳ, କିନ୍ତୁ ବାଦାନୁବାଦ ସେ ମତମାନଙ୍କ ପାର୍ଥକ୍ୟ କି ସ୍ୱରୂପ ବିଷୟରେ ହୁଏ ନାହିଁ, 'ମତ' ଖାଲି ଗୋଟାଏ ନାଁ, ଗୋଟାଏ ମାର୍କା, ପ୍ରକୃତରେ ସେ ମତ କହିଲେ ବସ୍ତୁର କ'ଣ ଲକ୍ଷ୍ୟ କ'ଣ ସେସବୁ ପ୍ରଶ୍ନ ଉଠେ ନାହିଁ। ଆଲୋଚନା ହୁଏ ଅନ୍ୟ କଥା—କି ଉପାୟ କରି ବାହାରେ କିଏ କେମିତି ଚଞ୍ଚଳ ଚଞ୍ଚଳ ଧନୀ ହେଲା, କ୍ଷମତା ପାଇଲା, କିଛି ସୁବିଧା ପାଇଲା, କିଛି ଉଦ୍ଦେଶ୍ୟ ସାଧିଲା, ଏମିତି କେତେ ଘଟଣା ବିଷୟରେ କଥାଭାଷା, ସ୍ଥାନୀୟ ସମ୍ବାଦ, ଖେଳ କଥା, ସିନେମା କଥା, ଏହିପରି। କିନ୍ତୁ ଦଳଗୁଡ଼ାକ ତୁଣ୍ଡରେ କଳି କରି ଅଟକନ୍ତି ନାହିଁ, ମଝିରେ ମଝିରେ ମାଡ଼ ଫଉଜଦାରି ଲାଗିଯାଏ। ବାହାରୁ ପଡ଼ିଲେ ଦଳପତି ଗୁଡ଼ିଏ, ତାଙ୍କ ପଛେ ପଛେ ସାଙ୍ଗସାଥୀ। ଆମ ଭିତରେ ବି ଦଳ ଗଡ଼ାଗଡ଼ି ଗଲା, କେତେଜଣ କେଉଁ ପିଲାଙ୍କ ଦଳ ସଙ୍ଗେ ମେଣ୍ଟ କଲେ। ମୁଁ ଆତଙ୍କିତ ହୋଇ ରହିଥାଏ, ଦେଖେ। ଷ୍ଟ୍ରାଇକ୍ ବି ହେଲା। କେତେଥର କେତେ ଅଧ୍ୟାପକ ପିଲାଙ୍କଠୁ ମାଡ଼ ଖାଇଲେ, ଜଣକ ଆଖି ଫୁଟିଲା, ଜଣକ ଗୋଡ଼ ଭାଙ୍ଗିଲା, ଜଣେ ଛୁରୀ ଭୁସା ଖାଇ ଡାକ୍ତରଖାନାରେ ଛମାସ ପଡ଼ି ଭଲ ହେଲେ। ଥରେ କଲେଜର ବହୁତ ଟେବୁଲ୍ ଚୌକି ଜଳିଲା, ଝରକା ଭାଙ୍ଗିଲା। କେତେଥର ପୁଲିସ ଆଇଲେ। ନାନା ଅଶୋଭନୀୟ କାଣ୍ଡ।

ତଥାପି ଆଶ୍ଚର୍ଯ୍ୟ ଲାଗୁଥାଏ ସେ ପିଲାଙ୍କ ଗୁଣ । ସମସ୍ତେ ଗୋଳମାଳିଆ ନୁହନ୍ତି, ଅଳ୍ପ । ପିଲାମାନେ ପୁରୁଣା ଧାରାରେ ମେଣ୍ଢାପରି ଚାଲିବାକୁ ନାରାଜ, ମେଣ୍ଢକ, ତାଙ୍କ ମନରେ ନୂଆ ଅଭାବବୋଧ ଦେଖା ଦେଇଛି, ପଢ଼ାପାଠରେ କି କାମରେ କି ଆଦର୍ଶରେ ସେ ଅଭାବବୋଧକୁ ମେଣ୍ଟାଇଲା ଭଳି କିଛି ନାହିଁ, ତେଣୁ ବାରମ୍ବାର ସଂଘର୍ଷ । ଏମାନେ ଆଖି-ବୁଜି ଘୋଷୁନାହାନ୍ତି, ଆଖି ଖୋଲି ଚାହିଁବାକୁ ମନ, ଭାବିବାକୁ ଚେଷ୍ଟା କରୁଛନ୍ତି । ବିଶ୍ୱାସ କରୁନାହାନ୍ତି, ବୁଝିଲେଣି ବିଶ୍ୱାସ କଲେ ଭୂଆଁ ବୁଲି ହିଁ ହୁଏ । ପରୀକ୍ଷିବାକୁ ପରଖିବାକୁ ଲୋଡ଼ନ୍ତି । ଏମାନେ ଜୀବନଠୁଁ ପରିସ୍ଥିତିଠୁଁ ଆଡ଼େଇ ରହି ବନ୍ଧା ଦୁନିଆରେ ବନ୍ଦୀ ହେବାକୁ ଅନିଚ୍ଛୁକ, ଦୁ'ଟାକୁ ମିଳାଇ ଦେଖିବାକୁ ତାଙ୍କ ଇଚ୍ଛା, ଜୀବନର ଗୁରୁତ୍ୱ ବୁଝନ୍ତି । ମନ ହେଲେ ଏମାନେ ଯାହା କରନ୍ତି, ଦେଖିଲେ ଆଖି ଖୋସିହୋଇ ପଡ଼ିବ । ଥରେ ଗୋଟାଏ ସଡ଼କ କଲେ, ଦୁ' କଡ଼ରେ ଗଛ ଲଗେଇଲେ, ପୋଖରୀଟାଏ ଖୋଳିଦେଲେ । ନଈବଢ଼ି ବେଳେ ସାହାଯ୍ୟ କରିବାକୁ ଯାଇ ଅସାଧ୍ୟ ସାଧନ କଲେ । ବାରୁଣୀ ବୁଡ଼ ପଡ଼ିଲା, ଲକ୍ଷଲକ୍ଷ ଯାତ୍ରୀ ଆସିଲେ ଜଟେଶ୍ୱରଙ୍କ ପୋଖରୀକି, ପ୍ରକାଣ୍ଡ ମେଳା, ଏମାନେ ଶୃଙ୍ଖଳା ରଖିଲେ, ଯାତ୍ରୀଙ୍କ ପାଇଁ ଚଳେଇ ବାନ୍ଧି ବସ୍ତି ତୋଳିଦେଲେ । ଏମାନେ ଅଭିନୟ ଦେଖାନ୍ତି, ସଙ୍ଗୀତ କରନ୍ତି ଦକ୍ଷ ବୃତ୍ତିଆଙ୍କ ପରି, ଯାଙ୍କ ଭିତରେ ଅଛନ୍ତି ଲେଖକ, ବକ୍ତା, ଚିତ୍ରକର ।

ରାଜନୀତି କ୍ଷେତ୍ରରେ ଭୋଟ ଲଢ଼େଇ ବେଳେ ଏମାନେ ହିଁ ଦୁଇ ବିରୋଧୀଦଳର କର୍ମୀ, ବହୁତ ଖଟିଲେ, ଗାଁଗହଳି ଅନ୍ଧିସନ୍ଧି ବୁଲିଲେ କିନ୍ତୁ ପରସ୍ପର ବିରୁଦ୍ଧରେ ନାନା ଅଶୋଭନୀୟ କାଣ୍ଡ ବି କଲେ ।

କେତେଥର ଭାବିଛି, ଇତିହାସର ଏ ବି କରିଲେଇଟାର ଚିହ୍ନ । ନୂଆ ଯୁଗ ଆସିଯାଇଛି । ନୂଆ ନୂଆ ସୃଷ୍ଟି କରିବାକୁ ଛାତିଁ ଅଭିନ୍ନ ଶକ୍ତି, ସେ ଉତ୍ତେଜନାରେ ଆବେଗରେ ଛଟପଟ ହେଉଛି । ବାଗ ପାଉ-ନାହିଁ । ଦେଖାଇବାକୁ ବାଟେଇବାକୁ କେହି ନାହିଁ । ଆମର ଏ ସସ୍ଥା, ଯାର ପଦ୍ଧତି, ସେସବୁ ତା' ଆବଶ୍ୟକ ଅନୁପାତରେ ମାନାତା ଅମଳର, ଆଉ ମୁଁ ନିଜେ, ଆମେ ।

କିନ୍ତୁ ଶାନ୍ତିଶୃଙ୍ଖଳା ସଂଯମ ସଦ୍‌ବିଚାର କାହିଁ ? ହୁଏତ ମୋ ପ୍ରଶ୍ନର ଉତ୍ତର ମୁଁ ମନେ ମନେ ଦେଇଯାଉଛି, କିନ୍ତୁ ତଥାପି ମୁଁ ଉତ୍ତର ଖୋଜେ । କାରଣ, ମୁଁ ତ ବୁଢ଼ା ହୋଇନାହିଁ ମୁଁ ନିଜେ ଫୋପଡ଼ା ହେବି ! ପିଲାଙ୍କ ଉପରେ ରାଗିବା ଖଣ୍ଡବାଇ ହୁଏ, କିନ୍ତୁ ଦଧି ଭାଇନା ବିଳାପ କଲେ ମୁଁ ପିଲାଙ୍କ ସପକ୍ଷରେ କିଛି କହିଥାଏ ।

"ତୁମେ ସବୁଦିନେ ପିଲାଙ୍କ ପକ୍ଷିଆ, ହାଉ_" ସେ ଝିଙ୍ଗାସନ୍ତି ।

ମୁଁ କହେ "ନିର୍ଲିପ୍ତ ହୋଇ ଇତିହାସକୁ ଦେଖ, କାନ୍ଥରେ କ'ଣ ଲେଖାହୋଇଛି ପଢ଼, ଦମ୍ଭଧର ଦଧି ଭାଇନା । ମହାଭାରତ ଯୁଦ୍ଧରେ ହଣାହଣି ଲାଗିବା ଆଗରୁ ବି ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବିଶ୍ୱରୂପ ଦେଖାଉ ଦେଖାଉ ଭବିଷ୍ୟତ ଗୋଟାକଯାକ ଦେଖାଇଥିଲେ ପରା, ସେତେବେଳେ କ'ଣ କହିଥିଲେ ? ଡରନା, ମମତା ରଖନା, ମୁଣ୍ଡ ସ୍ଥିରରଖି କରିବା କାମ କରିଯାଅ ।"

"ଏ କ'ଣ ଧ୍ୱଂସ ?"

"ଆଦୌ ନୁହେଁ, ଏଯେ ନୂଆ ସୃଷ୍ଟି, ଧ୍ୱଂସ ବୋଲି ଅଛି କ'ଣ ? ଏସେ ତ ଆଗତ ଫସଲ ପାଇଁ ଭୂଇଁତଡ଼ା ।"

## ଗୃହ

ଯାଃ, ସବୁ ଚୁପ୍‌ଚାପ୍, ସମସ୍ତେ ଭଲପିଲା । ମୂଷା ତା' ଗାତରେ, ସାପ ତା' ଗାତରେ, ସଡ଼କରେ ଜଣକ ପଛେ ଜଣେ, ରେଲ୍ ପହଞ୍ଚୁଛି ଛାଡ଼ୁଛି ତା' ଟାଇମ୍‌ରେ, ଅଫିସରେ ଦଶଟାବେଳେ ଦେଖ, ଯେଝା ଠା'ରେ ସେ ।

କଲେଜରେ ଘୋ ଘା ନାହିଁ । ଧାଡ଼ି ଧାଡ଼ି ହୋଇ ବସିଛନ୍ତି ପିଲାଏ, ବସି "ଆଟେନ୍‌ସନ୍ !" କଣ୍ଡେଇଟିମାନେ, ଆଃ, କି ଭଦ୍ର, କି ସଂଯତ, କି ନିୟନ୍ତ୍ରିତ !

ଆସିଛନ୍ତି ବନ୍ଧ୍ୟା ମନ୍ଦିରକୁ, ବସିବାକୁ ପଡ଼ିବ । ଅସୌଜନ୍ୟ ଚାଲିବ ନାହିଁ ।

ମୁଁ ପଢ଼ାଉଥିଲି, ଠିଆ ଠିଆ, ଇତିହାସ କହିବ, ତା' ଆଗରୁ, ସଂକ୍ଷେପରେ, ଖୁବ୍ ସଂକ୍ଷେପରେ, ପିଲାଙ୍କୁ ତାଙ୍କ ଦାୟିତ୍ୱ ସମ୍ପର୍କରେ କିଛି ମାତ୍ର ଆଦର୍ଶ ବୁଝାଉଥିଲି, ଏ ମୋର ମନଗଢ଼ା ନୁହେଁ, ସମସ୍ତଙ୍କର ବାରମ୍ବାର ମନେରଖିବା ଉଚିତ । ଦେଖ, ଇତିହାସ ପଢ଼ିବ, କିନ୍ତୁ ଆଗ ବୁଝ ତୁମର ଐତିହାସିକ ଦାୟିତ୍ୱ ଏବେ କଣ, ଅନ୍ଧକାର ଭିତରୁ ଆଲୋକ-ଧାମକୁ ଗତି କରୁଛି ଆମ ଦେଶ, ନୂଆ ଇତିହାସ ଗଢ଼ୁଛି, ତୁମେ ହିଁ ତ ତା'ର ସ୍ରଷ୍ଟା !

ଯାଃ, ଆଉ କ'ଣ କହିଲି ? ଡେଙ୍ଗା ଟେବୁଲ ଉପରେ ହାତ ଉପରେ ମୁଣ୍ଡମାଡ଼ି ଶୋଇପଡ଼ିଥିଲି କି କ'ଣ । ବାଁ ଡେଣାରେ ଧଳା କାମିଜ୍ ଉପରେ ଏଗୁଡ଼ାକ ନାଲି ନାଲି କ'ଣ ଲାଗିଛି !

ସେମାନେ କ'ଣ ଦେଖିନାହାନ୍ତି ? କ'ଣ ଭାବିଥିବେ ?

ରୁମାଲ କାଢ଼ି ମୁହଁ ପୋଛିଲି, ବାଁ ହାତର କାମିଜ ଉପର ପୋଛିଲି, ସେମାନଙ୍କୁ ଅନାଇଁ ରହିଲି । କିଏ ଖାଲି ବସିଛି, ମୋ ଆଡ଼କୁ ଚାହିଁଛି, ମତେ ନୁହେଁ । କାହା ମୁହଁ ତଳକୁ, ଖୋଲା ବହି ଉପରେ କି ଖାତା ଉପରେ । ଚଢ଼େଇଧାଡ଼ି ସବୁ ବସିଛନ୍ତି, କିଏ କ'ଣ କରୁଛି ବାରି-ହେଉ ନାହିଁ, କିନ୍ତୁ ପାଟି ଶୁଭୁନାହିଁ ।

ସେମାନେ ନିଶ୍ଚୟ ମୋ ସ୍ଖଳନକୁ କ୍ଷମା କରିଛନ୍ତି । ନିନ୍ଦା କରି ନାହାନ୍ତି, ଏପରି କ'ଣ ସମ୍ଭବ ? କ୍ଷମା କାହିଁକି କଲେ ? ମତେ ଭଲ ପାଆନ୍ତି, ଭକ୍ତି କରନ୍ତି ନିଶ୍ଚୟ, ମନେ ମନେ । କାହିଁକି ନା ? କାରଣ ମୁଁ ଗୁରୁ । ପରିବେଶ ବଦଳିଲେ କେଡ଼େ ଚଞ୍ଚଳ ମନ ବଦଳେ । ଶୃଙ୍ଖଳା ଆସିଲା, ତା' ସହିତ ଭକ୍ତି, ସୌଜନ୍ୟ । ହାତେ ହାତେ ଫଳ । ହେଲେ ଭାବୁ ନାହାନ୍ତି ତ ? ଅସମ୍ଭବ ।

ମୋ ମନ ତାଙ୍କ ପ୍ରତି ଗଦ୍‌ଗଦ ହୋଇଉଠୁଛି, କାରଣ ମୋ ଅହମିକା ଫୁଲଉଠିଛି—ମୁଁ ଜାଣେ, ଏ ପିଲାଏ ମତେ ଭକ୍ତି କରନ୍ତେ, ଡରନ୍ତେ, ଆରମ୍ଭ ବେଳେ ବି ସେଇଆ ଥିଲା । ମୁଁ ଭୁଲ୍ କଲେ ବି ଠିକ୍ ତାଙ୍କ ଦୃଷ୍ଟିରୁ । ମୁଁ ଗୁରୁ, ତାଙ୍କ ପାଇଁ ସାକ୍ଷାତ୍ ପରମବ୍ରହ୍ମ । ମୁଁ ତାଙ୍କୁ ଯେଉଁ ଆଦେଶ ଦେବି ତା ଉପରେ ଅଦାଲତ ନାହିଁ, ଓସ୍ତର ତ ନାହିଁ ମୂଳରୁ । ମତେ ମାନିଲେ ତାଙ୍କର ମଙ୍ଗଳ, ସେମାନେ ଜାଣନ୍ତି । କାରଣ, ବୁଝିଛନ୍ତି, ନ ମାନିଲେ ଦଣ୍ଡ ମିଳେ ।

ଏମିତି ଗଦ୍‌ଗଦ ହେଲେ ମନେ ଲାଗେ ମୋ ଉପରେ କେଉଁ ଦେବତା ଅବତରିଛି, ମୋ ଚିନ୍ତା ରାଜ୍ୟରେ ନୂଆ ନୂଆ ଆବିଷ୍କାରର ଝଡ଼ବାଣ ଫୁଟେ, ଭୁଣ୍ଡବାଟେ ଉତ୍ତର ପଡ଼ିବାକୁ ଖୋଜେ । ମୁଁ କହିବାକୁ ଆରମ୍ଭ କଲି—

"ବହିପାଠ ପରୀକ୍ଷାପାଠ ବହୁତ ଶୁଣେଇଛି ତୁମମାନଙ୍କୁ, ଶୁଣୁଥିବ ସବୁଦିନେ । କିନ୍ତୁ ଖାଲି ସେଥିପାଇଁ ନୁହେଁ, ଇତିହାସର ତାତ୍ପର୍ଯ୍ୟ ଓ ଉପାଦେୟତା ବୁଝି ଇତିହାସ ପଢ଼, ବୁଝ, ଜୀବନର ନାନା ଘଟନା କେମିତି ଇତିହାସ ସଙ୍ଗେ ଖାପ ଖାଉଛି, କୁଆଡ଼େ ଗଳିଛି ଇତିହାସ । ରାଜା କି ଶାସକ, ଯୋଦ୍ଧା କି କୂଟନୀତିଜ୍ଞ, ଏପରି କୌଣସି ବଡ଼ ବଡ଼ ଶ୍ରେଣୀ ଇତିହାସର କର୍ତ୍ତା ନୁହନ୍ତି, କର୍ତ୍ତା ତ ତୁମ ଆମ ଭଳି, ପ୍ରକାର ପ୍ରକାର ଋଷିଆଙ୍କ ଭଳି ରାଜ୍ୟଯାକର ଅଗଣିତ ଲୋକ, ସବୁ ପ୍ରକାର, ସମସ୍ତେ । ତାଙ୍କର ଅଭାବ, ତାଙ୍କର ଆଶା, ଏଇଥିରୁ ବାହାରେ ଐତିହାସିକ କାରଣ ଓ ଆବଶ୍ୟକମାନ, ସେହି ଗଢ଼ିନିଏ ଘଟନା ଓ ସେ ଘଟନା ତିଆରି ପାଇଁ ସାଜସରଞ୍ଜାମ ପରି ମଣିଷଙ୍କୁ, ଲାଗୁଥାଏ ସେହି ମଣିଷ ସବୁ କରୁଛନ୍ତି, କିନ୍ତୁ ସେମାନେ ଐତିହାସିକ କାରଣମାନଙ୍କ ଯନ୍ତ୍ର ମାତ୍ର, ସେ କାମ ସରିଲେ ସେ ଯନ୍ତ୍ର କେଉଁ କଣରେ ହଜେ ।"

ଆଉ କ'ଣ କହିଥାନ୍ତି ପରି, ଘଣ୍ଟା ବାଜିଗଲା । ଗଲି ।

ଅଫିସ ଘରେ ମୋ ପାଇଁ ଆବେଦନପତ୍ରଟିଏ ଅପେକ୍ଷା କରିଥିଲା । ପଢ଼ିଲି । କର୍ତ୍ତୃପକ୍ଷ ମୋ ଚାକିରିକାଳ ଶେଷ କରି ନେଇଛନ୍ତି ।

"ଯେହେତୁ ଆପଣଙ୍କୁ ଷାଠିଏ ଟପିଲଣି, ଅନୁସନ୍ଧାନ କରି ଜଣାଯାଉଛି ଓ ଆପଣଙ୍କ ସ୍ୱାସ୍ଥ୍ୟ ଆଉ ଏତେ ପରିଶ୍ରମ କରିବାକୁ ଉପଯୁକ୍ତ ନୁହେଁ, ଅନୁସନ୍ଧାନ କରି ତା' ବି ଜଣାଯାଉଛି ତେଣୁ ଆମେ ଅତି ଦୁଃଖରେ ଆପଣଙ୍କୁ ବିଦାୟ ଦେଉଛୁଁ । ଏ କଲେଜର ପ୍ରତିଷ୍ଠା ଦିନରୁ ଏପର୍ଯ୍ୟନ୍ତ ଆପଣ ଏ କଲେଜ ପାଇଁ ଯେତେ ପରିଶ୍ରମ କରି ଆସିଛନ୍ତି ସେଥିପାଇଁ କୃତଜ୍ଞତା ଜଣାଉଛୁଁ ।" ଏକା ମତେ ନୁହେଁ, ଦଧି ଭଞ୍ଜନାଙ୍କୁ, ଆମ ଦେବକର ଆଉ ଛଜଣଙ୍କୁ । ସ୍ଥାନ ବି ଖାଲି ପଡ଼ିବ ନାହିଁ । ମୋ ସ୍ଥାନରେ ନିଯୁକ୍ତ ପାଇଛନ୍ତି ଜଣେ, ରାଜଶେଖର ସାମନ୍ତରାୟ, ସେ ପିଏଚ୍ ଡି ଉପାଧି ବି ପାଇଛନ୍ତି ।

ଆଗରେ ସେହି ବାଙ୍ଗର ଧୂଆଁଳିଆ ପାହାଡ଼ର ଧାଡ଼ି, ଆସନ୍ତୁ, ବାଙ୍କ ବୁଲୁଛି । କାହିଁକି ହଠାତ୍ ଲେଖିବାକୁ ଆରମ୍ଭ କରିଥିଲି ଏ କଲେଜରେ ମୋ ଅନୁଭୂତିର କାହାଣୀ ? କେବେ ତ କାହାଣୀ ଲେଖି ନାହିଁ । ଏମିତି ହଠାତ୍ ଶୁଣି ପଡ଼ିବ ବୋଲି ? ଆମ ସାଂସ୍କୃତିକ ଉତ୍ସବ ନେହଲ୍ ? ମାନ୍ୟବର ବିକ୍ରମ ମଲ୍ଲ ନ ଆସୁଣୁ ? ଜାଣେ ନାହିଁ । ତଥାପି, ଶେଷ କରେ । ହେ ବର୍ତ୍ତମାନର ଲୋକେ, ହେ ଭବିଷ୍ୟତର ଲୋକେ, ମୁଁ ଜାଣେ ମୁଁ ପୋକଟିଏ, ମୋଠି ନାନା ଦୋଷତ୍ରୁଟି, ନାନା ଦୁର୍ବଳତା, ନାନା ଡର, ନାନା ଛଦ୍ମବେଶ, ଆଉ ଛଳନା ବି । ସବୁ ପାଇକ ନୁହେଁ । ତଥାପି ବହୁତ କଥା କହିବାକୁ ଥିଲା । ମୋ ପାଇଁ ଇତିହାସ କହିବ ମୋ କଥା, ସମସ୍ତେ ଶୁଣିବେ ନାହିଁ । କେହି ଜଣେ ଶୁଣିବ ବୁଝିବ । ହୁଏତ ସେ ନିଜେ ମୁଁ, ମୋ ପୁନର୍ଜନ୍ମ । ସବୁ ମୁଁ ବିଶ୍ୱାସ କରିବାକୁ ରାଜି । ଖାଲି ଏ ଧୂଆଁଳିଆ ପାହାଡ଼ର ଅସ୍ଥିର ଛଡ଼ା । ଯାହା ଡର ମାନେ, ତାକୁ କେହି ମୋ ଉପରେ ମାଡ଼ିପାରେ, ମାଡ଼ୁ, କିନ୍ତୁ ତହିଁରେ ମୋର ବିଶ୍ୱାସ ନାହିଁ । ବରଂ ଶୂନ୍ୟ ଭଲ । ମୁକ୍ତ । ସୀମାହୀନ ।

'ନବରବି' ଜାନୁଆରୀ ୧୯୭୭



# ବଗିଚ୍ଚ

ମହାଶୂନ୍ୟ ଭିତରେ ଛୁଞ୍ଚିମୂନରେ ଦାଗ ଟିକିଏ ପରି ବଡକଟେ ଜାଗା କାଉଳିବାଉଳି ବଡ଼ ସହର ଭିତରେ ବୁନ୍ଦାଟିଏ । କେହି ବାଟ ପାଇବ ନାହିଁ ନ ଜାଣିଥିଲେ । ତଥାପି ଡାକବାଲା ଡାକେ—'ଚିଠି ।' ଗଉଡ଼ ପାଟିକରେ—'ଦୁଧ ନିଅ ।' ଶୁଖୁଆବାଲା ଆଗୁଳି ଟେକି ଭିତରେ ପଶେ । ଜଙ୍ଗଲ ପରି ବଗିଚ୍ଚ ଅବାକ ଭେଦି ମୁଣ୍ଡ ପମ୍ବର ବାଯ ଚହଟେଲ ସିଧା ଖୁଆଡ଼ ଦୁଆର ମୁହଁକୁ ଆସି ଅଳି କରେ ।

"ଭଲ ପାଗଲ ଇଲିସି ଅଷ୍ଟ୍ରମ, ଆଉ କିଏ ଦେଖିବ ବୋଲି ନୁଚେଇ କରି ଆଣିଚ, ଦେଖୁନା ତମରି ନାଖି ।" ମୁହଁଟେକି ଡୋଳା ଟେକି ମୁହଁକୁ ଖୁହାଣି ଗୁଡ଼ି ଫାଉଁକିନା ହସିଦିଏ । ଥର୍ କରି ହାତ ନଡେଇ ଦେଇ ଓହଳପଡ଼ାନ୍ତା ପରି ଝିଙ୍କି ପଡ଼ ନଖରେ ଭୁଲିଁରେ କାଟେ ଫୁଲ ଆଉ ବଛା'ଫାଳ, ଆଡ଼ରୁଷା ଦେଇ କହେ—

"ନଜନ ।"

ପିମ୍ପୁଡ଼ି ମଳା ପରି ସାଲୁସାଲୁ ମଣିଷ । ଓଁ ପରୁ ତଳକୁ ଗୁହଁିଲେ ବାରି ହେବ ନାହିଁ ପବ୍ । କିଏ କଳା, କିଏ ଗୋରା, କିଏ ଟିକିଏ ବଡ଼, କିଏ ଟିକିଏ ସାନ । କିଏ କାଲି ବି ଥିଲା କିଏ ଆଜି ନୂଆ । ଖାଲି ମଳା ମଳା, ଆଉ ନରେଖି ଦେଖିଲେ ଦଶିବ ହଲ୍‌ଚଲ୍ । ଆଗକୁ ପଛକୁ, ବାଁକୁ ଡାହାଣକୁ, ଉପରୁ ଗୁହଁିଲେ ସୁମାରି କରି ହେବ ନାହିଁ । କେଉଁ ଗଛରେ କେତେବେଳେ କଷି ଧରୁଛି, କେଉଁ ଗଛ ଝଳପଡ଼ୁଛି । କେଉଁଥିରେ ଲାଗିଲାଣି ଉଇ । କାହା ପତ୍ରରେ ପଡ଼ୁପୋକ । ସିମିଡି ।

କିନ୍ତୁ ସେ ଘରେ ସେସବୁ ଅନଶ୍ଚିତତା କେବେ ତାହା ଧାରଣାକୁ ମଡ଼ିଆ କରି ନଥିବ । ସବୁ ଧାରଣା ସଫା, ନିର୍ଦ୍ଦିଷ୍ଟ, ଆରମ୍ଭ ଓ ଶେଷ ଦେଖି ହେବ—ଏଇଠୁ ଆରମ୍ଭ ହେଲା, ଏଇଠି ସରିଲା, ମାପ କରିହେବ—ନିଦା, ସତେ ଅବା ହାତମୁଠାରେ, ଯିମିତି ହାତର ଅଙ୍କା, ହାତର ଶଙ୍ଖା, ହାତର ରିଷ୍ଟଓ୍ୱାଚ୍ ।

ଏ ଘର, ଏ ଘରର ମଣିଷ--ସେମାନଙ୍କୁ ଚିହ୍ନିଥିବା ମଣିଷ ଅଛନ୍ତି । ସେମାନଙ୍କୁ ଲୋଭେଇବା ମଣିଷ ଅଛନ୍ତି, ଆଉ ଅଛନ୍ତି କେତେ ଲୋକ, ଯେଉଁମାନେ ତାଙ୍କ ଅସ୍ତିତ୍ୱକୁ ଏଭଳି ସ୍ୱୀକାର କରି ସାରିଛନ୍ତି ଯେ, ସେମାନେ କାମନା କରୁଥାନ୍ତି, ନ ଥାନ୍ତେ କି ଏ ।

ହଟାକୁ ଲଗି ବାଁ ପାଖକୁ ଜଗୁ ଜେନାଙ୍କ ଘର । ବଡ଼ଘର । ଖାଲି ଦୋ'ମାହାଲା ବୋଲି ନୁହେଁ, ମେଲଫରଶ୍ ବୋଲି ନୁହେଁ, ସେଥିରେ ଯେଉଁ ମାଲ-ମସଲା ବ୍ୟବହାର କରାଯାଇଛି, ଯେତେଯେତେ ଆଖିକି ସୁନ୍ଦର ଦମ୍ଭିଲା ଦାମିକା ପଦାର୍ଥ ଲାଗିଛି, ଯେଉଁ ଶୈଳୀରେ କୋଠାଟିର ଗଢ଼ଣ, ସେସବୁପାଇଁ ସେ ବଡ଼ଘର । ଲୋକେ ଫୁସୁରୁଫାସୁରୁ ହୁଅନ୍ତି, ସେ ଘର ବିଷୟରେ କୁଆଡ଼େ କେତେ ଗୁପ୍ତ ଅନୁସନ୍ଧାନ ଚାଲିଥିଲା, ପବିତ୍ର ଶାସନକୁଆ ଉଠିଲାବେଳେ ଗ୍ରନ୍ଥ ସଙ୍କଳିତ ହୋଇଥିଲା, ଛପା ହେଉ ହେଉ ଅଟକିଗଲା ।

କିନ୍ତୁ ଗ୍ରନ୍ଥରେ ଗ୍ରନ୍ଥିପଡ଼ି ଗଣେଶଙ୍କ ବାହନମାନଙ୍କୁ ସମର୍ପିତ ହେଉ ଯାଉଛି, ତା' ପବିତ୍ରତା ତ ଜଣେଇଜଣା । ମନ୍ଦିରେ ମନ୍ଦିରେ ହଠାତ୍ ଯେଉଁ ଉଡେ ଗେରୁଆ ଟହଲ୍ ଗୁଡ଼ଏ । ମାଇକ୍ ବାଟେ ଗର୍ଜନ ଛାଡେ଼ ବହୁତ ପାଟିରେ ହରିନାମର ଲହଡ଼ି । କାଳ କଳିଯୁଗର କଳିପାଦରେ କଳୁଷିତ ସହରର କଳୁଷକୁ ବାରମ୍ବାର ଧୋଇଥାଏ । କଳାପିମ୍ପୁଡ଼ି ପରି କୁଆଡ଼ୁ କୁଆଡ଼ୁ ପୂଳନ୍ତୁଅନ୍ତି ମଣିଷ, ସଡ଼କରେ ଗାଡ଼ିଭିଡ଼, ଅଇଁଠାପତ୍ର ପାଖେ କୁକୁରଙ୍କର କାମୁଡ଼ାକାମୁଡ଼ି ।

ମନ୍ଦିରେ ମନ୍ଦିରେ ଅନ୍ୟ କେଉଁ ଧର୍ମବାଣୀ ଧର୍ମଗୀତ ଯେତ୍ ଧ୍ୱନିତ ହୁଏ । କେତେବେଳେ କେଉଁ ସ୍ୱଜା, ଇଂରେଜୀ, ବଙ୍ଗଳା, ହିନ୍ଦୀ କି

ଓଡ଼ିଆ ଶୁଣାଯାଏ କେଉଁ ସନ୍ଥ ଆସିଛନ୍ତି, ଅଥବା କେଉଁ ସନ୍ଥଙ୍କର କେଉଁ ଶିଷ୍ୟ, ଧାଡ଼ିହୋଇ ଗାଡ଼ିସବୁ ଠିଆ ହୋଇଯା'ନ୍ତି । ସବୁବେଳେ ଟୁପୁଲି ଗୋଲଗାଲ ଜଗୁ ଜେନା । ଲୋକ ଚହ୍ନି ନଯର-ପଯର ହୋଇ ଫାଟକ ପାଖରୁ ପାଉଛନ୍ତି ନଅନ୍ତି ।

"ସାର୍ ଆସନ୍ତୁ । ଅଇଲ୍ଲା ତ ଆପଣଙ୍କ କଥା କହୁଥିଲେ ।" ଯେ କେବେ କଲଟରରେ ଆଙ୍ଗୁଠି ଗେଞ୍ଜି ଗେଞ୍ଜି ଟାଇପ୍ କରି କରି ସାପସିଡ଼ି ଖେଳରେ ସାର ପକାଉଥିଲେ, କେବେ ପଡ଼ିଗଲେ ସିଡ଼ି ପାଦତଳେ, ଉଠି ଉଠି ହେଲେ ମନ୍ତ୍ରୀଙ୍କ ପି. ଏ. । କେତେ ଅମଳ ଭୋଗ କଲେ, ତା'ପରେ ସାର ପାଡ଼ିଲେ ସାପର ମୁଣ୍ଡ ପାଖେ, ଗୋଳେଇ ଦେଇ ଖେଳଘରଙ୍କି ଉଠି ଚାଲିଗଲେ, ଇସ୍ତଫା ଦେଲେ, ଲୋକେ ଜାଣିଲେ ତାଙ୍କର ଦୃଢ଼ବୈରାଗ୍ୟ ହୃଦ୍‌ବେଗ ବାହାରିଛି । ଖାଲିଆଖିରେ ତ ଜାଣି ହେବନାହିଁ, ଏକା ଡାକ୍ତର ବୁଝିବେ ସିନା, ତା'ପରେ କ'ଣ ବେପାର ତା'ର କ ବେପାର କିଏ କହିପାରିବ, ପଚାରିଲେ ଅନେକେ କହନ୍ତି କିଏ ବେପାରୀ, କିଏ କ ଗବେଷଣା କରୁଛନ୍ତି, କିଏ କରୁଛନ୍ତି ସାମ୍ବାଦିକତା, କିଏ ଖାଲି କର୍ମୀ ।

କିନ୍ତୁ ଏ ବଡ଼ଘର ଯେତେବେଳେ ତୋଳାହେଲା—ନାଁ ଫୁଟିକଲା ଇନ୍ଦ୍ରାଣୀଭବନ । ଯେତେବେଳେ ବେପାରର ସିଦ୍ଧି ଆଖିଦୃଶିଆ ହେଲା, ଆଉ ଅବିଶ୍ୱାସ କରିହେବ ନାହିଁ । ଇନ୍ଦ୍ରାଣୀ ଦେବୀ କୁଆଡ଼େ ତାଙ୍କ ସ୍ତ୍ରୀ । କିଏ କହେ ଇନ୍ଦ୍ରାଣୀ ତାଙ୍କ ଇଷ୍ଟଦେବୀଙ୍କ ନାଁ । ଆଉ କିଏ କହେ— ସିଏ ସବୁ ସନ୍ଥଙ୍କୁ ସେବା କରନ୍ତି ସତ, କିନ୍ତୁ ତାଙ୍କ ଗୁରୁ କେଉଁ ଶ୍ରୀ ଶ୍ରୀ ଶ୍ରୀ ଇନ୍ଦ୍ରାଣୀ ଦେବୀ । ଆଗେ ମୈମନସିଂରେ ଥିଲେ । ଏବେ ହିମାଳୟରେ ଉତ୍ତର କାଶୀଆଡ଼େ କେଉଁ ଗୁମ୍ଫାଭିତରେ ।

ସବୁ ଠିକଣା ଏ ସହରକୁ ଅଚିହ୍ନା । ଯେତେକାଳ ଥାଏ, ମୁହଁର କର୍ଣ୍ଣରୁ ହିଁ ପରିଚୟ ମିଳିଥାଏ । ବଡ଼ କୋଠା ଆଗରେ ଅନ୍ଧ ଚାରି ହେଉଁ ଖଣ୍ଡିକ ଆଗକୁ ବାହାରିଛି, ତା' ମୁଣ୍ଡି ଖିଲାଣ ଓ ଖୁଣ୍ଟ ଏପରି ଗଢ଼ା ହୋଇଛି ଯେ, ସଡ଼କରୁ ଦିଶେ କଇଁଫୁଲିଆ ହାତଟିଏ ଠିଆ ହୋଇଛି ।

ତା' ପିଠିରେ କମକୁଟ ଖଟୁଲି ଚଉ ଗୋଟିଏ ବାଡ଼ାଦିଆ ପିଣ୍ଡା, ତା' ଉପରେ ବମାନ ପରି ଆଗବାଡ଼ା ପାଖେ, କୁଣ୍ଡରେ ପାଣିପଣି ଘଟକୁ ଘଡ଼ ଗୁଡ଼ିଏ ଧାନଗଛ ।

ଲୋକେ କହନ୍ତି—ଜଗୁଜେନା ଜଣେ ବଡ଼ କୃଷୀ ।

ଦାଣ୍ଡଘରେ କାଚଆଲମାରିରେ ପଣି ଶୋଭା ପାଉଥାଏ କେଇଖଣ୍ଡ ଲୁହା-ପଥର । କୁଆଡ଼େ କେନ୍ଦୁଝରପଟ ଖଣ୍ଡାଧାର ଜଳପ୍ରପାତ ଆଡ଼ର । ଲୋକେ କହନ୍ତି ସେଠି ସେହି ପାହାଡ଼ ଉତ୍ତରାଞ୍ଚଳରେ ଜଗୁଜେନାଙ୍କର ଲୁହାଖଣି ଅଛି । ବହୁତ ମୂଲ୍ୟବାନ୍ ଖଣି । ସେଭଳି ଆଉ କାହାର ନାହିଁ । ଅତି ଆଧୁନିକ ଯନ୍ତ୍ରପାତି ଲଗାଇ ଅତି ଆଧୁନିକ ବିଜ୍ଞାନକୌଶଳରେ ସେ ଖୋଳାହେବ । ଏଇ ହେଲା ଜାଣ, ନଜର ନାଁ ରହିବ ନାହିଁ, ଦେଖଇଦେଲେ ଇନ୍‌କମ୍‌ଟିକସ କାମୁଡ଼ିବା ଭୟ ଅଛି ।

ଅନ୍ତତଃ ସେହି ପ୍ରସିଦ୍ଧ ଜେନା କୋଠି ଆଖିରେ ତା' ଡାହାଣ ପାଖରେ ଯେ ଜାଗା ଅଛକ ଗୋଟାଏ ଅତି ବାସ୍ତବ କଦା ଆଉ ଟାଣୁଆ ଖୋଲା । କେତେ ଲୋକ ଆସିଛନ୍ତି, କୁଆଡ଼େ ଉଡ଼ି ଯାଇଛନ୍ତି, ଉଭେଇ ଯାଇଛନ୍ତି; କେତେ ମନ୍ତ୍ରୀ ବି ଆସିଛନ୍ତି । ଯେଉଁ ଜନସମୁଦ୍ରରୁ ଆସିଥିଲେ ସେଠି ଲୀନ ହୋଇଯାଇଛନ୍ତି । କେତେ ସାଧୁବାବା ଆସିଥିଲେ, କିଏ ମଲେଣି, କିଏ କୁଆଡ଼େ ଗଲେଣି, କାହାର କଳାହରଣ ହୋଇଯାଇଛି, କେତେ ବାବୁ କେତେ ପିଢ଼ି ଉପରେ ବସି କେତେ ପ୍ରତାପୀ ହୋଇଥିଲେ ସେମାନେ ବି ସେଠି ଆଉ ନାହାନ୍ତି । ରାଜମହଲ ପେଣ୍ଡାଲ ଉପରେ ବି ପାଞ୍ଚବର୍ଷ ଦଶବର୍ଷ ଆଙ୍ଗୁଠିଟିପ ଆଗରେ ସୁମାରି କରୁ କରୁ ଜଣେ ଜଣେ ପାଞ୍ଚଥର ବେଶବଦଳେଇ ଗୋଠବଦଳେଇ ସାରିଲେଣି, ତାଙ୍କର ଆଉ ସ୍ଥାୟୀ ପରିଚୟ ବୋଲି କିଛି ନାହିଁ ।

କିନ୍ତୁ ଡାହାଣ ପାଖରେ ଏ ଅଚଳ—ଯେମିତକ ସେମିତି ।

ଫାଟକରେ କବାଟ ନାହିଁ । ତା' ପରିବର୍ତ୍ତେ ପାଞ୍ଚଟି ସାମନ୍ତବଳ ବାଉଁଶ ଆଡ଼ବାଗିଆ ହୋଇ, ଦୁ'ପଟେ ଯୋଡ଼ିଏ ଖମ୍ବ ଉପରେ ଗଳ, ଧନ୍ଦାଟାଏ ହୋଇଛି । ସତେ ଅବା ମଫସଲର ବାଇଗଣବାଡ଼ି । ଲୋକେ

କେବେ ଧଡ଼ୀ ଖୋଲୁ ଖୋଲୁ ଭଉ ଭଉ କରି ଦେଶୀକୁକୁର ଯୋଡ଼ାଏ ଭଳିଆ ଗୋଡ଼ରେ ଆସନ୍ତି, କେତେବେଳେ ନଥାନ୍ତି, ପେଟ ପାଟଣା ପାଇଁ କୁଆଡ଼େ ବୁଲୁଥାନ୍ତି, ଜଗୁଜେନା କୁକୁର ସହିପାରନ୍ତି ନାହିଁ । କୁଆଡ଼ୁ କୁଆଡ଼ୁ ହାଡ଼, ଗୋଡ଼, ମୁଣ୍ଡଘେନି ସେମାନେ ଯେ ବାହାରି ଆସନ୍ତି । ବେଳେ ବେଳେ ସଢ଼ାଗନ୍ଧ ହୁଏ, ଜଗୁଜେନାଙ୍କର ଝରକାବାଟେ ଗନ୍ଧ ଆସେ । ପାଳେ କୁକୁର, ଘାଉହେଲେ ଅନେକ ସମୟରେ ସଙ୍ଗୀତ କରନ୍ତି । ପ୍ରକୃତକଥା ମାଈକୁକୁରଗୁଡ଼ାକ ଉତ୍ତକ୍ତ ହୋଇ ସେଠି ଜଗିରହନ୍ତି, ତାଙ୍କର ଛୁଆ ହୁଏ । ଅଣ୍ଡିରି ଓ ସୁନ୍ଦରିଆ ଛୁଆଗୁଡ଼ିକୁ କିଏ କୁଆଡ଼େ ନେଇ ଯାଆନ୍ତି, ଦୁଃସାହସୀଗୁଡ଼ିକ ଗାଡ଼ିଚକତଳେ ସଡ଼କରେ ଚିପିହୋଇ ମରନ୍ତି । ରୋଗ ମଡ଼କ, ଯାପଖିଆ, ବଲୁଆଖିଆ ଆଦି ଦୈବଦୁର୍ବିପାକରେ ବି କେତେଗୁଡ଼ିଏ ଯାଆନ୍ତି । ତଥାପି ସବୁ ମୁଥରୁ ଗୋଟାଏ ଦି'ଟା ରହିଯାନ୍ତି, ମାଈ, ଅସୁନ୍ଦର, ରୋଗୀଣା ଧେଡ଼ି ଆଉ ଯେମିତି ଦଶଗ୍ରାମ ପାଖହୁଏ ସିମିତି କୁଆଡ଼ୁ କୁଆଡ଼ୁ ସେମାନଙ୍କ ଦେହରେ ଝଟକେ ଯୌବନ, ଧଡ଼ୀ ପାଖରେ ଲାଗେ ସାହିସାକର କୁକୁରମେଳା । ରାତି ରାତି ସଡ଼କ ଉପରେ ଏକ ସଙ୍ଗୀତ ଲହରୀ । ସତେ ଅବା "ପପ୍-ବାଟ୍-ଆଧୁନିକ" ମାଧ୍ୟମରେ କରୁଣରସର ଭଉ ଭଉ । ଜଗୁଜେନା ବିରକ୍ତହୋଇ ଭ୍ରୂକୁଟି କରି କହନ୍ତି—"ମଣିଷଟା ଯେମିତି ନା—ହିଁ ।" ଦ୍ରୁତ ଆଗନ୍ତୁକ କୁକୁର-ଯୁବାଖାତାରେ ଦସ୍ତଖତ କଲାପରି ମଛିଗୋଡ଼ରୁ ଗୋଟିଏ ଟେକି ମହିଏ ପରସ୍ରା କରି ଦେଇଯାଏ । ଏକାପାଖିଆର ପାଚିରି କରିରେ ନୁହେଁ । ଜଗୁଜେନାଙ୍କର ଇନ୍ଦ୍ରାଣୀଭବନ ପାଚିରି କାନ୍ଥକରରେ ବି ।

ଧଡ଼ୀଟେକ ପଣିକେ, ଗ୍ରେଟିଆ ଜଙ୍ଗଲଟିଏ, ନାନାଜାତିର ଫୁଲଗଛ, ଜାତି ହେଉଛି ଦୁଷ୍ପ୍ରାପ୍ୟ ନୁହେଁ; ଡଗର, ମନ୍ଦାର, ମଲ୍ଲୀ, ଯୁଈ, ଚମ୍ପା, କାଠଚମ୍ପା, ବେଣୀଚମ୍ପା, ଭୁଜମଲ୍ଲୀ, କଆଳୀ, କୁନ୍ଦ, ରଙ୍ଗଣି, ଗେଣ୍ଡୁ, ନାଲି କନିଅର, ଦାସକେରେଣ୍ଡା, ସେବତୀ, କୁସୁମ, ସ୍ଥଳପଦ୍ମ, ଟେଣ୍ଟା ଟେଣ୍ଟା ଫିକା ବାସ୍ନା ଗୋଲାପ । କେତେ ଏମିତି ନିଜ ନିଜ ଫୁଲ ଫୁଟିବା ଋତୁରେ ସବୁ ଗଛରେ ଫୁଲଭର୍ତ୍ତି, ସବୁଗଛ ଝଙ୍କା, ଘରପାଖେ ହି' କରିରେ ଧାଡ଼ି ହୋଇ ନାନା ବର୍ଣ୍ଣର ଶୋଭା-ପତ୍ର ଗଛ, ତା' ପ୍ରକାର

ଯେପରି ଦୁଷ୍ପ୍ରାପ୍ୟ ନୁହେଁ; କିନ୍ତୁ ଆଖି ଝଲସିଯାଏ ଏସ ଗଛମାନଙ୍କ ଆକାର ଓ ସ୍ୱାସ୍ଥ୍ୟ ଦେଖିଲେ, ଯାଉ ଯାଉ ମଝିରେ ଅଟେଏ କୃତ୍ରିମ ପାହାଡ଼ ପରି ଜମିରୁ ଉଚ୍ଚା ହୋଇଥିବା ପଥରଗୁଡ଼ାକ ପରେ ପରେ ସଜାଇ ଦିଆ-ହୋଇଛି । ତା' ଉପରେ ଅଟେଏ ଅଟେଏ ନାନାବର୍ଣ୍ଣର ଗୁଳ୍ମ ଲଗାହୋଇଛି । ଗୋଟାଏ କରକୁ, ଜେନାଙ୍କ ଘର ଆଗକୁ, ଯେଉଁଠି ପାହାଡ଼ରୁ ଝର ଫୁଟିଲା ପରି ତାଙ୍କ ଗାଧୁଆଘରମାନଙ୍କରୁ ଅଯନାପାଣିର ଧାର ନଗି ଉଡ଼ ଯେପଟେ ଅଙ୍କାରୁଆ ହୋଇ ଫଳ ବଗିଗୃଟିଏ । ବରକୋଳି, ଅମୃତଭଣ୍ଡା, ପିଜୁଳି, ଗୋଲାପ, ଜାମୁ, କଦଳୀ, କଲମି ଆମ୍ବ—ସଂଖ୍ୟାରେ ଗୋଟିଏ ଯୋଡ଼ିଏ, କିନ୍ତୁ ଖୁବ୍ ହୃଷ୍ଟପୁଷ୍ଟ, ଏତେ ଗହଳ ହୋଇ ସୁଦ୍ଧା ଖୁବ୍ ଫଳେ । ଘରପାଖ ହେଲେ, ଆଗଦିନେ ଧାଡ଼ିହୋଇ ନଡ଼ିଆ ଗଛ ଗୁଡ଼ିଏ ପୁରୁଷେ ଦେଢ଼ପୁରୁଷ ଉଚ୍ଚରେ ଫଳନ୍ତି । ଗେଟମଗାଟମ ଦମ୍ଭିଲା ଗଛ. ବଡ଼ବଡ଼ ବାହୁଙ୍ଗା, ନଡ଼ିଆ ବାହୁଙ୍ଗା, ଖିଲଣ ତଳେ, ଆଣ୍ଠୁଏ ଉଚ୍ଚ ପିଣ୍ଡାକୁ ଚଢ଼ିଗଲେ, ସେ ଘରେ ପହଞ୍ଚିବାକୁ ହେବ । କୋଠା ନୁହେଁ, କଞ୍ଚା ଇଟାର ବି ନୁହେଁ, ମାଟିକାନ୍ଥ, ଟାଇଲ୍ ଘୁଡ, ଟାଇଲ ବି ଦିନେ ନାହିଁ, ଘୁଡଯାକ ବହଳ ହୋଇ ମାଳଫୁଲଟା ମାଡ଼ିଛି, ଫୁଲ ଦିନେ ଗୋଟାଯାଏଁ ଧଳା । 'ଲୋକଟାର ବୁଦ୍ଧି ଦେଖ ।' ଜଗୁଜେନା କହନ୍ତି—"ଛୁଆ ପିଲା ଯେମିତି ଘର କରୁଛି, ବଢ଼ଉଛି ଅରମା, ପୋଷୁଛି ସାପ, ପାଇବ ଯେ ଦିନେ ବୁଝିବ । ସେତେବେଳକୁ ବୋପାକୁ ମଉସା ଡାକିବ, କପାଳକୁ ଜାଗା ଖଣ୍ଡେ ଅଛି, ସେ କଅଣ ଏଇଥିପାଇଁ ? ଅନ୍ୟ ପ୍ରକାର ବ୍ୟବହାର ନାହିଁ ? କେତେ କହିଲି, ଏକାଜିଦି ।"

ଜଗୁଜେନା ଦିଉ ଡାକଥିଲେ—ତିନ ହଜାରକୁ କେହି ପଚ୍ଚରିଲେ ନାହିଁ, ନହେଲେ ଗୁଣକ ପାଞ୍ଚହଜାର କରି ନଉ; କେଡ଼େ ସୁନ୍ଦର ଆଉ କୋଉଠି ହେଲେ ଜାଗା ଦେଖି କୋଠାଘର ଖଣ୍ଡେ ତ କରିପାରନ୍ତା ।

ଆଉ ଜଗୁଜେନା ଆପଣା ଘରକୁ ଲଗାଇ ଯେଉଁଠି ତୋଳି ପାରନ୍ତେ ଆହୁରି କୋଠା । ଗୋଦାମ, କାରଖାନା, ହୋଟେଲ, ସିନେମା ଘର, ଯୋଜନା ବହୁତ ଥିଲା ।

ବେଳେବେଳେ ମନ ଅଜାଣତରେ ଝରକା ବାଟେ ଗୁହ୍ମଁ ଗୁହ୍ମଁ ଜଗୁକେନାଙ୍କ ଆଖି ସେ ବଗିଚ୍ଚ ଉପରେ ଭରିଦେଇ ଅଟକିଯାଏ; ସତେ ଯେମିତି ଗୃହାଣିଟା ଶୋଇପଡ଼େ ଆଉ ସ୍ୱପ୍ନଦେଖେ, ଆଖି ମେଲି ପଡ଼ିଥାଏ, ସମୟ ଓ ଚେତନା ସମ୍ପର୍କିତ ସେମିତି କ'ଣ ରୂପକୁ ଦେଖେ। ସେମିତି କ'ଣ ଭାବରେ ମକରନ୍ଦ, ଅଥଚ ଲାଗୁଥାଏ, ଅତି ଚହ୍ନା ହୋଇଥିଲା ପରି କେବେ। କେମିତି ଗୋଟିଏ କଳ୍ପନାରେ ଗଢ଼ା ହୋଇଥିବା ତପୋବନ, ପାଇବ କି ନାହିଁ ପାଇବ କି ନାହିଁ, ଏଭଳି ଉଦ୍‌ବେଗର ତାଉ ସେଠି କେବେ ଲାଗିନାହିଁ। ଗଲା କି ରହିଲା, ଗଲା କି ରହିଲା ଏ ମନସ୍ତାପର ଲଙ୍କାମରିଚ ଧୂଆଁ ସେଠି ପଶି ନାହିଁ, ସବୁ ବିଶୁଦ୍ଧ ସହଜ, ସୁନ୍ଦର, ସାତ୍ତ୍ୱିକ। ହେମ ଲାଗେ—ଧର ଏଠି ମିରିଗଟାଏ ବାହାରିବ, ଆଉ ତା' ବେକରେ ଗୁଡ଼େଇ ହୋଇଥିବ ମୋଟା ବୋଡ଼ା ସାପ, ତେବେ ତା'ର ଏତିକି ଖାଲି ଅର୍ଥ ଯେ ମିରିଗ ଆଉ ବୋଡ଼ା ଭାରି ବନ୍ଧୁ। ଜଗୁକେନାଙ୍କ ମୁଣ୍ଡଭିତରେ ସଲସଲ ଲାଗେ, ଆଖିରୁ ପାଣି ବୁହେ, ଗାଲ ଉପରେ ଥଣ୍ଡା ଥଣ୍ଡା ଲାଗିବା ମାତ୍ରେ ଗୃହାଣି ଚେଇଁଉଠେ। ସେତେବେଳେ ଲାଗେ, ଇସ୍! କି ଅରମା! ଲୁଚ୍ଛା ଅରମା! ଏ ଦେଶରେ କ'ଣ କେବେ ପ୍ରଗତି ହେବା ସମ୍ଭବ?

ପ୍ରଗତି ତା' ଗୁଆଁକୁ ତାଙ୍କ ପାଖକୁ ଆସେ। ଛୁ, ରେଡ଼ିଓ, ସମ୍ବାଦ, ଫୋନ, ଗହଳି ଲୋକ ଆତଯାତ, ନଜର ଓ ଅନ୍ୟମାନଙ୍କ ବ୍ୟସ୍ତତା ଓ ବେଗ ରୂପରେ। ଅନେକେ ଯେଉଁମାନେ ନାନା କ୍ଷମତାରେ ଅଛନ୍ତି—ଜାଣନ୍ତି ଯେ ତାଙ୍କ ସାହାଯ୍ୟ ନହେଲେ ସେମାନଙ୍କର ନଚଳେ। ସେ ଭାବନ୍ତି ସେ ନିଜେ ମନ୍ତ୍ରୀ ହେବାକୁ ଲୋଡ଼ା ନାହାନ୍ତି। ତେଣୁ ହୋଇନାହାନ୍ତି, କିବା ବଡ଼?

ତଥାପି ଆରପାଖେ ସେ ନିଷ୍ଫଳ। ଭାରତ ସମ୍ବିଧାନରେ ପରିବର୍ତ୍ତିତ ହେଲା ପରେ ଦେଖାଯିବ ସହରର ମଝିରେ ଛକ ଉପରେ ଫାଙ୍କା ଜାଗା ଯଦି ପେଟ୍ରୋଲ୍ ଦୋକାନ କରିବାକୁ ଦିଆଯାଇ ପାରିଲା ଏଠି ଗୋଟାଏ ପାଠାଗାର କରିବାପାଇଁ ଜାଗାଟା ଦିଆଯାଇ ପାରିବ ନାହିଁ?

ସେ ପାଖେ ଯେଉଁ ମଣିଷଟି ରହେ, ସେ ଏ ପାଖର ମଝିଚ୍ଛା କୁତୂହଳୀ ନୁହେଁ । ସକାଳୁ ଧଡ଼ା ଆସେଡ଼ଲ ଯାଇସେଲ ସୋଷାର ମୁଣି ଓହ୍ଲେଲଇ ବାହାରପେଣ୍ଟ, ବଜାର କର ଫେରେ । ପୁଣି ଥରେ ବାହାର ପଡ଼େ, ଯାଡ଼େ ନଅଟାରେ । ଫେରୁ ଫେରୁ ପାଞ୍ଚ । ଦୋଟି ପିଲ ଇସ୍କୁଲ୍କୁ ଯାଆନ୍ତି ଆସନ୍ତି । ଧଡ଼ା ପଡ଼ିଥାଏ, ବାଟମୁହଁରେ ଗହଳ ନାହିଁ । ସକାଳେ ଉପରଓଳ, ମା' ବାପ, ପିଲାଏ ପରିବାରଟିଯାକ ବଗିଚ୍ଚ ଭିତରେ କାମ କରନ୍ତି । ସଡ଼କରୁ ଦିଶେନାହିଁ, କାନେଲେଲ କଥାବାର୍ତ୍ତା ଶୁଣିଲ୍ ପରି ଲଗେ । ଯେଉଁମାନେ ଗୁରୁକୁଳ କାର୍ଯ୍ୟାଳୟରେ କାମ କରନ୍ତି, ସେମାନେ ଚିହ୍ନିଛନ୍ତି ତାଙ୍କ ଅଧକ୍ଷ ବୈଷ୍ଣବ ଚରଣ ଆଚାର୍ଯ୍ୟଙ୍କୁ । ଖୋଜିଗଲେ ବଖରାଟି ଦେଖାଇ ଦେବେ ।

ଫୁଙ୍ଗା ନୋଲ୍ ମଦାନରେ କୁଡ଼ ହୋଇଥିବା ଟିଣଗଦା, ଭଙ୍ଗା କାଠ ଛାବଲ ଓ କାଠକନେଷ ଗଦା ଘଥରମୂଡ଼ ଟପି ବାମ ନଥିବା ଗାଡ଼ ଗାଡ଼ ଟାଙ୍ଗି ଉପରେ ଧାଡ଼ଡ଼ଏ ଟିଣଗୁନ ଥାଇ ଘର, କାନ୍ଥରେ ବରଣ୍ଡାଧାରରେ ଚିହ୍ନ, ସବୁ ବଖରାରେ ଠେମ୍ବାଂଠେଂସି କାରୁକାର୍ଯ୍ୟମୟ ମୂର୍ତ୍ତି, ନାନାରୂପ ଜାଠର, ମାଟିର, ପଥରର ପ୍ରକାର ପ୍ରକାର ଛବ, ନାନା କାରୁକାର୍ଯ୍ୟ କରିଥିବା ଗ୍ରନ୍ଥମାନେ, ଗୁ ରୁମାନେ ଆଉ ଠାଏ ଟେବୁଲ୍ ଉପରେ କେଉଁ ଚନ ଆଙ୍କିଥିବା ଅବସ୍ଥାରେ ଝୁଙ୍କି ପଡ଼ ଖେଣ୍ଡ ଚୌକିରେ ବୈଷ୍ଣବଚରଣ ଆଚାର୍ଯ୍ୟ, ଖଦ୍ଦେ ଖଡ଼ଲୁଗା ଖେଣ୍ଡ ପାଉଁଶିଆ ଖଦଡ଼ ପଞ୍ଜାବି, ଡେଙ୍ଗା ଦେହ, କାନ୍ଧହାଡ଼ ଓ ଲମ୍ବା ବାହାଯୋଡ଼ିକର ହାଡ଼ ଟାଣୁଆ ଓ ଉପର ଜଣାପଡ଼େ, ଲମ୍ବା ବେକ, ତା' ଉପରେ ଗୋଟିଏ ହାଡ଼ୁଆ ଲମ୍ବାଳିଆ ମୁହଁ କଳା ମିର୍ ମିର୍, ମୁଣ୍ଡଯାକ ବୋଝେ କଳାକଳା ବାଳ କୁଣ୍ଡା ହୋଇ ନଥିବ ଅଡ଼ାଉଳିଆ ନୁହଁ ।

ସେ ମୁହଁର ବର୍ଣ୍ଣନାରେ କିଛି ହଠାତ୍ ବାରିହୁଏ ନାହିଁ । ଖାଲି ଦମ୍ଭ ଦିଶେ । ମେଞ୍ଚାଏ ଉଚ୍ଚନାକ, ଫରଚ୍ଚ ଠିଆକପାଳ, ମୋଟାଳିଆ ଓଠରେ ଟିକଏ ବାଙ୍କ, କଟାହେବା ବେଳ ଅନ୍ତତଃ ଦି'ମାସ ଗଡ଼ିଯାଇଛି, ଏଭଳି ଯେଉଁ ବାଳଗୁଡ଼ିକ ଲମ୍ବ ରହିଛି, ମୁହଁ ଘେରକରେ ତା' ବନ୍ଧନୀ । ସବୁ ଏକାଠି ହେଲେ କେମିତି ଗୋଟାଏ ନାଟକୀୟ ଅବସ୍ଥା ହୁଏ ।

କିନ୍ତୁ ଡମା ଡମା ଲମ୍ବାଳିଆ ଆଖିଯୋଡ଼ିକୁ ଅନାଇଁଲେ ଯେ ଧାରଣା ଓଲଟି ପଡ଼େ । ବୟସ ଶୃଙ୍ଖଳା ପରେ, କିନ୍ତୁ ଏ ଯେପରିକି ଗେଲ୍ହାରେ ବଢ଼ିଥିବା ଗୋଟିଏ ସ୍କୁଲପିଲାର ଆଖି, ତା'ର ଯେ ଗାଳି ଖାଇଛି, ଆଉ ଭାବୁଛି ଗାଳିମିଳିଲା, ବିନା ଦୋଷରେ । ଆଉ ଟିକିକୁ ସେ ହସିଦେବ । ହସରେ କୌତୁକ ଓ ଉତ୍ସାହ । ଯେମିତି ପିଲାଟି ଦେଖି ପକାଇଲା ବଲ୍ ତା' ଆଡ଼କୁ ଆସୁଛି । ଆଉ ପାଏ କିଏ ? ସେମିତି ଅନ୍ୟସବୁ ନିବସ୍ଥା ଗୃହାଣି । ହସ ଉପରୁ ପାନ ଯେ ଖୋଲି ଧରିବ, ନିଜେ ଖଣ୍ଡେ ନେଇ ନେଇ ହାଉଁ ଭିତରକୁ ଗୁଡ଼ିଦେବ ଆଜ୍ଞା କରି ପୁଳିଏ ଗୁଣ୍ଡି, ସମ୍ଭାବିତ ପରିମାଣର ଦୁଇଗୁଣ । ତା'ପରେ ହୁଏତ ଅକାରଣରେ ହି-ହି-ହି ହସ । ଆଉ ତା'ପରେ କମିଆଁ କାଲିଟରେ କେତୋଟି ବସ୍ତୁ ଉପରୁ କନାଘୋଡ଼ାଣି ଟେକି ନେଇ ସେ ଦେଖାଇବ ।

"ଏଇଟି ଗୋପବନ୍ଧୁ ଚୌଧୁରୀଙ୍କ ମୁଣ୍ଡ ଆଉ ଏ ମୁଣ୍ଡ ଆଚାର୍ଯ୍ୟ ହରିହରଙ୍କର ।"

ଦେଖାଇବ ଆଉ ଏ ପଞ୍ଚଛବି ଆଙ୍କିତ ବୋଲି ଏ ଯେଉଁ ଚିତ୍ର କରିଛି ନାଁ, ଏ ରାବଣ ସୀତାଙ୍କୁ ଚୋରାଇ ନେଲା ବେଳର ଛବି । ଦଶମୁଣ୍ଡିଆ ଅସୁର ରାବଣଟାଏ ଆଜିକାଲି ଲୋକଙ୍କୁ ଲାଗିବ ଅସମ୍ଭବ ପାଗଳାମି ବୋଲି । ଏଗୁଡ଼ାକ ପୁରୁଣାକାଳିଆ କଥା ନୁହେଁ ? କିନ୍ତୁ ଆଜିକାଲି ଜୀବନରେ ଯେତେ ହିଂସ୍ରକ କୁହ୍ଲିତତା । ପରିସ୍ଥିତିରେ ଯେଉଁ ନୃଶଂସ ଯାଇଛତା ତା' ସୃଷ୍ଟି ପାଇଁ ଲାଗୁଛି ଯେତେ ଜଟିଳ କୌଶଳ, ସୂକ୍ଷ୍ମ ବୁଦ୍ଧି, ବୈଜ୍ଞାନିକ ବିକାଶ, ରାବଣଟା ତା' ଆଗରେ କି କଥା, ଅସଲ ପଟାଳିଆ ବାଘ ଆଗରେ କାଗଜର ବାଘ ଛବିଟାଏ, ଆଉ କେତେ ?

ଦେଶରେ ଦଳେ ଚିତ୍ରଶିଳ୍ପୀ ତାକୁ ଘୋର ପ୍ରତିଭାବନ୍ତ ବୋଲି ଭାବନ୍ତି, ଆଉ ଦଳେ ମୁହଁ ମୋଡ଼ନ୍ତି । ଉଭୟଙ୍କ ଭୁଣ୍ଡରେ ସେ "ବହ୍ୟାଚାର୍ଯ୍ୟ ।"

କିନ୍ତୁ ସେହିଁ କଳାହିଁ ସତେକି ତା'ର ନିଶା । ଅନୁଷ୍ଠାନରେ ତା' ବୃତ୍ତି ମାସିକ ସାଢ଼େ ତିନିଶହ ଟଙ୍କାରେ ଗୃହକର କିନ୍ତୁ ଅନୁଷ୍ଠାନଟି ତା'ର ଅତିପ୍ରିୟ, ସତେକି ମା' ଓ ବୁଆଙ୍କ ସମ୍ପନ୍ନ ।

ଆଉ କୁଆଡ଼ି ତା' ବଗିଚ୍ଚ । ଘରକୁ ଫେରୁ ଫେରୁ ସେ ଆଗ ବଗିଚ୍ଚ ଭିତରକୁ ଧାଇଁଯାଏ । ଏଠି ସେଠି ଗୋଟି ଗୋଟି ଗଛ ଦେହ ଦରଣ୍ଡି ଆଉଁସି ପକାଏ । ଖୋଳାଖୋଳି କେଞ୍ଚାକେଞ୍ଚ, ଖତସାର ଦିଆ, ପାଣି ମଡ଼ା, କେତେ କାମ, ନାନା ଜଞ୍ଜାଳ । ଫୁଲ ସେ ଛିଣ୍ଡାଏ ନାହିଁ । ସେଥିପାଇଁ ସାହିରେ ମନାନ୍ତର । ହେଇ, ସେଦିନର କଥା, ସକାଳୁ ଜଣେ ବୁଢ଼ା ତରାଟଗଛର ଡାଳ ଓଟାରି ନେଇ ଫୁଲ ତୋଳୁଥାନ୍ତି । ବଡ଼ କର୍ମଶ୍ରଦ୍ଧା ଥିଲେ, ବହୁବର୍ଷ ହେଲା ଅବସର ନେଲେଣି, ଖୁବ୍ ପୂଜା କରୁଥିବେ । ଫୁଲ ଦରକାର ।

"ତରର ଦ୍ରବ୍ୟ ଲୁଟିଲାବେଳେ ବୁଢ଼ା ଦେହ ବ କେମିତି ପିଲା ଦେହ ପରି ଚଞ୍ଚଳ ହୋଇପଡ଼େ । ବସୁନ୍ଧରା ଗୁହାଁ ଗୁହାଁ ଭାବୁଥାଏ ଏ କଅଣ ଚୋର ନୁହେଁ । ଧର୍ମ ନାଁରେ ହେଉ ପଛେ, କେତେ ପାପ ।"

ହଠାତ୍ ବସୁନ୍ଧରା ଗର୍ଜନ ଛାଡ଼ିଲା, "ହୁଃ ।" ଚମକି ପଡ଼ି କଣ୍ଟା ନ ଭାବି ପାଳ ଧରାଇ ପରି ବୁଢ଼ା ପାଟି କଲେ, "ହୁଃ ।" ଗଛ ଡାଳ ପୁଣି ଉପରକୁ ଗଲାଗଲା । ବୁଢ଼ା ଆବାକାବା ହୋଇ ଗଛଆଡ଼କୁ ଅନାଇଲେ ।

ବସୁନ୍ଧରା ବଡ଼ ପାଟିରେ ହସିଲା, ହସି ହସି ଫାଟିପଡ଼ିଲା । ସେହି ହସର ପାହାଡ଼ ଖାଇ ସତେ ଅବା ବୁଢ଼ାଙ୍କର ମୁହଁ ଶୁଖି ଲେଉଟି ଆସିଲା, ସେ ଚାଲିଗଲେ ।

ଲୋକେ ଠାକୁରପୂଜା କରିବେ ବୋଲି ଫୁଲ ତୋଳି ଆସନ୍ତି, ସେ ଘଉଡ଼େ । ସେମାନେ ଅନ୍ଧାରୁ ଅନ୍ଧାରୁ ଆସନ୍ତି । ତା' ଆଗରୁ ବିଛଣାରୁ ଉଠିପଡ଼େ ସେ ଜଗିଥାଏ । କୁକୁରଗୁଡ଼ିକ ସାହାଯ୍ୟ କରନ୍ତି । ଲୋକେ ଅନୁରୋଧ କରନ୍ତି । ଫୁଲ ତ ଠାକୁରଙ୍କ ପାଇଁ । ତା'ଠୁ ଆଉ ଭଲ ବ୍ୟବହାର ଅଛି ?

"ଠିକ୍ କଥା । ସେଇଥିପାଇଁ ମୁଁ ଫୁଲ ଛିଣ୍ଡାଇ ଦିଏ ନାହିଁ । ଫୁଲ ଥିଲେ ଠାକୁର ନିଜେ ତାକୁ ଦେଖୁଥିବେ । ଶୁଙ୍ଘୁଥିବେ । ସେ ତ ସବୁଠି ଅଛନ୍ତି ।"

ଶୀତଦିନ । ଫୁଟିଥାଏ ନାନା ଜାତି ଗୋଲାପ ଓ ମନ୍ଦାର ବାଡ଼ପାଖ କନ୍ଧ କନ୍ଧ କ୍ରିସେନ୍ଥିମମ୍ ଉଲ୍ । ନାଲି, ଟାଣ, ଧଳା, ହଳଦିଆ । ମନ୍ଦାରଗୁଡ଼ିକ ଏକପରସ୍ତିଆ, ଦୁଇପରସ୍ତିଆ । ଗୋଟାଏ ଗୋଟାଏ ଦେଢ଼ ଦେଢ଼ ଗୃହଖଣ୍ଡ ଓସାର । ନାନା ବର୍ଣ୍ଣ—ଧଳା, ସୁନେଲି, ନାଲି, ନାନା ଶବଳଶନ । ଗୋଲାପ ଗଛରେ ବି ନାନାବର୍ଣ୍ଣର ଫୁଲ । ଗୋଟିଏ ଗୋଟିଏ ଗଛରେ ଗଣି ବସିଲେ କୋଡ଼ିଏଟି ପଚିଶଟି କରି ଫୁଲ । ଶାଗୁଆ ଛନଛନିଆ ଅଳ୍ପ ଅଳ୍ପ ପତ୍ର । ଯେପରିକି ଫୁଲଗୁଡ଼ିକର ଶୋଭା ବଢ଼ାଇବାକୁ ଖଞ୍ଜା ହୋଇଛି । ଅଳ୍ପ ଅଳ୍ପ ଛଡ଼ାରେ କୋଡ଼ିଏଟି ବୁଦା । ଘର ଆଗରେ ବଗିଚାର ଠିକ୍ ମଝିରେ । କରେ କରେ ବସି ଦେଖିବାକୁ ଅଳ୍ପ ଅଳ୍ପ ଘାସ । ବାଙ୍ଗାଲୋରର କସ୍ତୁରୀ ରଙ୍ଗିଲ୍ । ଦିଲ୍ଲୀର ଉଦ୍ୟାନପାଳ । ଦେଓଗଡ଼ର ସରକାର, ନାନା ସ୍ଥାନର ବିଚକ୍ଷଣ ଗୋଲାପ-କୃଷୀଙ୍କଠୁଁ ବୃନ୍ତ ମଗାଇ ବୁଦ୍ଧି ଆଣି ବସ୍ତ୍ରାଗୃହଁଂ ଗଢ଼ିଛନ୍ତି ତା' ଗୋଲାପ ବଗିଚାଟି । ସେଥିପାଇଁ ମୂଲ୍ୟ ଦେଇଛି କେତେ ଶ୍ରମ, କେତେ ଅନଟନ, କେତେ ଚିନ୍ତା, କେତେ କଷ୍ଟ । ତା' ଆଗରେ ଏ କଅଣ ଖାଲି ଫୁଲଗୁଡ଼ିଏ ? ଗୃହିଁ ବସିଥିଲେ ଲାଗେ ଜୀବନର ଏ ଗୋଟିଏ ନୂଆ ରୂପ, ନୂଆ ଅର୍ଥ, ସ୍ନେହ, ସୌନ୍ଦର୍ଯ୍ୟ, ଆନନ୍ଦ, ବିଶ୍ୱାସମୟ ଶାନ୍ତ ନିର୍ଭରତା ଯେମିତି ଏ ଜୀବନ ଭିତରେ ଯେଉଁ ଅପରାଜେୟ ସର୍ଜନାଶକ୍ତି ସବୁଦିନେ ରହିଛି ସେ ତାହାର ପ୍ରକାଶର ସ୍ଫୁରଣ । ଅକାମୀ, ଘଷରା, ଭୂଆଁବୁଲା ମାପ ଓଜନ ମୂଲ ତଉଲର ଚଳନ୍ତି ବାଗ ଉହାଡ଼ରେ ଜୀବନର କିଛି ନୂଆ ତାତ୍ପର୍ଯ୍ୟ ଅଛି । ଏ ତା' ସମର୍ଥନ, ପୁଣି ତା' ନିଜପ୍ରତି ।

କିନ୍ତୁ ସେଦିନ ସକାଳେ ବସ୍ତ୍ରାଗୃହଁଂ ଘର ଆଗରେ ବହୁତ ଗାଡ଼ି ମଟର ସାଇକେଲ । ଫାଟକର ଧଡ଼ା ଖୋଲାଥାଏ । ତା' ସ୍ତ୍ରୀ ଗୃ' ଦୋକାନରେ ପାନ ଭାଙ୍ଗିବାରେ ବ୍ୟସ୍ତ ଥା'ନ୍ତି । ଗୃ' ପୁଡ଼ିଆ ସରିଗଲାଣି । ଗୋଟିଏ ପୁଅ ସାଇକେଲ ଚଢ଼ି ପୁଣି କିଣି ଆଣିବାକୁ ଗଲାଣି । ଆସିଥିବା ଲୋକ ବଗିଚାପାଖ ଖେଳେଇ ହୋଇ ଚଢ଼ଥା'ନ୍ତି । କିଏ ପିଜୁଳି ଛିଣ୍ଡେଇ ଖାଉଥା'ନ୍ତି । "ବାଃ, ଭାରି ଭଲ ପିଜୁଳି, ଖୁବ୍ ମିଠା । କିଏ କେଉଁ ଗଛରୁ ଫୁଲ କି କଢ଼ ଛିଣ୍ଡାଉଥାନ୍ତି । କୋଟ୍‌ରେ, କମିଜରେ ମାରିବେ

ଚେଷ୍ଟା କରି ବାନ୍ଧିବେ ବସ୍ତ୍ରାଗ୍ନ୍ୟର୍ଯ୍ୟଙ୍କୁ ଭେଟି ଦେବାପାଇଁ । ସେମାନେ ବଡ଼ପାଟିରେ ତା' ପ୍ରଶଂସା ଗାଉଥାନ୍ତି ।

ସେମାନେ ଆସିଥିଲେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବାକୁ । କାରଣ; କାଲି ରାତିରେ ଥରେ ଓ ପୁଣି ସକାଳୁ ଆଉ ଥରେ ରେଡ଼ିଓ ସମ୍ବାଦ କହି-ସାରିଛି । ଶ୍ରୀ ବୈଷ୍ଣବଚରଣ ଆଗ୍ନ୍ୟର୍ଯ୍ୟଙ୍କ ହାତ ତିଆରି ଓଡ଼ିଶୀ ପଟ୍ଟଚିତ୍ର 'ସୀତାରେଖର' ଆମେରିକାରେ ଶ୍ରେଷ୍ଠତମ ବିବେଚିତ ହୋଇ ଲକ୍ଷେ ଡଲାର ପୁରସ୍କାର ପାଇବ ବୋଲି ବିଜ୍ଞ ହୋଇଛି । ଛବିଟି କିଣିବାକୁ ଆହୁରି ଲକ୍ଷେ ଡଲାର ଯଚ୍ଚ ହେଉଛି । ମନ ହେଲେ ସେ ବିକିପାରିବେ । ଯା'ପରେ ଆମେରିକା ଭ୍ରମଣ ଓ ଆମେରିକାରେ ସମ୍ବର୍ଦ୍ଧନା ଲାଗି ତାଙ୍କୁ ଆମନ୍ତ୍ରଣ ଆସୁଛି ।

ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ ! ଅଦ୍ଭୁତ ପ୍ରତିଭା । ଧନ୍ୟ କଳିଙ୍ଗର ଶିଳ୍ପୀ । ଉଜ୍ଜ୍ୱଳ, ଉତ୍କୃଷ୍ଟ ଯାହାର କଳା ! ଧନ୍ୟ ବସ୍ତ୍ରାଗ୍ନ୍ୟର୍ଯ୍ୟ !

ଆମେରିକା ମୂଲ୍ୟ ନିରୂପଣ କରିଛି । ତେଣୁ ବସ୍ତ୍ରାଗ୍ନ୍ୟର୍ଯ୍ୟ ନିଶ୍ଚୟ ଅଦ୍ଭୁତ ପ୍ରତିଭାଶାଳୀ । ଆମେରିକା ଭିଏତ୍‌ନାମ୍‌ରେ ପୁଣି ବୋମାମାଡ଼ ଚଳାଇଲାଣି, ଆମେରିକା ଭାରତ ବିରୁଦ୍ଧରେ ସପ୍ତମ ନୌବାହିନୀ ପଠାଇଥିଲା, ଆମେରିକା ଭାରତକୁ ବହୁତ ଟଙ୍କା ଋଣ ଦେଇଥିଲା, ବହୁତ ସାହାଯ୍ୟ ଦେଇଥିଲା, ବହୁତ ଭାରତୀୟଙ୍କୁ ସେଠି ନିଯୁକ୍ତି ଦେଇଛି ।

କିନ୍ତୁ ସେ ସବୁ ତ ଭିନେ କଥା, ରାଜନୀତିକ କଥା ।

ଆମେରିକା ଓଡ଼ିଶାର କଳାକାର ଜଣକୁ ସମ୍ମାନ ଦେଇଛି । ତେଣୁ ତାଙ୍କ କଳା ନିଶ୍ଚୟ ଉତ୍କୃଷ୍ଟ । ସେ ନିଶ୍ଚୟ ଭାରି ଜଣେ ଲୋକ । ସେମାନେ ବି ତାଙ୍କୁ ତେଣୁ ଆବିଷ୍କାର କରିଛନ୍ତି ଓ ଖୁସିହୋଇ ବାହ୍‌ବାହା କରିବାକୁ ଆସିଛନ୍ତି ।

ବସ୍ତ୍ରାଗ୍ନ୍ୟର୍ଯ୍ୟ ବିବ୍ରତ ହୋଇ ସେମାନଙ୍କ ମୁହଁକୁ ଅନାଇଥାନ୍ତି, ମାମୁଲି କଥାରେ କୃତଜ୍ଞତା ଜଣାଉଥାନ୍ତି, ବିନୀତ ହୋଇ କଥା କହୁଥାନ୍ତି । ଆଗଠୁ ଅଧିକ ନମ୍ର ଆଉ ଉଦାସୀନ ।

"ଆପଣଙ୍କୁ ବୋଧେ ଏକଦମ୍ ରଖିନେବାକୁ ଗୃହିଁବେ ସେଠି ସେମାନେ । ଆପଣ କଅଣ ସେଠି ରହିବେ ?"

"ସେଠି ବୋଧହୁଏ ଓଡ଼ିଶୀ ଶବ ଶିଖାଇବାକୁ ଇସ୍କୁଲ ଖୋଲିବେ । ଆଉ ବ କାହାକୁ କାହାକୁ ନେବେ ।"

ତା' ଉତ୍ତର ଗୋଟାଏ ନିର୍ବାହ ହସ । ଆହୁରି ପ୍ରଶ୍ନ । ଉତ୍ତରରେ ଆହୁରି ହସ । ଜଣକର ହସ ଆଉ ଜଣକର ପ୍ରଶ୍ନ ପାଇଁ ଆଗରେ ଗୋଟାଏ କଳାପର୍ଦ୍ଦା । ଅଥବା ପ୍ରଶ୍ନ ଆଗରେ ଖୋଲା ଆକାଶ, ଅନ୍ଧାର, ତାରାଫୁଟା । ଉତ୍ତର ହଁ ବା ନାହିଁ ଯେ ଯେପରି ଭାବିବ ।

ଆଃ, କି ବଢ଼ିଆ ଗୋଲାପଫୁଲ ଫୁଟିଛି । ନହେଲେ କଅଣ ମାହାଳିଆ ଏତେବଡ଼ ଶିଳ୍ପୀ, ଯାହାକୁ ଆମେରିକା ମୁଣ୍ଡରେ ମୁଣ୍ଡେଇଛି । ସେମାନେ ପଶିଗଲେଣି ଗୋଲାପ ଅଗିଚ ଭିତରକୁ । ଗଛ ମୂଳଆଡ଼େ ନରମ ମାଟିରେ ଜୋତାଖିଆ ପଡ଼ ଗାଡ଼ ଗାଡ଼ ହୋଇଛି, ସହରର ବିଶିଷ୍ଟ ଲୋକେ, ପ୍ରତାପୀ ଲୋକେ, ବସ୍ତ୍ରାଗୃର୍ଯ୍ୟ ଘାସଧାଡ଼ରେ ଠିଆହୋଇ ଖାଲି ଅନାଉଛି । ଏ ଫୁଲଗୁଡ଼ାକ କ'ଣ କରୁଛନ୍ତି ? ଜାଣନ୍ତି ତ ସ୍ତ୍ରୀ ବ୍ୟବହାର ? ପାଖୁଡ଼ାଟିଏ ଖେଇବାନ୍ତୁ, ଦେଖିବେ କେତେ ସୁଆଦ ଓ ମିଠା ଲାଗିବ । ଭୋକ ବଢ଼ାଏ, ବଳ ଦିଏ, ପେଟ ସଫାକରେ, ୟୁନାନି ଔଷଧ ତାଲିକାରେ ଗୁଲ୍-କନ୍ଦର ଖରି ନାଁ, ପୁଷ୍ଟିକାରକ ଔଷଧ । ଗୋଲାପ ପାଖୁଡ଼ାକୁ ମିଶ୍ରି ଶିରାରେ ପକାଇ ଚୂଲିରେ ବସାଇ ଫୁଟାଇବାକୁ ହୁଏ । ହେଇ ଦେଖନ୍ତୁ ଗୋଲାପର ସୁସ୍ୱାଦ ।

ଜଣେ ଛିଣ୍ଡାଇ ପାଟିରେ ପକାଇଲା ପରେ ଅନ୍ୟମାନେ ଗୋଟିଏ ଗୋଟିଏ କରି ଗୋଲାପ ଫୁଲଗୁଡକର ପାଖୁଡ଼ାତକ ଛିଣ୍ଡେଇ ଖାଇବାକୁ ଲାଗିଲେ ।

ଆରେ ବାଃ, ସତେ ତ, କି ସୁଆଦ ଆଉ ବାସ୍ନା, ଅଳ୍ପ ଟିକିଏ କଷା ଲାଗୁଛି । ସେ କିଛି ନୁହେଁ ।

"ହଁ, ଦେହକୁ ଭଲ ହେବ, ପେଟର ସବୁ ରୋଗମାନ ଭଲ କରିବ, ରକ୍ତ ବଢ଼େଇବ ।"

"ଭଲ ଗେଣ୍ଡୁ ଫୁଲ ଫୁଟିଛି, ନେଇ ଯାଉଛି କଣ୍ଟୁ ଠାକୁରପୂଜାରେ ଲାଗିବ । ଯା'ହେଉ ଠାକୁରେ ଆପଣଙ୍କର ଖୁବ୍ ବଡ଼ତ୍ତ କଲେ, ଜଗୁଜେନା କହିଲେ, ସମ୍ବର୍ଦ୍ଧନା ଜଣାଇବାକୁ ସେ ବି ଆସିଥିଲେ ।

"ହଁ, ମୁଁ ବି—"

ଉତ୍ତରକୁ ଅପେକ୍ଷା ନରଖି ମହ୍ମାହ୍ ରହ୍ବହ୍ କାମ ଆରମ୍ଭ ହୋଇଗଲା ।

କଦାଚିତ୍ ବସ୍ତ୍ରାଚ୍ଛର୍ଯ୍ୟଙ୍କୁ ସମ୍ବର୍ଦ୍ଧନା ଓ ଶୁଭେଚ୍ଛା ଜଣାଇବା ଲୋକେ ଚାଲିଗଲେଣି, ଗୋଲାପଗଛ, ଗେଣ୍ଡୁଗଛ, ଥୁଣ୍ଟାହୋଇ ଠିଆ-ହୋଇ ରହିଛି, ଏଠିସେଠି ଭଙ୍ଗାଡାଳ ଛିଣ୍ଡାପତ୍ର, ଛିଣ୍ଡାପାଖୁଡ଼ା, ବସ୍ତ୍ରାଚ୍ଛର୍ଯ୍ୟ ଠିଆହୋଇ ରହିଛି କଳା ହୋଇ, ସ୍ୱପ୍ନ ପରି ଦେଖୁଛି କଅଁଳ ସୁନ୍ଦର ନରମ, ଜୀବନ ଛଳଛଳ ଗୋଲାପପାଖୁଡ଼ାଗୁଡ଼ିକୁ ମଣିଷ ନଖରେ ଛିଣ୍ଡେଇ ଦାନ୍ତରେ ଚୋବେଇ ଚୋବେଇ ଖାଉଛନ୍ତି, ପରମ ତୃପ୍ତି ଓ ଆବେଗରେ ।

'ଚୁମ୍ବକ' ଫେବୃଆରି-ମାର୍ଚ୍ଚ-ଅପ୍ରେଲ ୧୯୭୩



# ଲାଇସନ

ଆଗରେ ଓସାର ନଈଟାର ହାଉଁ ମେଲା ହୋଇଛି । ଶୂନ୍ୟ ଶୂନ୍ୟ ଫିତା ପକାଇଲେ ହୁଅନ୍ତା ଦୁଇମାଇଲ୍ । ଖରାରେ ଦିଶୁଛି ସେପାଖେ ପୁରୁପୁରୁ ହୋଇ କହରା କହରା ଧାଡ଼ିଏ କ'ଣ, ତା ସେପାଖେ ବାଲୁକା ଗୁଡ଼ିଏ ଉଷୁ ଉଷୁ ଢେଉ, କେମିତି ମିଞ୍ଜିମିଞ୍ଜି ହେଉଛି, କେତେବେଳେ ପାତଳ ରଣଭୁଦ୍ଧୁ ଘୋଡ଼ହୋଇ ସେ ଆକାଶ ସହିତ ଏକ ହୋଇ ମିଶିଯାଉଛି, ଉଡ଼ାଜାହାଜ ଗୁଡ଼ଦେଇ ଯାଇଥିବା ଧୂଆଁ ପରି, କେତେବେଳେ ସେ ଆକାଶରେ ଚାଟିକବାଟର ଆଗକୁ ଟୋପେଇ ହୋଇ ଉଠୁଛି ଆଉ ବାରିହେଉଛି ପାହାଡ ବୋଲି, ପୁଣି ଆଉଜପଡ଼ି ଆକାଶରେ ଛପିଯାଉଛି ।

ଆହକଦ ଆଖିମେଲ୍‌କରି ରଖିଲା ନଈର ହାଉଁମୁହଁ ଆଡ଼କୁ । ସେ ପଥର-ବନ୍ଧର ଦାଡ଼ ଉପରେ ଠିଆ ହୋଇଥାଏ । ମୁହଁରେ ନଈକୂଳିଆ ପବନ । ବାଲୁକା ହୋଇ ଉତ୍ତରର ହଲପା ପିଟିଯାଉଛି । ଏ ଖାଲି ନମୁନା, ମଗୁଶିର ସରୁଛି, ତା'ପରେ ପୁଷ, ମାଘ ।

ଶୁଖିଲା ବାଲି ଠାଉ ଠାଉ ନଈରେ ଯଦ ପାଣି ଭର୍ତ୍ତି ହୋଇଥାନ୍ତା, ଯେମିତି ହୁଏ ବର୍ଷାଦିନେ ସତେ ଯେମିତି ସମୁଦ୍ର, ଆଉ ସେଥିରେ ଡଙ୍ଗା ଚାଲୁଥାନ୍ତା, ନଈବନ୍ଧର ତାଳୁଆ ଗଛକଖେ, ତା'ହେଲେ ସେ ଡଙ୍ଗାରୁ ଚାହିଁଲେ ଦିଶନ୍ତା—ପଥର-ବନ୍ଧ ଉପରେ ଗୋଟିକିଆ ମଣିଷଟିଏ, କଳା ମିଶ୍‌ମିଶ୍ ଓସାର କପାଳ ଉପରେ କୁଞ୍ଚୁକୁଞ୍ଚୁ ଚମ ଭନସିଅର ହୋଇ ଆବୁ ଆବୁ ହୋଇ ରହିଛି । ମୁଣ୍ଡବାଳ ଯେମିତି ପୋଡ଼ା ବେଣାବୁଦା, କହରା ପାଉଁଶିଆ ଅୁଣ୍ଡାଳିଆ । ଉଞ୍ଚନାକ, ନାକଦଣ୍ଡା ବାଁଆଡ଼କୁ ଟିକିଏ ବଙ୍କା, ଓସାର ଓ ଉଚ

ଗାଲହାଡ଼ ଓ ଡମା ଭ୍ରୂଲତା ହାଡ଼ ମଝିରେ ଆଖି କେତେ ଖାଲରେ ତାଙ୍କି ହୋଇଛି । କୋଡ଼ପର ଥୋଡ଼ ହାଡ଼, କିନ୍ତୁ ଟାକୁଆ ଗାଲ ତାହାଙ୍କୁ ବାଁଆଡ଼କୁ ଢଳିଛି କାରଣ ବାଁ'ପଟ ପାକୁଆ । ମୁହଁର ଆଡ଼ା ସାଧାରଣ ମୁହଁଠୁଁ ବହୁତ ବଡ଼, କିନ୍ତୁ ଆଡ଼ାଟା ହିଁ ଅଛି, ଆଉ ସବୁ ଚେପା ଖାଲ ଖାଲ ।

ସେ ଯେମିତି ଗୋଟାଏ ବେମରାମତ ପୁରୁଣା ଖପର୍ଲି ଘର, ଦବିଛି, କୁଜା ହୋଇଛି, କାନ୍ଥରୁ ମାଟି ବୋହିଯାଇଛି ସିଅର ସିଅର ହୋଇ, ଭାଙ୍ଗି ପଡ଼ିନାହିଁ ।

ଡାକ ନାହିଁ ପଡ଼ୁଛି । କେବେ ହନେ ଓସ୍ତାର ଥିଲା । ସେହି ଡାକ କାରେ କାରେ ସେ ବୁଲାଇ ପାରୁଥିବେ ଗୋଟାକ ମହଜଣେ ଓଜନର ଯୋଡ଼ାଏ ଶିଶୁକାଠର ମୁଦ୍‌ଗର । ସେ ପୁରୁଣା କଥା । ଡେଙ୍ଗା, ବଳିଷ୍ଠବପୁ ଗର୍ଜଭି ହାବିଲ୍‌ଦାର ଆଦ୍‌କାଦ ବଣ୍ଟ୍ୱାଳର ବଳ ଓ ସାହସର ପରଖ ଦେବା ବିଷୟରେ ବହୁତ କାହାଣୀ ସେତେବେଳେ ଶୁଣାଯାଉଥିଲା । ଦେଖାଇ ଦେଖାଇ ରଖିଥିଲା ସେ ମୋଟା ମୋଟା ମୁଛ ହଳେ, ସାଥୀମାନେ ତାକୁ କହୁଥିଲେ ବଣାଳପଡ଼ାର ବାଘ, ଆଉ ତା ହଣ ଯୋଡ଼ାକର ନାଁ ରଖାହୋଇଥିଲା ବଣାଳପଡ଼ାର ନଣ । ଅନେକ ଅନୁକରଣ କରୁଥିଲେ । ଗୋଟାଏ ଗୋଟାଏ ଘଟଣା ଘଟିଲା ଉତ୍ତାରୁ ବହୁତ ବର୍ଷ ପର୍ଯ୍ୟନ୍ତ ଆଲୋଚନା ଲାଗୁଥିଲା—ସେହି ଶ୍ରେଣୀରେ ଯେଉଁଠି ଜଗନ୍ନାଥମେଳା କି ଖଞ୍ଜଣିମାଡ଼ ପାଲିଆ ଲମ୍ବାଧାଡ଼ିରେ କଥା ପଡ଼ିଯାଏ—ଦକ୍ଷିଣ ପ୍ରାନ୍ତର କନ୍ଧଫିତୁର ସମୟରେ ସେଥର କ'ଣ ହୋଇଥାନ୍ତା ଯାଲା ସାହେବର ଅବସ୍ଥା ଯଦି ବଣ୍ଟ୍ୱାଳ ସେଠି ନ ଥାନ୍ତା । ଆଉ ବାଲିଗୁଡ଼ାରେ ଯେତେବେଳେ ସେ ଆଉ ସାହାବ ମେଳିଆଙ୍କ ହାବୁଡ଼େ ପଡ଼ିଥିଲା । ଆଉ ମୟୂରଭଞ୍ଜ ମାଳରେ ସେ ଘାଟି ଉପରେ ଯେତେବେଳେ ମେଘ ପରି ଶର ବୃଷ୍ଟି ହେଉଥିଲା ।

ଖାଲି ମଣିଷଙ୍କୁ ସାଧ କରିବା କାହାଣୀ ନୁହେଁ, ବଣର ଜନ୍ତୁଙ୍କୁ ବି । କାହାଣୀ ଚଳୁଥିଲା, କେତେ କେତେ ସାହାବ ଏତେ ଏତେ ବାଘ ମାରି ଯେତେ ଫଟୋ ଉଠାଇଲେ ଓ ଶହ ଶହ ଟଙ୍କା ପୁରସ୍କାର ପାଇଲେ

ସେଥିରେ ପ୍ରକୃତରେ ସବୁ କୃତିତ୍ୱ ବିଶ୍ୱାଳର, ମାରେ ସିପାହି ନାମ୍ ନର୍ଦ୍ଦାର୍ । ସେ କୁଆଡ଼େ ଡାକମାର ବାଘକୁ ଡାକେ । ବାଘ ନାଷ୍ପୁଲିଏ, ସେ ନାଶ ମୋଡ଼େ । ବାଘ ଆଁ କରେ, ସେ ଆଁ କରେ । ବାଘ ଗର୍ଜନ ଛାଡ଼େ ଆଉ ସେ ଫୁଟାଏ ବନ୍ଧୁକ, ତା'ପରେ ବାଘ ବାଘଜନ୍ମରୁ ଉଦ୍ଧାର ।

ସେମିତି କାହାଣୀ ଶୁଣାଯାଉଥିଲା । ତା ଖାଇବା ପିଇବା ଶକ୍ତି ବିଷୟରେ, କେବେ ଏକୋଓଳକେ ଗୋଟାଏ ଖାସି, କେବେ ଖାଲି ଲୁଣ ଗୋଳେଇ ଦେଇ ପାଞ୍ଚସେର ଗୁଡ଼ଳର ଭାତ, ଲମ୍ବହୋଇ କଦଳୀପତ୍ର ପଡ଼ିହୋଇ ରହିଥାଏ ଏମୁଣ୍ଡ୍ର ସେମୁଣ୍ଡ, ତା' ଉପରେ କଆଁଖିର ହାତ ଓସାରରେ ଭାତ ଗଦାହୋଇଥାଏ, ଆଉ କ୍ଷଣକୁ ସେ କୁଆଡ଼େ ଅଦୃଶ୍ୟ ହେଲାଣି ।

ଆଉ ସେ କାହାଣୀ କାହାର ମନେ ନଥିବ, ପର ଉପରେ ପରାକ୍ରମ ଦେଖାଇ ଆପେ ଛାତିଫୁଲେଇବା ନାଶ ମୋଡ଼ିବା କାହାଣୀ, ଆପଣା ବଡ଼ତର, ଭୁଲ୍ ହୋଇଛି ।

ମୁଛ ହଳକ ଯେ ଆପେ କାଟି ପକାଇଥିଲା । ବହୁମୂତ୍ର ରୋଗ ଧରିଲା, ଦେହ ଝଡ଼ିଗଲା, ଆଉ ଧରିଲା ଗଣ୍ଠିବାତ ସହିତ ରକ୍ତପରସ୍ତା, ବଛଣାଲାଗି ହେଲା, ମରୁ ମରୁ ବଞ୍ଚିଲା । ଆପଣାକୁ ଦେଖିଲା ଗାଁ ପୋଖରୀର ସ୍ଥିର ପାଣି ଉପରେ, ଆରସିରେ, ଯେମିତା ସେନ୍ଦୁରି ମୁହଁଟାଯାକରେ ଆଉ କିଛି ନାହିଁ ଖାଲି ଡିବି ଖୋଳିଲା ପରି ଢଳପଡ଼ୁଥିବା କହରି ଚୂନମଖା ମୋଟା ମୋଟା ନାଶପୋଡ଼ାକ, ଆପେ ଡାକିଲା ବକେନାହଆ ଭଣ୍ଡାରିକ, ସେହିନୁଁ ଖାଲି ମୂଳ ଥାଏ, ଆଉ କିଛି ନାହିଁ । ପୁରୁଣା ବନ୍ଧୁକଟିକୁ ସେ ତା ଡାହାଣ ପାଦ ଉପରେ ଠିଆକରି ଥୋଇ ଧରିଥିଲା । ବହୁଦିନର ଅଭ୍ୟାସ, ନହେଲେ ବନ୍ଧୁକମୁଣ୍ଡିରେ ମାଟି ଲାଗିବ । ତା' ଉପରେ ହାତ ଖେଳାଉ ଖେଳାଉ ସେ ତାକୁ ଧୀରେ ଟେକିନେଲା, ଅଭ୍ୟାସ ଅନୁଯାୟୀ କାନ୍ଧରେ ଥୋଇଲା ଓ ଅନୁଭବ କଲା, ବନ୍ଧୁକ କେତେ ଓଜନ ଲାଗୁଛି । ଦୀର୍ଘଶ୍ୱାସ ପକାଇଲା । କଳାହରଣ ହୋଇସାରିଥିବା ଅର୍ଜ୍ଜୁନ ଗାଣ୍ଡୀବ ଧନୁକୁ ଟେକିବାକୁ ଚେଷ୍ଟା କଲାପରି

ଆଦିକନ୍ଦ ବିଶ୍ୱାଳ ବି ପଛକଥା ଶୁଣିଦେଲା, "ଯେତେବେଳେ।" ବନ୍ଧୁକଟାକୁ ଏ କାନ୍ଧରୁ ସେ କାନ୍ଧ କରି ସେ ଦୁଃଖରେ ଭାବିଲା। ଦେହ ସୁସ୍ଥ ଥିଲାବେଳେ ଯେପରି ଦେହର କୌଣସି ଅଙ୍ଗ କି ଅଂଶ ଅଛି ବୋଲି ମଣିଷ ଭାବେ ନାହିଁ; କିନ୍ତୁ ଆଙ୍ଗୁଠିରେ କେଉଁଠି ଟିକିଏ ଖଣ୍ଡିଆ ହୋଇଗଲେ କି କୁଣ୍ଡିଆଟିଏ ହେଲେ ମନେପଡ଼େ "ଏ ମୋ ଆଙ୍ଗୁଠି", ଆଖିଧରିଲେ ମନେପଡ଼େ "ଏ ମୋ ଆଖି" ଯେମିତି ଆଦିକନ୍ଦ ବିଶ୍ୱାଳ ମନେପକାଇଲା, "ଏ ମୋ ଦେହ।"

ମୁଣ୍ଡ ବୁଲାଇଦେଲା। ବନ୍ଧ ପାଖରୁ ଦି' ପାହୁଣ୍ଡ ପଛକୁ ଘୁଞ୍ଚି-ଆସିଲା। ପୁଣି ବନ୍ଧୁକଟାକୁ କାନ୍ଧରୁ ଓହ୍ଲାଇ ବାଡ଼ପରି ସିଧା କରି ଧରି ଠିଆହେଲା। କେତେ ଲୋକ ମାଗିଥିଲେ, ବିକିଥିଲେ କିଛି ପଇସା ମିଳିଥାନ୍ତା। ଭାରିଯା, ପୁଅମାନେ, ତାହାର ଶୁଭାକାଙ୍କ୍ଷୀମାନେ ସମସ୍ତେ କହୁଥିଲେ—"ଖାଲି ସାଇତା ହୋଇ ଥୁଆ ହୋଇଛି। ଗୁଳି କିଣିବାକୁ ପଇସା ନାହିଁ, ପୁଣି ବର୍ଷକୁ ବର୍ଷ ଥରେ ସ୍ୱାକୁ ଘେନି ସହରକୁ ଯା, ଟ୍ରେଜେରୀରେ ଟଙ୍କା ବାନ୍ଧ, ଲାଇସନ ମିଆଦ ବଢ଼ା, ଭଲ ଫେଣା। ତା ଅପେକ୍ଷା ବିକିଦେଲେ ତ ଯାଆନ୍ତା।"

କିନ୍ତୁ ତା'ର ଏକା ନାହିଁ।

ସବୁଦିନପରି ତା' ଶୋଇବା ବଖରାରେ ମୁଣ୍ଡଉପରେ ବନ୍ଧୁକଟା ଡେରା ହୋଇ ରହିଥାଏ। ମଝିରେ ମଝିରେ ଚହିଁରେ କଟାଦଉଡ଼ି ବୁଡ଼ାଇ ନଡ଼ିଆତେଲ ଲଗାଇ ସେ ତାକୁ ପରିଷ୍କାର କରେ। ଖୋଲିକୋଦ, ଆଲୁଅକୁ ଦେଖାଇ ନଳଭିତରକୁ ଅନାଇଁ ଦେଖେ ଜକଜକ ଦିଶୁଛି କି ନାହିଁ, ପୁଣି ଖଞ୍ଜି ରଖାଏ।

ବୁଢ଼ାର ଚାରିପୁଅ, ନନ୍ଦ, ଗୋପାଳ, ଗୋବନ୍ଦ, ହରି। ବାପ ଶିକାର କଲାବେଳର ପ୍ରତ୍ୟକ୍ଷ କାହାଣୀ ନନ୍ଦ ଗୋପାଳ ଦିହେଁ କିଛି କିଛି ଜାଣିଥିଲେ। ଘରେ ବାଘଗୁଳି, ହରିଣଗୁଳି, ଭାଲୁଗୁଳି ଦେଖିଥିଲେ। ଗୋବନ୍ଦର ବି ଅଳ୍ପ ଅଳ୍ପ ମନେଅଛି। ହରି ବେଳକୁ ସେସବୁ କିଛି ନାହିଁ।

ନନ୍ଦ ହେଲା ଫିଟର, ଗୋପାଳ ହେଲା କମ୍ପାଉଣ୍ଡର, ଗୋବିନ୍ଦ ଓ ହରି ଚାଷ କଲେ । ବୁଢ଼ା କାହାରିକି ଆପଣା ଶୀକାରପାଇଁ ଡକାଇ କରାଇଲା ନାହିଁ । କାହାରିକି ବନ୍ଧୁକ ଛୁଆଁଇବାକୁ ଦେଲା ନାହିଁ ।

ନାତି-ନାତୁଣୀମାନେ ଜନ୍ମ ହେଲେ । ଗୁରୁଣ୍ଡିବା ଦିନଠୁଁ ବଡ଼ ହେଲାଯାକେ ସେମାନେ ସମସ୍ତେ ସେ ବନ୍ଧୁକକୁ ଚିହ୍ନିଛନ୍ତି, ଅନେକେ ସେ ବନ୍ଧୁକ ସଙ୍ଗେ ଲାଗିଥିବାରୁ ବାପମାନଙ୍କଠୁଁ କି ଆଉ କାହାଠୁଁ ମାଡ଼ଗାଳି ଖାଇଛନ୍ତି; କିନ୍ତୁ ସେମାନେ ସମସ୍ତେ ସେ ବନ୍ଧୁକ ବିଷୟରେ କାହାଣୀ ଶୁଣିଛନ୍ତି । ଅନେକେ ଖାଲି ନାଁ ଶୁଣିଛନ୍ତି ବାଘ, ଗୟଳ, ସମ୍ବର, ହରିଣ, ଭାଲୁ, କୁଠ୍ରା, ଆଖିରେ ଦେଖିନାହାନ୍ତି । ଅନେକେ ବନ୍ଧୁକଗୁଳି ବି ଦେଖିନାହାନ୍ତି; କିନ୍ତୁ ସମସ୍ତେ ଜାଣନ୍ତି ଆଦିକନ୍ଦ ବଡ଼ ଶିକାରୀ । ତା'ର ବୁଢ଼ାଦିନେ ଯେଉଁ ପିଲା ତା'ର ଯେଉଁ ଚେହେରା ଦେଖିଛି ସେ ତାକୁ ଦୁଃସାହସୀ ମାରଣା ବନ୍ଧୁକ ବୀର ବୋଲି କଳ୍ପନା କରିଛି ସେହି ରୂପରେ । ହରିର ବଡ଼ପୁଅ ଛଅବର୍ଷର ବୁଲୁ, ଥାକୁଲୁ ଥାକୁଲୁ, ବଡ଼ ଝୁଙ୍କୁ ଝୁଙ୍କୁ ସେ ବୁଢ଼ାର ବେଶୀ ସାଙ୍ଗ, ବୁଢ଼ାଠୁ ବେଶୀ କାହାଣୀ ଶୁଣିଛି । ବେଳେ-ବେଳେ ଏକୁଟିଆ ଥିଲାବେଳେ ସେ ମନେ ମନେ କଳ୍ପନା କରେ ଯେମିତି ପଡ଼ିଆଯାକ ଦୌଡ଼ି ଦୌଡ଼ି ବନ୍ଧୁକ ଧରି ବୁଢ଼ା ଜନ୍ତୁଶିକାର କରୁଛି । କାନ୍ଧହାଡ଼ ଯାକନ୍ଧୁକ ହୋଇ ଆଗକୁ ବଙ୍କା ହୋଇଯାଇଛି । ବିଦାକାଠି ପରି ଗୁଡ଼ି । ହାତଗୋଡ଼ ଡାଙ୍ଗ ସରୁ ସରୁ; ପାକୁଆ ପାଟି ଫାଳକେ ବଙ୍କେଇଛି, ବୁଢ଼ା ରାଗରେ ତମତମ ହେଲାପରି ଦିଶୁଛି, ଗୋରୁଗାଈ, ଛେଳି-ମେଣ୍ଢା ଯେତେ ଜନ୍ତୁ ସେ ପଡ଼ିଆରେ ଚରୁଛନ୍ତି ସମସ୍ତିଙ୍କ ଆଡ଼କୁ ସେ ବନ୍ଧୁକ ଉଞ୍ଚେଇ ଦେଖାଇ ଦେଉଛି ଆଉ ଜନ୍ତୁଗୁଡ଼ାକ ତଳେ ପଡ଼ି ଛଟଛଟ ହେଉଛନ୍ତି । ତା'ପରେ କାଠ ହୋଇଯାଉଛନ୍ତି । ବୁଲୁ ଭାବୁ ଭାବୁ ଉତ୍ତେଜିତ ହୋଇ ଘୁଞ୍ଚିଖଣ୍ଡେ କାଢ଼େଇ ପାଟି କରି କରି ଦଉଡ଼ି ଧାପଡ଼ି କରେ । ଯେପରି ସେ ବୁଢ଼ାର ଚେଲା, ଦୌଡ଼ିଆସି ବୁଢ଼ାକୁ ଖୋଜି ବାହାର କରି ପଚାରେ ।

"ଅଜା, ଗୋଟିଏ ବାଘମରା କଥା କହ ।"

ନଈବନ୍ଧ ଉପରେ ଠିଆହୋଇ ଆଦିକନ୍ଦ ଆଦୌ ବାଘମରା କଥା ଭାବୁ ନଥିଲା । ଗାଁକରି ସରିବାର କେତେ କେତେ ବର୍ଷ ଆଗରୁ ସେ

ଶିକାର କରିବା ଗ୍ରୁଡ଼ିଦେଇଥିଲି । ତା'ପରେ ବନ୍ଧୁକ ଆଉ ଫୁଟି ନାହିଁ । ଆବ୍ଦକାଦ ଯେତେବେଳେ ଭାବୁଥିଲି ଏଥର ଏ ବନ୍ଧୁକଟା ଛାଡ଼ି-ଦେବେଲେ ଯାଏ ।

ମନେ ମନେ ଏହିପରି ଜଳ୍ପତି କରିସାରି ସେ ଅନୁଭବ କଲା ଯେମିତି ତା'ର ସବୁ ସରିଯାଇଛି ।

ସରିଗଲା । ଆଉ ନାହିଁ ।

ଗ୍ରୁଡ଼ ଉପରେ ଆପେ ଆପେ ବେଳ ଅଜାଡ଼ି ହୋଇପଡ଼ିଲା । ଗ୍ରୁବଦଆ କଳ କରେଇ ପରି ସେ ଟହଲୁଥାଏ ।

"ଆରେ, ଭାଇସାହାବ୍ ।" ବେଳ ଚେକିଲା । ବନ୍ଧୁକ ଧରି ଆଉ ଜଣେ ବୁଢ଼ା, ହାକୁବ୍ ମିଆଁ—ଅଣ୍ଟା ନଇଁ ପଡ଼ିଛି, ଖୋଷ ପରି ଲମ୍ବ ଦାଢ଼ି ଓହଳିଛି, ଆଖି ପାଉଁଶିଆ ପଡ଼ିଯାଇଛି । ଆବ୍ଦକାଦର ହାତଧରି ପକାଇ ସେ ପିଣ୍ଡା ଆଡ଼କୁ ଓଟାରି ନେଇ ନେଇ କହିଲା, "ବହୁତ ଦିନେ ଦେଖା ଭାଇସାହାବ୍ । ଆଉ, ସବୁ ଭଲ ତ ?"

ଏଇ ହାକୁବ୍ ମିଆଁ । ସେତେବେଳେ ସେ ବି ଥିଲା, ହାବିଲ୍‌ଦାର । ଦୁହେଁ ଭାରି ବିଶ୍ୱାସୀ, ସାଙ୍ଗ ହୋଇଥିଲେ । ବେଳ ପଡ଼ିଥିଲା, ଏକାଠି କେତେ ରାତି କେତେ ଦିନ, କେତେ ଅପନ୍ତରା କେତେ ବଣ । ତା'ର ପଞ୍ଝାର ଜାବ ଆପଣା ହାତରେ ପଡ଼ୁ ପଡ଼ୁ ଧୀରେ ଧୀରେ ଯେମିତି ସ୍ମୃତି ଫେରି ଆସିଲା, ଆବ୍ଦକାଦକୁ ଦମ୍ଭିଲା ଲାଗିଲା । ଏଠି ସେଠି ବନ୍ଧୁକ ଧରି ଲୋକେ ଗହଳ ହୋଇ ଠିଆ ହୋଇଛନ୍ତି । ସେମାନେ ବି ବନ୍ଧୁକ ଲାଇସନ ମିଆଦ ବଢ଼ାଇବାକୁ କୁଆଡ଼ୁ କୁଆଡୁ ଆସିଛନ୍ତି । ବହୁତ ବୁଢ଼ା ବହୁତ ଭେଣ୍ଡା ।

ଜଙ୍ଗଲଭିତରେ ଥିଲାବେଳେ ଗୁପ୍ତ ପରାମର୍ଶ କରିବାକୁ ଉତ୍ସାଳକୁ ଆଢ଼େଇ ହୋଇଗଲା ପରି ଦୁହେଁ ଗୋଟାଏ କରକୁ ଘୁଞ୍ଚିଗଲେ । ଲମ୍ବ ଦାଢ଼ି ଝୁଲୁଥିବା ମୁହଁଟି ଉପରକୁ ଟେକ ହେଲା । ଆବ୍ଦକାଦର ମୁହଁର ଅତିପାଖକୁ ଲାଗି ଲାଗି ଆସିଲା । ତାଙ୍କ ଦେଲାପରି ପାତଳ ମୁହଁଟିଏ । ହସରେ ଉଜ୍ଜ୍ୱଳ ହୋଇଉଠିଲା, ମୁହଁସଞ୍ଜବେଳେ ହଠାତ୍ ଯେମିତି

କେଉଁ ଘର, ଗଛ, ଢାଏପଡ଼ିଆ ବେଳେବେଳେ ଉଜ୍ଜ୍ୱଳ ଦିଶେ, ସେମିତି । ତା'ପରେ ସେହି ଉଜ୍ଜ୍ୱଳର ଆଭା ଆବ୍ଦକାଦରର ମୁହଁଉପରେ ବି ପଡ଼ିଲା । ହଠାତ୍ ସେ କଥା କହିପାରିଲା ନାହିଁ । ଏଇତ ଗୋଟାପୁରା ସେହି ୟାକୁବ୍ । ଆଖିରେ ସେମିତି ସେକାଳର ସେହି ଛପିଲା ଛପିଲା ପ୍ରଶ୍ନ । "କହ ଭାଇସାହାବ୍ ଆଜ କି ନୂଆ ମଜଜ୍ ହେବ । ବିବାଦ ଦିଅ ।" ଯେତେବେଳେ ଜୀବନଟାଯାକ ଖାଲି ମଉଜ୍, ଯେତେବେଳେ ଡ୍ୟୁଟି ନଥିବ । ଡ୍ୟୁଟି ବି ଅଦ୍ଭୁଆ ନୁହେଁ, ସରଳ । ବନ୍ଧୁକ ସଜାଡ଼ିଧରି ଗ୍ରୁଣ୍ଡରେ ଛାତିଫୁଲାଇ ଠିଆହେବା, ଆଉ ଧର କହିଲେ ଧର, ମାର କହିଲେ ମାର, ଚାଲ କହିଲେ ଚାଲ, ଦଉଡ଼ କହିଲେ ଦଉଡ଼, ନିଜ ମୁଣ୍ଡ ଧନ୍ଦ ହେବା କାମ ନୁହେଁ । ଖାଇ ପିଇ କସରତ କରି ଦେହକୁ ଟାଣ ରଖିପାରିଲେ ଭାରି ବଡ଼ କାମ । ଅବସର ସମୟରେ ମଞ୍ଜା ବାନ୍ଧ, ନ ହେଲେ ଜଙ୍ଗଲର ଖୋଜ ଉଣ୍ଡି ଉଣ୍ଡି ଯାଅ, ଶିକାର କର, ନ ହେଲେ ଯେଉଁ ଉପାୟ ହାବୁଡ଼ ଛୁ ସେହି ଉପାୟକୁ ଧରି ମଉଜ୍ କର । ଡର ନା ଭୟ ନା ଲାଜ ନା ସଙ୍କୋଚ ।

ଆବ୍ଦକାଦ ଗଦ୍‌ଗଦ ହୋଇ କହିଲା, 'ୟାକୁବ୍ !"

"ହଁ ବଡ଼ାଭାଇ, ଆଜ ଦେଖା ହୋଇଗଲା, କେତେ ଦିନ, ଖୋଦା ମେହେରବାନ୍ ।"

"ବଞ୍ଚିଛୁ ବୋଲି ପିନା ଦେଖିଲ ।"

"ବଞ୍ଚିନଥାନ୍ତି ଆଉ କ'ଣ ଭାଇସାହେବ୍, ତେମେ ତ ସେମିତିକ ସେମିତି । ସତେ ଯେମିତି କାଲି ଦେଖିଥିଲି ।"

"ଆଉ କାହୁଁ ଥାଏ ?"

"ଏବୁ ଅଛୁ । ମୁଁ ଯାହା ଠିକଏ ନଇଁପଡ଼ିଲି ଭାଇସାବ୍ ଅଣ୍ଟାଟା ଧରିପକାଇଲା ବୋଲି ପିନା । ସେ, ମୋ ଦିଲ୍ ନଇଁ ନାହିଁ ସେ । ତମରି ଚେଲା ତ ମୁଁ । କୋଉ ଇଲମ୍ ତମଠୁଁ ନ ଶିଖିଲି ସେ ।" ୟାକୁବ୍ ହୋ ହୋ ହୋଇ ହସିଲା । ତା' କଥାର ଇଙ୍ଗିତରେ ଆବ୍ଦକାଦରର ଭିତରଟା ଉଷୁମ ହୋଇ ଆସିଲା । ସେ ମୁରୁକି ହସିଲା । କହିଲା, "କହ, ଏବୁ ଭଲ ତ ?"

ସ୍ମାକୁବ୍ କହିଲା ଭଲ ତ ଶୁଣିଲି ଏଯାକେ । ତମ ଯାହା ଶିଖେଇଥିଲ ସେଇଆ କରୁଚ ଭାଇସାବ୍ । ତମେ କ’ଣ କହୁଥିଲ ? “ସବୁଥିରୁ ଖେଳିବ, ଆପଣା ଢଙ୍ଗ୍ ଯାହା ଶୁଝିବ ସେଥିରୁ କେବେ ଖେଳିବ ନାହିଁ । ମଣିଷ ମରିଗଲେ ତ ଗଲା, ଆଉ କାହାପାଇଁ ଏ ସଂସାର ?” କହୁଥିଲ କି ନାହିଁ ?

କହୁଥିଲି, “ତେବେ କ’ଣ ଏମିତି ସେମିତି ମଣିଷ ସେ କି କହନ୍ତୁ ? ମୁଁ ପରା ସବୁବେଳେ ମନେପକାଏଁ ମୋ ଗୁରୁ । ମୋ ସର୍ଦ୍ଦାର । ସାଙ୍ଗ, ସାଥୀ, ନାତି, ନାତୁଣୀ ସମସ୍ତିଙ୍କୁ ତମକଥା କହୁଚି କି— ଗଛପତ୍ରଙ୍କୁ ବି କହୁଛି । କହେ ଆରେ ତେମେ ସବୁ କାଲିକାଲିଆ ପିଲା, ଟିକିଏ କଥାକୁ ତମ ଗୁଡି ଧଡ଼ଧଡ଼, ଆଉ ଦେଖିଥାନ୍ତ ହାବିଲଦାର ବସ୍ତ୍ରାଙ୍କୁ କେତେ କେତେ କଥା ସେ ପାର କରିଦେଇଛି କେହି ତା’ର ଚୁମଟିଏ ବଙ୍କେଇ ପାରିଲେ ନାହିଁ । ଏଥର ଯେମିତି ଆଉ ଗୋଟାଏ ଶାଦୀ କରିବାକୁ ମନହେଲା ମୁଁ ସମସ୍ତିଙ୍କି ତମରି ଉପଦେଶ କହିଲି, ମନ ଲେଉଟିଲା, ତା’ ଅର୍ଜି ମଞ୍ଜୁର୍ ହେବ । ଜନଟା ଥିଲେ, ଆଉ ବି ଗୋଟାଏ ଆସିଲା । ଆଉ ମୋର କଳ୍ପନା ନାହିଁ ।”

“କ’ଣ ଜନବଣୀ ସାଙ୍ଗକୁ ଆଉ ଗୋଟିଏ ମିଶି ଘରବଣୀ ହେଲେ ସ୍ମାକୁବ୍ ।”

ସ୍ମାକୁବ୍ ହସିଲା । କହିଲା, “ହଇଆ । ତେବେ ନେ ଜନଟାଯାକ କଳହୁଡ଼ୀ ରାଣୀ, ଏଇଟି ଶାନ୍ତ । ନ ହେଲେ କ’ଣ କରିଥାନ୍ତି । କହିଲ ଭାଇସାବ୍ ? ସେଗୁଡ଼ାକ ଆଉ କଥା ମାନୁନାହାନ୍ତି । ଏଇଟି ଯେ, ବୋଲକୁ ଅନେଇଥାଏ, ଘଣ୍ଟା ଘଣ୍ଟା ଲାଗି ଅଣ୍ଟାରେ ଗୋଡ଼ରେ ତେଲ ମାଲିସ୍ କରୁଥାଏ, ତା’ ହାତ ଢୋଳହୁଏ ନାହିଁ । ବଣୁଆର କେହି ନ ଥିଲେ, ଆଇଲାବେଳେ ହାଡ଼ କଣ୍ଟା ଦୋହଲୁଥିଲା । ଏବେ ଉଠିଲାଉଠିଲା ହୋଇଗଲାଣି । ଘର ଯତ୍ନନେଉଛି, ମୋର ଆଉ ଚିନ୍ତା ନାହିଁ ।”

ଆବ୍ଦକାନ୍ଦ କାବା କାବା ହେଲା । ଛେପ ଢୋକି କହିଲା, “ହଉ ହଉ, ଭଲ ଭଲ । ତେବେ ଭଲଅଛ ସ୍ମାକୁବ୍ ।”

ହାଁ ହାଁ, ଯାହା ବନେଇଥିଲ ମେଇଆ କରୁଚ । ତୁମେ କହୁଥିଲ ଆସେ ଚାଲ ରହ, ଫୂର୍ତ୍ତି ଉଡ଼ାଅ, ଆଉ ଏ ଦୁନିଆଁରେ ଯେ ଯାହା କଲା ଯାହା ହେଲା ଯେ ହେଉ, ମାରେ ଗୁଲି । ମୋର ମେଇଆ । କାହାର ହାତରେ ନାହିଁ କି ଲଭରେ ନାହିଁ । ନିଜପାଇଁ ଯେତିକ ପାରୁଛୁ କରୁଛୁ । ନେଇ ଦେଖ ଯେ ଅଫିମଟାକୁ ବଅଣାରୁ ବଢ଼େଇ ଘରଣାରେ ରଖିଛୁ । ତାଡ଼ି ଆଠଣାର, ଶିଅଳ ଟୋକା ଦେଇଯାଏ । ମୁର୍ଗୀ ତ ଘରେ, ମାସରେ ଢ଼' ସାତଥର ହୁଏ । ବନ୍ଧୁକରେ ବାନ୍ କାପ୍ତା ମିଳୁଥିଲ, ଅଗ୍ନାଟା ନଜିଲିଦନୁ ଯେ ଆଉ ହଉ ନାଇଁ, ନେବେ ବନ୍ଶୀ ଏଯାଏଁ । ଥଣ୍ଡା ଲଗିବାକୁ ନାତିନାତୁଣୀ ହୋଇ ବାରଜଣ, କିଏ କହେ ଘଡ଼ିଭ଼ କରନେ କିଏ କହେ ଡାବୁଲୁସୁଆ ଚାହିଁ । ଗୁଲିଛି ଭଲସାବ୍ ଗୁଲିଛି । ଖୋଦା ମେହେରବାନ୍ । ଆଚ୍ଛା, ତୁମେ ତ ତାଜା ଅଛ । କହ, ବନ୍ଧୁକରେ ଲଗୁଚ କ'ଣ ?

ଆହାକନ୍ଦ ହସିଲ । କହିଲ "ଆଉ ଯେସବୁ ନାହିଁ । ଦେଖୁନା, ବୁଢ଼ା ହେଲଣି । ଏଣିକି ମାଳ କୋଥିଲ ।" ଯାକୁବ୍ ଆଖିଖୋଷି ଦେଲ, ତାକୁ ତାକୁରୁ ତଳପାଯାକେ ଅନାଇଁଗଲ । ଯେପରି ମିଳାଇ ଦେଖୁଛି ଯେ ଯେଉଁ ଆହାକନ୍ଦ ବଣ୍ଡାଳକୁ ସେ ଆଦର୍ଶ ବୋଲି ମାନି ନେଇଥିଲ ସେ ସେହି ନା ନୁହେଁ । ସେ ଆଖି ଖୋଷି ଦେଲ, କହିଲ "କ'ଣ କହୁଚ ? ବିଲ୍କୁଲ୍ ମାରୁନା ?"

"ଆଦୌ ନାହିଁ ।"

"ବଜ ତାଜୁବ୍କା ବାତ୍ ଭଇସାବ୍ । ନ ମାରିଲେ ତମ ଭାତ ହଜମ ହଉଚ କେମିତି ? ଯେତେବେଳେ—ଦିନରେ ଯେତେ ଭିଡ଼ କାମ ଥାଉ ରାତିକ ଗୋଟାଏ ହରଣ ତ ନିଷ୍ଟୟ କୁଆଡ଼ୁ ହେଲେ ମାରି ଆଣିବ । ବାଘ ବଉଁଶ ତ ପଦାକଲ । ହରଡ଼ିତଟେଇ ଯେ, ସେ ତ ତେମେ ଆଙ୍ଗୁଠି ଭୁଷାଡ଼ି ଦେଲେ କୋଳି ପରି ଝଡ଼ିଲ, ଏକା ଗୁଲିଟକେ ସ୍ବର ପାଞ୍ଚ । ଆମ ଦେଖନ୍ତାରେ ଏତେ ବଡ଼ ବାଣୁଆ ଆଉ କିଏ ଥିଲ ? ତେମେ ପର ଖାଲି ଶବ୍ଦ ଶୁଣି ଶୁଣି ବଣ ଉହାଡ଼ରେ କେଉଁଠି ବଣ-କୁକୁଡ଼ା ଖସରଖସର ହେଉଛି ତାକୁ ବଲ୍ ପକେଇ ମାରି କାର୍ସାଦ ଦେଖାଇଥିଲ ? ବାପ୍ରେ ବାପ୍ ।"

"ବେକାର ଗଲଣି ୟାକୁବ୍ । ଆଉ ସେ କାମକୁ ମନ ନାହିଁ । ଏଣିକି, କହୁଛି ଦେଖ, ମାଲିକଙ୍କରି ହଜରତ୍ ଆସି ଭକ୍ତି ଜଗଲେ ଶାନ୍ତି ଲାଗୁଛି । ଜୀବକୁ ସୁଖ ଦେଇ ଦେଇ ତ ବଞ୍ଚିରହିଲି, ଏଣିକି ମନହେଲଣି କେମିତି ଦେହସୁଖ ଦିହି ହ'ନ୍ତାନାହିଁ ? ନ ହେଲେ ମଲେ ମୋ ଗତି କ'ଣ ହେବ ୟାକୁବ୍ ? ଘୁଷୁରି ହୋଇ ଜନ୍ମ ହେବ ନା ?"

"ତୋବା-ତୋବା-ତୋବା !" ୟାକୁବ୍ ଏକର ସେକର ହୋଇ ହୋଇ କହିଲା, "ଯେ କ୍ୟା ବାତ୍ ! ମଲେ ଫେର୍ ଜନ୍ମ କଏ କେମିତି ହବ ଭାଇସାବ୍ ? ସେ ମିଛ କଥାଗୁଡ଼ାକ ତ ଠକଙ୍କ ବୁଜରୁକି । ଯଦିବା କଏ କେମିତି କେମିତି ଜନ୍ମ ବି ହୋଇପଡ଼ିଲା, ସେଇଟା ଜାନୁଆର୍ ହେବ କେମିତି ? ସେ କେତେ ସେଗୁଡ଼ାକ କାହିଁକି ଭାବୁଛ ?"

ଆହକନ୍ଦ ଶୁଖିଲା ହସଟାଏ ହସି କହିଲା, "ଭାବୁଛି ତ । ସେତେବେଳେ ଯେଉଁ ମନ ଥିଲା ତା' ଆଉ ନାହିଁ । ସେ ବଳ ବି ନାହିଁ । ସେ ଅଭ୍ୟାସ ବି ନାହିଁ । ସତ କହୁଛି ୟାକୁବ୍ ମାଲିକଙ୍କରି ନାମ ନେଲେ, ଘରେ ଶାନ୍ତି ପାଉଛି । ଜଗତ-କରତାଙ୍କୁ ଡାକୁଛି । ଡାକୁ ଡାକୁ କାଳେ ଏ ଜୀବ ତରିଯିବ ।"

ୟାକୁବ୍ ମୁଣ୍ଡ ଝାଙ୍କି ଝାଙ୍କି ଏକର ସେକର ହେଲା । ତାକୁ ଅଜବ ଲାଗୁଥାଏ । ଯେପରି ତା'ର ଏ ବନ୍ଧୁ ଆହକନ୍ଦ ବିଶ୍ୱାସ ତା' ପ୍ରତି ବିଶ୍ୱାସଘାତକତା କରୁଛି, ତଥାପି—ଯେପରି କରୁଛି ବୋଲି ବିଶ୍ୱାସ ହେଉ ନାହିଁ ।

ପୁଣି ସେ ଆହକନ୍ଦର ପାଖାକୁ ଲାଗି ଲାଗି ଆସିଲା, ଫୁସ୍ ଫୁସ୍ କରି ପଚାରିଲା ।

"ଆଉ ?"

"ଉହୁଁ !"

"ଯବାବ୍ ?"

"ଉହୁଁ !"

"ଗଞ୍ଜେଇ ?"

"ଉହୁଁ !"

"ଆସୁ ?"

"ଉହୁଁ !"

"ମୁର୍ଗୀ ?

"ଉହୁଁ । ବୃଥା ଖୋଳତାଡ଼ ପରୁଛୁଚ ସ୍କାଲୁର୍, ସେ୍ ମଣିଷ ଭଲେ । ଜଳଜୁଳଷୀକୁ ମନ । ତାଁରେ ପଚ୍ଛରଲେ କହବେ । ଖାଲି ଏଥିରୁ ଗୋଟାଏ ପଧିବ ଅଛୁ ବୋଲି ତାକୁ ବୋହ୍ୱାଆଣିଛୁ, ଭଲ ଚେଷ୍ଟା । ନ ହେଲେ ଗାଁରୁ କୁଆଡ଼େ ବାହାରେ ନାହିଁ । ଠାକୁରଙ୍କୁ ଆଜ୍ଞା କର ପଢ଼ୁଛୁ ତ, ଯାହା ସେ କରବେ ।"

ସ୍କାଲୁର୍ କହଲ, "ତାହେଲେ ଶେଷରେ ତେମେ ବାବାଜଟାଏ ହେବଲ ଭାଇଯାବ୍ । ଭଲ କଲ ନାହିଁ ।" ସେ ଉତ୍କ୍ଷ୍ୟାହରେ କହଲ "ଇସ୍ତାଦ୍ ହେ ତେରେ ? ମନେପଡ଼େ ନାହିଁ ସେଦନଗୁଡ଼ାକ ତମର ଭାଇଯାବ୍ ? ଥରେ ପଟରରେ ବସିଦେଲେ ଗୋଟାଏ ଖାସିରୁ ପାଳେ । ଏକାଥରକୁ ଦ'ବୋତଲ୍ ନଅଣ୍ଡ । ଦବୁବେଳେ ନଓଯୋଆନ୍ । କଳଜା ଲୁହାଠୁ ବଳ ଟାଣ । ହାକମମାନଙ୍କ ହାତବାରସି । ଟୋକାଙ୍କ ଗୁରୁ । ଠିଆହୋଇ ପଡ଼ଲେ ଦୁଷ୍ମନ୍ ଛତରଭୁଉଲ୍ । ନା ଡର ନା ଭୟ ନା କ'ଣ ଗୋଟାଏ ଘଟିଗଲା ବୋଲି ଘରେଇ ? କରୁ ନାଇଁ । କମି ଫୁଟି ଉଡ଼ୋଉଥିଲ ? ତମ ପଛେ ପଛେ ଚେଲାଗିର କରି ଆମେ ତ କାହିଁରୁ କ'ଣ (ହଉଥିଲୁଁ) ଆଉ ତୁମେ ତ ତୁମେ ।"

ଆଦକନ୍ଦକୁ ଛଟପଟ ଲାଗୁଥାଏ । କହଲ "ଛାଡ଼, ଛାଡ଼ । ସେଗୁଡ଼ାକ ପଚ୍ଛକଥା, ଅଇଲୁ ଆଉ ମନେ ନାହିଁ । ତମ କଥା କିଛିଏ କହବଟି ।"

"ଆଉ କ'ଣ କହବ କିହ ? ତେମେ ମଣିଷ ଭିତରେ ଶେର୍ । ସେ୍ ବାବାଜ ହେବା ତମକୁ ମାନବ ନାହିଁ । ସେଇ ପଲ୍ଟୁର ବେଳ କଥା

ମନେପକାଅ  ଭାଇସାବ୍ । ଜଙ୍ଗଲଭିତରେ ଗ୍ରାଉଣ୍ଡ ଥାଏ । ଘଞ୍ଚ ଶାଳବଣ । ପାଖରେ ସେ ସ୍ଥାନ ଗାଁଟା, ମନେପଡ଼ୁଛି ?”

“କେବଳ ଶାଳବଣ ତ ବୁଲିଛେଁ ୟାକୁବ୍ ।” “ନାହିଁ ନାହିଁ, ରହ । ହଁ ଚମ୍ପା । ତା' ନାଁ ଚମ୍ପା । ସେ ଚମ୍ପା କାହାଣୀ ଭୁଲି ହେବ କେବେ ? ସେ ଯେଉଁ ଅନ୍ଧାର ରାତି । ମୁଁ ଡରୁଥାଏ ଆଉ କାଳେ କଏ ପହଞ୍ଚିଯିବ । ଗାଁରେ ଆଲୁଅଟାଏ ବି କଏ ଜାଳିଥାଏ ଦିଶୁଥାଏ । ମତେ କହିଲ ୟାକୁବ୍, ଯାହା ହେଇଗଲା ତା' ହେଇଗଲା, ଏଣିକ ହାତରେ ଯାହା କାମ ରହିଲା ତା' ଆଗ ସାରିବାକୁ ପଡ଼ିବ । କଏ କ'ଣ କରି ପକାଇଲା ?”

ୟାକୁବ୍ ହୋ ହୋ ହୋଇ ହସିଲା ।

ଆହମଦ ତାଟକା ହୋଇ ଠିଆହେଲା ।

ପଛରୁ ଡାକଟା ଶୁଭିଲା “ୟାକୁବ୍ ହୋସେନ୍ ।”

ୟାକୁବ୍ କହିଲା, “ଡାକିଲେଣି, ଆସେଁ । ଆସିଲେ କଥା ହେବା । ମତେ ସବୁ କାଳପରି ଲାଗୁଛି । ମଣିଷ ମୁଁ କହେ ସେଇଆକୁ ସତ କହୁଛ, ମନେ ମନେ ତୁମ କଥା ଭାବେଁ, ତୁମର ଚେହେରାଟାକୁ ଆଖି ଆଗରେ ରଖେଁ ଆଉ ବେଳେବେଳେ ଭାବେଁ ମୁଁଟା ମୁଁ ନୁହେଁ ତୁମେ । ଭାବିଲେ ଆଉ କୋଉ କଥାକୁ ଖାତିର ନ ଥାଏ ।” ସେ ଚାଲିଗଲା ।

ଆହମଦ ଖଣ୍ଡେ ପରି ଠିଆହୋଇ ରହିଲା । ସେ ଅତୀତକୁ ଦେଖୁଥିଲା ।

ଆଗେ ବି ସେ ଅତୀତକୁ ଦେଖୁଥିଲା; କିନ୍ତୁ ସେତେବେଳେ ଅତୀତ କହିଲେ ଷୋଡ଼ରେ ଷୋଡ଼ରେ ସ୍ଥିର ହେଉଥିଲା ତା' ଦେହର ବଳକୁ । ସେ ବଳ ସଙ୍ଗେ ଆଉ କେଉଁ କେଉଁ ଆଖିବୁଜା ହାତଉଠା ଅରଣା କାହାଣୀମାନ ଯୋଡ଼ି ହୋଇଥିଲା, ସେହି ସେ କାଳରେ ଯେତେବେଳେ ତତଲା ରକ୍ତର ନିଶା ତା' ମୁଣ୍ଡରେ ଚଢ଼ୁଥିଲା, ସେ ଧରାକୁ ସରା ମଣୁଥିଲା, ଆଖି ତରାଟୁଥିଲା, ନିଶ ମୋଡ଼ୁଥିଲା ଆଉ ବାଘ ହୋଇଥିଲା ସେ, ସବୁ କାହାଣୀକୁ ସେ ମନେ ମନେ ଅସ୍ୱୀକାର କରିପାରିଥିଲା କେଉଁଦିନୁଁ,

ନମେ ପାଦୋର ଚକାଇଥିଲା । ସେ ଅରଣା ଦିନଗୁଡ଼ାକ ବ ଗ୍ରାଁଏ ଗ୍ରାଁଏ ଗ୍ରାଲଗଲଣି କେଉଁଦିନୁ, ଏମିତ ବାଗରେ ମର ମର ଯାଇଛି ଯେ ତା'ର ମନେ ନାହିଁ କେବେ ସେଗୁଡ଼ାକ ଘଟେ ଥିଲା । ଆପେ କେତେବେଳେ ରକ୍ତ ଶୀତଳ ପଡ଼ିଲା ସ୍ନାୟୁଭିତରେ ଝଣକୁଥିବା ଚଞ୍ଚଳତା ସ୍ଥିର ହେଲା । ଆଗେ ସେ କଥା କହୁଥିଲା ରଡ଼ ଦେଖାଇଲରେ, ତା'ପରେ ତା' କଥା ନରମ ଶୁଭିଲା, ସାଧାରଣ ଭାଷା ହେଲା । 'ତା' ଫୋପଡ଼ା କଡଡ଼ା ପାଦ-ଦୁଲୁକା କୁଆଡେ ଉଭେଇଗଲା । ତା' ପିଲାଏ ତା' ପାଖକୁ ଆସି କଥା-ଭାଷା ହେଲେ । ତା' ସ୍ତ୍ରୀର ରୁଷିବା କାନ୍ଦିବା ବନ୍ଦ ହେଲା । ନମେ ସେ ତା' ସ୍ତ୍ରୀର ବୁଦ୍ଧିକୁ ଗୁଣକୁ ପ୍ରଶଂସା କଲା, ତା' କଥା ମାନ ଚଳିଲା, ପଛେ ତା' ପିଲାଙ୍କ ମତକୁ ଶୁଣିଲା, ମାନିଲା । କେତେବର୍ଷ ହୋଇଗଲାଣି ତା' ନିଜର ଫରମାସି ନାହିଁ କ ଅଳ ଓଜର ନାହିଁ ।

କନ୍ତୁ ଏବେ ସେମବୁ ଓଲଟପାଲଟ ହୋଇଯାଇଛି । ସେହି ଯେଉଁ ଲୋକଟାକୁ ତା'ର ପ୍ରାଣେ ଡର ବୋଲ ସେ ତାକୁ ଭୁଲିଯାଇଥିଲା, ସେହି ହେରେମା, ଅନାଗୃହୀ, ନିଷ୍ଠୁର, ଯାହାର ଅମୁର ପରି ମୁଖାପିନ୍ଧା ମୂର୍ତ୍ତିଟା ଆସି ତା' ଆଗରେ ଠିଆହୋଇ ଯାଇଛି, ତା' ମୁଖା ଖସି-ପଡ଼ୁଚି । ସେ, ସେ ନିଜେ ସେକାଳର ଆଦକନ୍ଦ ବର୍ଣ୍ଣାଳ, ତା' କାହାଣୀମାନ ମର ନାହିଁ, ଜୀଇଛି ।

ଗୋଟାଏ ଧ୍ୱଂସକାରୀ ଦ୍ୱନ୍ଦ୍ୱରେ ସେ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ-ଯାଉଛି । ତା' ଛାତିଭିତର ମନ୍ଥି ଚକଟି ହୋଇଯାଉଛି । ପୁଣି ସବୁ ସ୍ଥିର ହେଉଛି । ଆଖିରେ ଆଉ ପଲକ ପଡ଼ୁନାହିଁ, ଆଗରେ ଏ କ'ଣ ନୂଆ ଦୃଶ୍ୟ । ଗୁରଆଡ଼ୁ ମେଘ ଘୋଟେଇ ଆସୁଛି । ସଞ୍ଜ ବୁଡ଼ିଗଲା । ଆଗରେ ସେମିତ ଚଳକା ହାବୁକା ମାରୁଛି । ତା' ଆଡ଼କୁ ଭସି ଭାସି ଆସୁଛି ଖଣ୍ଡିଆ-ଖାବୁରା ମଣିଷ ମୁଣ୍ଡ଼ାରଗୁଡାଏ ।

ମୁଣ୍ଡଭିତର ଶୀତେଇ ଝାଉଁଳିଯାଉଛି । କଏ ତାକୁ ଭୁମ୍ଭ ଭୁମ୍ଭ ସତର୍କ କର ଦେଉଛି—"ସେମାନେ ମୁକାବିଲା ହେବାକୁ ଆସୁଛନ୍ତି ।" ସେ ଆଖି ବୁଜଦେଲା । ପାରୁ ନାହିଁ । ଆଖି ବୁଜଲେ ସେହି ଦୃଶ୍ୟ । ଆଖି ଖୋଲ ଦୂରକୁ ଅନାଇଁଲା । ଏଥର ଦିଶୁଛି ଶାଳବଣ । ହେଲ

ଅଳ୍ପ ଦୂରରେ ଚନ୍ଧା ଟଙ୍କୀଟା ଘରଗୁଡ଼ାକର ଗୃଳ ଆଉ ହାଣ୍ଡଅନ୍ଧ ଦଶୁଛି । ସରୁ ଚଲାବାଟ ପଡ଼ିଛି । ତା କଡ଼ରେ ପାଣିଗାଡ଼, ଯେଉଁଠି ଝର ଝର ପାଣି ଠୁଳହୁଏ । ମାଠିଆ କାଖେଇ ଗୋଟିଏ ଗୋଟିଏ ହୋଇ ମାଇପିଟିଏ ଆସୁଛି । ସେଇତ ସେ । ଚମ୍ପା ।

ପ୍ରଥମଥର ଏମିତି ଦେଖା ହୋଇଥିଲା ।

ତା'ପରେ ସିନା ଅତି ସ୍ପଷ୍ଟଭାବେ ସେ ତାକୁ ଚହ୍ନିଥିଲା, ଯେମିତି ଚହ୍ନିଛି ତା'ର ଏ ହାତପାପୁଲିକୁ । ସେ ପଛକଥା ।

ଦୃଶ୍ୟ ବଦଳି ଯାଉଛି । ମାଳ୍ଟିଅନ୍ଧାର ବଦଳି ଯାଇଛି । ଚମକି ଆସୁଛି ଆଉ ଜଣେ । ମଣିଷ ନୁହେଁ, ମଣିଷପରି ଗୋଟାଏ ଛାଇ । ଜନ୍ତୁପରି କୁଦା ମାରି ମାରି ଆସୁଛି । ହାତରେ କ'ଣଟାଏ ଧରିଛି । "କୁଆଡ଼େ ଗଲୁ ବେ, ହେଇ ଶଳା—" ତା କାନ ଠିଆହୋଇ ଯାଉଛି, କାନମୁଣ୍ଡା ତାତିଯାଉଛି । ଆଗରେ ଦୁର୍ବଳ ବାଙ୍ଗର ହୋଇ ମଣିଷ ଫାଳେ, କୁରାଢ଼ିଟାଏ ଉଞ୍ଚେଇଛି । "କୁଆଡ଼େ ଯିବୁ ପାଇଚ ତତେ । ବନ୍ଧୁକଟାଏ ଧରୁ ବୋଲି ତୁ ଡରେଇବୁ ? ଜାଣିନୋଉଁ କାହାର ମାଇକିନା ?"

ଆଣ୍ଠୁଉପରେ ଗୋଟାଏ ଗୋଇଠାରେ ସେ ଲୋକଟା କଚ୍ଛଡ଼ ହୋଇ ପଡ଼ିଲା । ତା'ର ସବୁ କଥା ସବୁ ବଳ ଓଟାରି ହୋଇ ରହିଥିଲା ତା' ଟାଙ୍ଗିଆ ଧରା ହାତରେ । ତା'ପରେ କ'ଣ ହୋଇଗଲା ସେ ଜାଣେ ନାହିଁ; ଖାଲି ଆପଣା କାନକୁ ବେସୁରା ହୋଇ ଶୁଭିଥିଲା ଆପଣାର ଗୋଟାଏ ଗୁପି ଗୁପି ଗୁଡ଼ିଥିବା ଗମ୍ଭୀର ସାନ ଗର୍ଜନ, ଗେଧମାଙ୍କଡ଼ର ଗୋଟାଏ ଅଧା-ଖେଙ୍କା ପରି । ସେ ଦେହରୁ ହାତଉଠାଇ ନେଇ ଆହକନ୍ଦ ଆଡ଼େଇହୋଇ ଠିଆହେଲା । ପଲକ ନ ପଡ଼ୁଣୁ କାମ ସରିଯାଇଛି । ପିଣ୍ଡଭିତରୁ ଛଟପଟ ପ୍ରାଣଟା ମୁକ୍ତିପାଇ ଗ୍ଧଲିଯାଇଛି ।

କାନ୍ଧ ଉପରେ କାହାର ଥରଥର ହାତପାପୁଲି ଲଦି ହେଲା । ଅନାଇଁ ଦେଲା । ପ୍ଲାକୁର୍—ଜରି ଆସିଲା ପରି ପ୍ଲାକୁର୍ ଥରୁଛି । ଆହକନ୍ଦ ତା ବାହାକୁ ଜୋର୍‌ରେ ଝିଙ୍କି ହଲାଇଦେଇ ସେଇ ମୁର୍ଦାର ଆଡ଼କୁ

ହାତ ଦେଖାଇଲା । ବହେଁ ଝେଙ୍କନେଲେ । ଯେତେବେଳେ ଅନ୍ଧାର-ଭିତରେ ବଣୁଥାଏ ସେ ଟଳ୍ପିରେ ଗୋଟାଏ ଆଲୁଅ ଜଳୁଛି । ଲାଗୁଥାଏ କିଏ ଯେମିତି ଜଳ୍‌ଟେଣୁଟାଏ ଧରି ଏଣିକି ଆସୁଛି । ସେମାନେ ଅଟକି ନ ଥିଲେ । ଆଲୁଅ ଆସି ନଥିଲା । କିଛି ଅଡୁଆ ହୋଇନାହିଁ । ଅଳ୍ପ ଦୂରରେ ମୁଣ୍ଡିଆଟାଏ ଥିଲା । ତା' ସେପାଖେ ଅନେକା ଛୁଣ୍ଡିଛି ପାଞ୍ଚଶହଫୁଟ୍ ତଳକୁ; ସେଇଁଠି ଗମ୍ଭୀର ଖାଲଟାଏ । ମୁଣ୍ଡିଆ ପାଖରୁ ତଳର ଖାଲକୁ ଶବଟାକୁ ଫୋପାଡ଼ି ଦେଇଥିଲେ । ଖାଲି ଗୁପ୍‌କରି ଗୋଟାଏ ଶବ୍ଦ । ଯେମିତି ଅନ୍ଧାରରେ ଗୋଟାଏ ଜନ୍ତୁ ଡେଇଁପଡ଼ିଲା ।

ୟାକୁବ୍ ଆଉ ସେ ହାତ ଧରାଧରି ହୋଇ ଫେରିଆସିଲେ । ୟାକୁବ୍ ବାହାରକଲା ଗୋଟାଏ ମୋଟ ବାଉଁଶନଳ, ତା' ତଳେ ଗଣ୍ଠି; ଉପରେ ବେଉଡ଼ରେ ବାନ୍ଧିଲା । ଆବ୍‌ଦକଦ ତାକୁ ପାଟିରେ ଲଗାଇ ଝେଙ୍କ-ଦେଲା ।

ତା'ପରେ ବନ୍ଧୁକଟା କାନ୍ଧେଇ ବାହାରିପଡ଼ିଲା । ବୁଟ୍ ଜୋତାର ମଚ୍ ମଚ୍ ଯେମିତି ତା' ପଛେ ପଛେ ଗୋଡ଼ାଉଛି । ଆଗରେ ଅନ୍ଧାର ଭିତରେ ଫରଚ୍ଚ ଫରଚ୍ଚ ହୋଇ ସରୁବାଟ ଖୋଲି ଖୋଲି ଯାଉଛି । ଟିପ ଚଢ଼ୁଛି, ଖାଲ ଓହ୍ଲାଉଛି । କ୍ଷେତଜଗୁଆଳ ଭାଡ଼ ଉପରୁ ଶିଙ୍ଘା ଫୁଙ୍କୁଛନ୍ତି, ଢୋଲ ଡାପୁ ପିଟୁଛନ୍ତି, ଶୁଣୁଛି । ଦୂରରେ ମହାବଳ ରଡ଼ିଲା । ଆଉ ଠାଏ ପାହାଡ଼-ଢାଲୁରେ ହାଣ୍ଡି ଗୁଳିଗଲା ଶୁଭିଲା ।

ସକାଳକୁ ସେ ଆଉ ଗୋଟାଏ ଡ୍ରଇଙ୍ଗରେ ଦେଖିଥିଲା । ସେଠି ସାହେବ ଥିଲା । ଆବ୍‌ଦକଦ ସାହେବ ଆଗରେ ମଣିଷଖିଆବାଘ ବିଷୟରେ ଖବର ଦେଲା, କହିଲା ସେ ଠାବ କରିଛି । ସେପରି ଅନେକ ଭଲୋଟି ବାଘଙ୍କ ଇଲାକା ତାକୁ ଆଗରୁ ଜଣାଥିଲା । ସାହେବ ବସିଲାଠୁଁ ଉଠି-ଆସିଲା । ବହେଁ ଦି'ଦିନ ବୁଲିଲେ, ଗୋଟାଏ ବଡ଼ ବାଘ ପଡ଼ିଲା । ସାହେବ ତାକୁ କୋଡ଼ିଏଟଙ୍କା ଓ ନିଜର ପିନ୍ଧା ସ୍ୱେଟରଟା ଉପହାର ଦେଲା । ତା'ପରେ ସାତଦିନ ବିତିଲା କାମରେ । ଆପଣା ପୁରୁଣା ମୁକାମକୁ ନେଉଟି ଆସିଲା । ୟାକୁବ୍ ଥାଏ ।

ନିଶା ଅନ୍ଧାରରେ ଚମ୍ପା ଆସି ତା’ ଦୁଃଖ ଜଣାଇଥିଲା । ହାତ ଲମ୍ବନା । ମୁହଁରେ ଦୁଃଖ । ତାହାରଠୁଁ ଆଦିକନ୍ଦ ଶୁଣିଲା କେମିତି ଆଠଦିନ ତଳେ ରାତିରେ ତା’ ସ୍ୱାମୀ ବାଟବଣା ହୋଇ ଅମଡ଼ା ମାଡ଼ ଗାଁରୁ ଫେରିବ କ’ଣ ମୁଣ୍ଡିଆ ଦାଣ୍ଡରୁ ଖାଲ ଭିତରକୁ ଖସିପଡ଼ି ପ୍ରାଣ ହରାଇଛି । ଚମ୍ପା ବିକଳ ହୋଇ ଭେଁ ଭେଁ କରି କାନ୍ଦିଲା । କହିଲା, “ମତେ କେଡ଼େ ଶରଧା କରୁଥିଲେ । ସେ ଦିନ କ’ଣ ତ ଘୋଟିଥିଲା ! ଦି’ ପହରେ କୁଆଡ଼ୁ ଆସି ବାଇଆ ପରି ହେଲେ । ମାରିବେ ହାଣିବେ ପ୍ରାଡି କଲେ । ଡରରେ ଘରୁ ପଳାଇଲି । ତା’ ଉତ୍ତାରୁ ତ ଏଇଆ ! କିଏ ପାଙ୍ଗି ଦେଲା କି କ’ଣ । ନ ହେଲେ ମତେ କେବେ କିଛି କହନ୍ତି ନାହିଁ । ସେଦିନ ସେମିତି କ’ଣ ହେଲେ !”

“ମଦ ଖାଇଥିବ” ଆଦିକନ୍ଦ କହିଲା; କିନ୍ତୁ ତା’ ବରିଟା ସତେକି ମରିଯାଉ କହିଲା ।

ଆଦିକନ୍ଦ ତଳକୁ ମୁହଁପୋତି ଆନ୍ମେଇ ହୋଇ ଠିଆ ହୋଇ-ଥାଏ । ଚମ୍ପା ଆପଣା କାନିରେ ଆପେ ଲୁହ ପୋଛୁଥାଏ । ଆଦିକନ୍ଦ କହିଲା, “ଚମ୍ପା, ଘର ଜରୁରି କାମ ପଡ଼ିଗଲା । ମତେ ଅଇଖଣା ବାହାରକୁ ଯିବାକୁ ପଡ଼ୁଛି । ଉଠୁଛି ।”

ସେ ଚାଲି ଆସିଥିଲା । ତା’ପରେ କେତେ ଜାଗା, କେତେ କାମ, ଆଉ ଚମ୍ପା ସଙ୍ଗେ ଭେଟ ହୋଇନାହିଁ । ଠେଲାଠେଲି ହୋଇ କେତେ ଅଜଣା କେତେ ଅନ୍ଧାରଗୁହାରେ ଛପିଯାଇଛି । ଗୁଡ଼ି ଭିତର ହାକୁ ହାକୁ ରଗ ରଗ ହେଲେ ସମସ୍ତ ତାକୁ ଆଉଁଶି ଆଉଁଶି ଭଲ କରିଛି । ଯାହା ଦିନେ ସତ ଥିଲା ତାକୁ ମିଛ କରିଦେଇଛି । ମନେ ନାହିଁ । ତେଣୁ ତା’ ଘଟିନାହିଁ ।

କିନ୍ତୁ ଅସମ୍ଭାଳ ହୋଇ ମୁଣ୍ଡଟା ଭ୍ରମିଯାଉଛି କାହିଁକି ? ଆଗରେ ପେନ୍ଥ କିଏ ? ସେହି ନୋକଟା ତ ! କୁରୁହାଡ଼ ଉଞ୍ଚେଇ ମାଡ଼ିଆସୁଛି । ପଛେ ପଛେ ଆସୁଛି ଚମ୍ପା ।

ହଠାତ୍ ଆଦିକନ୍ଦ ବନ୍ଧୁକଟାକୁ କାନ୍ଧରେ ଥୋଇ ଟଳି ଟଳି ଆଗକୁ ଚାଲିଲା । ଆଗରେ ଅନ୍ଧାର ଦିଶୁଛି । ଲାଗୁଛି ତା’ ଜୋତାର

ମଡ୍‌ମଡ୍‌ ଫାଟୁଛି ଫାଟୁଛି ଶୁଖିଯାଉଛି । ସୁଜିଯିବାକୁ ପଡ଼ିବ । ଅନ୍ତ ବଉଡ଼ର । ଅନ୍ତ—।

ହାଉଯାଉ ଲାଗି ଯାଇଥାଏ । ବନ୍ଧୁକ ଠିଆକର ନଈବନ୍ଧ ଉପରକୁ ଉହୁର୍କି ପଡ଼ି କେତେ ଲୋକ ତଳକୁ ଅନାଇଁଥାନ୍ତି । ପାହାଚବାଟେ ଓହ୍ଲାଇ ଯାଇ ଆଉ କେତେ ଲୋକ ବନ୍ଧତଳେ ଜମା ହୋଇଥାନ୍ତି । ଗୋଟାଏ ଦୁର୍ଘଟଣା ଘଟିଯାଇଛି । ଗୋଟିଏ ବୁଢ଼ାଟିଏ ବନ୍ଧୁକ ଲାଇସନ ମିଆଦ ବଢ଼ାଇବାକୁ ଆଜ ତାରିଖରେ ଆସିଥିଲା ସେ କେମିତି ଅଣଦୁସିଆର ହୋଇ ନଈବନ୍ଧ ଦାଡ଼ଉପରୁ ତଳ ପଥର ଉପରେ ଖସିପଡ଼ିଛି । ଜଭ ଦ'ଆଙ୍ଗୁଳ ହେବ ପଦାକୁ ବାହାରିଛି । ଜୀବନ ନାହିଁ । ବନ୍ଧୁକଟା ଛୁଆଡ଼ ହୋଇ ଖଣ୍ଡେ ଦୂରରେ ପଡ଼ିଛି ।

ଆଉ ଟିକଏ ଆଗରୁ ସେହି ଲୋକଟି ଥିଲା ଆଦକନ୍ଦ ବଣ୍ଟାଳ ।

"ହେଇ, ପଳା ସେ ବନ୍ଧଦାଡ଼ରୁ । ଉଠୁଚ ?" ତଳୁ ବାଡ଼ ହଲାଇ ପୁଲିସି ଯୋଡ଼ିଏ ପାଟି କଲେ ।

'ଝଙ୍କାର' ଅକ୍ଟୋବର ୧୯୬୩



# ଚଢ଼େଇ

ବୈଶାଖରେ ଆରମ୍ଭ । ଦିନ ସାଢ଼େ ତିନଟାବେଳ । ଟିକିଏ ଖରା ବି ଜଳୁଛି । ସାମ୍ନାରେ ବାଁକୁ ଦୋ'ଟି କୃଷ୍ଣଚୂଡ଼ା ଗଛ, ଇଟାବର୍ଣ୍ଣର ଫୁଲ ଲଦି ହୋଇଛି, ମଝିର ମଝିରେ ଅଳ୍ପ ଫୁଲଏ ଫୁଲଏ ଗଜୁରି ଗଜୁରି ପତ୍ର । ଡାହାଣକୁ ପ୍ରକାର ପ୍ରକାର ନାଲିଫୁଲରେ ଗୁଡ଼ଣି ହୋଇ ବୁଗେନ୍‌ଭିଲିଆ ଗଛଗୁଡ଼ିଏ, ଲାଗୁଛି ସେସବୁ ବି ଜଳୁଛି । ଶଙ୍କର ମିଶ୍ର ଅନ୍ୟମନସ୍କ ହୋଇ ଚୁହିଁ ରହିଥିଲେ, ଅନୁଭବ କରୁଥିଲେ ଯେପରିକି ନିଆଁ ଲାଗିଛି; ସବୁ ଖାଲି ଜଳୁଛି । ଓଃ ! କି ବିଭୀଷିକା !

ହଠାତ୍ ମନେପଡ଼ିଗଲା, ସେଇ ଶ୍ରେଷ୍ଠ ଚଢ଼େଇଟି କାହିଁ ? ତା' କଥା ମନେପଡ଼ିଲା ମାତ୍ରେ ଖରା ତା'ର ଉପରେ ସତେ ଯେପରି ଝାଙ୍କି ହୋଇଗଲା । ଶୀତଳ ପାତଳ ଗୁଚ୍ଛ ସୁଲୁସୁଲିଆ ପବନ ଦେହରେ ବାଜିଲା, ଶୁଭିଲା ପାହାଡ଼ ଝରଣାର ଦୁଲୁ ଦୁଲୁ ଶବ୍ଦ, ଉପରେ ଡେଙ୍ଗା ଗଛମାନଙ୍କ ଉପରେ ହାଲୁକା ଶାଗୁଆ ଗୁଳ୍ମ ଆରେ କାଢ଼ି କାଢ଼ି ନାଲିଫୁଲ ସଜା ହୋଇଛି । ସ୍ଥାନେ ସ୍ଥାନେ ଉଜ୍ଜ୍ୱଳ ନାଲି ଲତା—ପଲାଶଫୁଲର ଦୋଳି ଚଳକୁ ଓହଳିଛି, ଆଗରେ ଏପାଖରୁ ସେପାଖ ସେପାଖରୁ ଏପାଖ ହୋଇ ଉଡ଼ିବୁଲୁଛି ସେଇ ସାନ ଚଢ଼େଇଟି । ଥଣ୍ଟଟି ନାଲି, ଦେହଟି ଚିକ୍କଣ ଇନ୍ଦ୍ରନୀଳ ବର୍ଣ୍ଣର, ଉଡ଼ିଲାବେଳେ ଦିଶେ ସେହି କଳାବର୍ଣ୍ଣର ଝିଲିକ । ହଠାତ୍ ଚଢ଼େଇଟି କୁଆଡେ ହଜିଯାଏ, ପୁଣି ଦିଶେ । ପୁଣି ହଜେ ।

ଏ ଦିନେ ତା'ର ସେହି ବର୍ଣ୍ଣ ।

ବର୍ଷାଦିନେ ବର୍ଷା ଥମିଥିଲାବେଳେ ହଠାତ୍ କେଉଁଠି ସେ ହାବୁଡ଼େ, ସେତେବେଳେ ସେ ଉଡ଼ନ୍ତା ଠିକ ଇନ୍ଦ୍ରଧନୁଟିଏ । ଦେହଟି

ସେହି ବର୍ଷର । ଶୀତଦିନ, ଯେତେବେଳେ ଦିନର ଆଲୁଅ ଦିଶୁଥାଏ ମ୍ଳାନ, ସେତେବେଳେ ତା' ଦେହର ବର୍ଣ୍ଣ ଉଜ୍ଜ୍ୱଳ ରକ୍ତ-କାଞ୍ଚନ ବର୍ଣ୍ଣ ପରି ।

ଯେତେବେଳେ ସେ ଦିଶେ, ସେତେବେଳେ ଉପୁଜାଏ ତାଙ୍କର କୁତୂହଳ, ବିସ୍ମୟ ଓ ଆନନ୍ଦ । ସେ ବସେ ନାହିଁ, ଶବ୍ଦ କରେ ନାହିଁ, ଏପାଖ୍ ସେପାଖ ଉଡ଼ିଯାଇ କୁଆଡ଼େ ଅନ୍ତର୍ହିତ ହୋଇଯାଏ । କିନ୍ତୁ ସେ ଲୁଚିଗଲା ପରେ ବହୁତ ବେଳଯାଏ ଶଙ୍କର ମିଶ୍ରଙ୍କୁ ଲାଗୁଥାଏ ଯେପରି କି ସେ ନୂଆ ଜୀବନରେ ଅଲଗା ପୃଥିବୀରେ ଅଲଗା ଅନୁଭୂତି ଭିତରେ ଅଛନ୍ତି, ଏଠି ତାଙ୍କ ପାଇଁ ସବୁ ଆନନ୍ଦମୟ । ସେହି ବିଶେଷ ଅନୁଭୂତି ତାଙ୍କ ଚେତନାକୁ ଆଚ୍ଛନ୍ନ କରି ରହେ କିଛିଦିନ ପର୍ଯ୍ୟନ୍ତ, ସେତେବେଳେ ନିତିଦିନର ଅଭ୍ୟସ୍ତ ଜୀବନ ବିତାଇଲା ବେଳେ ବେଳେ ଗୁଣୁଁ ଗୁଣୁଁ ଲାଗୁଥାଏ, ଲାଗୁଥାଏ ଯେ ତାଙ୍କ ଘରପାଖେ ଏ ଯେଉଁ ସଂସାର, ଏଠି ତାଙ୍କର ଯାହା ଯାହା ଇନ୍ଦ୍ରିୟ ଅନୁଭୂତି ସେ ବାସ୍ତବୀନ ।

ଏଠି ସେ ଖାଲି ସ୍ୱପ୍ନ ଦେଖୁଛନ୍ତି ଓ ଏସବୁ ମିଛିମିଛିକଥା ଓ ତାଙ୍କର ଜାଗ୍ରତ ବାସ୍ତବ ଅନୁଭୂତି ଆଉ କିଛି ? ପୁଣି କିଛିଦିନ ଗଲେ ସେଭଳି ଦ୍ୱିଧା ଓ ପ୍ରଶ୍ନର ଅବକାଶ ବି ଆଉ ଆସେ ନାହିଁ, ଜୀବନ ତା'ର ସାଧାରଣ ଗତିରେ ଗଡ଼ିଥାଏ । କିନ୍ତୁ ଯେତେବେଳେ ତାଙ୍କର କୌଣସି ବିଷୟରେ ସମସ୍ୟା, ଜଞ୍ଜାଳ, ମନସ୍ତାପ କି ଦୁଃଖ ବଳାଏ, ନୈରାଶ୍ୟ ମାଡ଼ିବସେ, ଲାଗୁଥାଏ ସତେ ଯେପରିକି ଆଲୁଅର ଶେଷ ଧାସକୁ ଲିଭାଇ ଦେବାକୁ ଘରଆଡ଼ୁ ଘୋଟିଆସିଲାଣି ମେଘ ଅନ୍ଧାର । ସେତେବେଳେ ହଠାତ୍ ପୁଣି କେମିତି ତେଜଉଠେ ଆଶା ଓ ବିଶ୍ୱାସ, ଲାଗେ ସବୁ ସମସ୍ୟା ଦୂର ହୋଇଯିବ ।

ମନ ଭିତରେ ଲୁଚି ଲୁଚି ରହିଥାଏ ଉତ୍କଣ୍ଠା ଯେ ପୁଣି ସେହି ବିସ୍ମୟକର ଆନନ୍ଦକର ମୁହୂର୍ତ୍ତିଟି ଆସି ପହଞ୍ଚିବ ଯେତେବେଳେ ତାଙ୍କ ଆଗରେ ସେହି ଚଢ଼େଇଟି ଉଡ଼ୁଥିବାର ସେ ଦେଖିବେ, ସେ ପୁଣି ଅନ୍ୟ କେଉଁ ସ୍ଥାନ, ଅନ୍ୟ କେଉଁ ବେଳ ।

ତା'ପରେ ମନକୁ ଯେତ ନେଇ କେବେ କେଉଁଠି ଦିଶିଯାଏ ।

ଶଙ୍କର ମିଶ୍ର ମନେ ମନେ ପଛକୁ ଗୁହ୍ନି ସ୍ମରଣ କରୁଥାନ୍ତି ଅଜ୍ଞାତରେ କେବେ ଓ କେଉଁ କେଉଁ ସ୍ଥାନରେ ସେ ସେହି ସୁନ୍ଦର ଚଢ଼େଇଟିକୁ ଦେଖିଥିଲେ । ସେ ତ ସାଧାରଣ ଚଢ଼େଇ ନୁହେଁ କି ସବୁଠି ମିଳେ ନାହିଁ । ଦିନେ ଲୋକାଳୟ ନଥିବା ଅଗନାଗିନ୍ ବଣରେ, ନତୁବା ଜଙ୍ଗଲରୁ ଉଡ଼ିଆସିଥିବା ସେହି ଚଞ୍ଚଳ ଚଢ଼େଇଟି ଅନ୍ୟ କେଉଁଠି କୋଠା ଅରମା ବାଟରେ ହଠାତ୍ ଦେଖାଦେଇଯାଏ, ତା'ପରେ ଲୁଚିଯାଏ, ତା' ବି କେବେ କ୍ୱଚିତ୍ । ଘରଆଡ଼ ନିର୍ଜନ ଓ ଚୁପ୍‌ଚାପ୍ ଥିଲାବେଳେ ହିଁ ସେ ଦିଶେ, ସେମିତି ସେତେବେଳେ ଅନ୍ୟ ଜନ୍ତୁ କି ଚଢ଼େଇ ବି ଦିଶନ୍ତି ନାହିଁ ।

କିନ୍ତୁ କେବେ ଦେଖିଥିଲେ ? ଶଙ୍କର ମିଶ୍ର ସ୍ମରଣ କରିବାକୁ ମନେ ମନେ କ୍ଳାନ୍ତିକର ପରିଶ୍ରମ କରୁଥାନ୍ତି; ତାଙ୍କୁ ହେଲାଣି ବୟସ ସତସ୍ତର, ଏକଦା ବଳିଷ୍ଠ ଅତି କର୍ମଠ ଶରୀର ବାରମ୍ବାର ବ୍ୟାଧିର ଆଘାତରେ କ୍ଷୟ ହୋଇ ହୋଇ ହେଲାଣି କ୍ଷୀଣ, ଦୁର୍ବଳ, ଅପାରଗ । ଏକଦା ନାନା ଜଟିଳ ସମସ୍ୟାକୁ ଆଗ୍ରହରେ ଅନାୟାସରେ ଖୋଲି ଖୋଲି ଦେଖିପାରୁଥିବା ମନ ଟିକିଏ ମାନସିକ ପରିଶ୍ରମ କରିବାକୁ ପଛେଇଯାଏ, ଅଳ୍ପ ଭାବୁ ଭାବୁ କ୍ଳାନ୍ତ ହୋଇଯାଏ, ସ୍ମରଣ ଶକ୍ତି ଦୁର୍ବଳ ଓ ଚଳମଳ । ଆଗେ ଜାଣିଥିବା କେତେକଥା ବି ମନେ ପଡ଼ୁନାହିଁ । ଶଙ୍କର ମିଶ୍ର କେତେବେଳେ ଭାବନ୍ତି—"ଏଇଆ ? ନା ତା' ବି ନୁହେଁ ପରା ?" "ହଁ ହଁ ଏଇଆ—ନା ନୁହେଁ, ମନେପଡ଼ୁ ନାହିଁ ।" ଶିଶୁର ବାଟ ଭୁଲନ୍ତି, ଟେଳିଁ ଟେଳିଁ ସ୍ୱପ୍ନରେ ବୁଡ଼ନ୍ତି, ତହିଁରୁ ନିଜ ଅଜ୍ଞାତରେ ଜୀବନ ଅନୁଭୂତିରୁ ଯାହା କିଛି ଭାସି ଭାସି ଉଠେ ।

କେବେ ଦେଖିଥିବା ସେହି ଶ୍ରେଷ୍ଠ ଚଢ଼େଇଟିକୁ ଆଶ୍ରା କରି ମନେ ମନେ ଟାଣି କରି ମୁଠେଇଧରି ସେ ଦେହପରି ସ୍ୱପ୍ନିଳ ଧ୍ୟାନରେ ମଗ୍ନ ରହିଲେ ଓ ଅଜ୍ଞାତକୁ ହେଜିଲେ; କେବେ କେଉଁ ସ୍ଥାନରେ କି ପରିବେଶରେ ସେ ତାକୁ ଦେଖିଥିଲେ । ଗୋଟିଏ ସ୍ଥାନ ପରେ ଅନ୍ୟ ସ୍ଥାନ, ନିଜ ଜୀବନର ନାନା ସମୟର ନାନା ଚିତ୍ର, ସବୁ ଉଏଁ ଆଉ ଲିଭିଯାଏ, ଧ୍ରୁବ ହୋଇ ଆଗେ ଆଗେ ଦୂରରେ ଦିଶୁଥାଏ ସେହି ଚଢ଼େଇଟି । ଦିଶିଗଲା

କେତେ କେତେ ଦୃଶ୍ୟ, ଅନୁଭବ ହେଲ କେତେ କେତେ ସ୍ମୃତି, ସୁଖର, ଦୁଃଖର, ପ୍ରକାର ପ୍ରକାର ଭାବର ଉଚ୍ଛ୍ୱାସ ତେଜଉଠିଲା, ଯେମିତି ଅକଳନ ଜଳବସ୍ତୁ ଉପରେ ଢେଉଟିମାନ, ପୁଣି ଦବିଗଲା, ହଜିଗଲା; ପୁଣି ଉଚ୍ଛୁଳିଗଲା, କେତେ ଭାବ କେତେ ରସ କେତେ ସ୍ୱରର ସଙ୍ଗୀତ ଝଙ୍କାର ଉଠିଲା, ପୁଣି ଶୂନ୍ୟ ହେଲା, ସବୁ ଶୂନ୍‌ଶାନ୍, ପୁଣି କେବେ, କେଉଁଠି ତାକୁ ଦେଖିଥିଲି ଭାବୁ ଭାବୁ ଆଶା ଆବେଗ କଅଁଳିଲା; ମନେପଡ଼ିଲା ଅନ୍ୟ ଦିନର ସ୍ମୃତି । ତା' ସଙ୍ଗେ ସଙ୍ଗେ ଶଙ୍କର ମିଶ୍ର ଦେଖିଗଲେ ନିଜ ଯୌବନ ଦିନଠୁଁ ପ୍ରୌଢ଼ତ୍ୱ ଓ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ନାନା ଅବସ୍ଥା; ସେତେବେଳେ କେଉଁଠି ହେଲେ ସେ ସେ ଚଢ଼େଇକି ଦେଖିଥିଲେ ।

ମନେପଡ଼ିଲା; ପ୍ରଥମେ ଦେଖା ଆଦ୍ୟ ଯୌବନରେ । ଆଦ୍ୟ-ଯୌବନ ସଙ୍ଗେ ସଙ୍ଗେ ଦେହରେ ଆସିଥିଲା ସ୍ୱାସ୍ଥ୍ୟ ଓ ବଳର ଜୁଆର; କ୍ରମେ କ୍ରମେ ଫୁଲି ଫୁଲି ବଢ଼ି ବଢ଼ି ଉଠିଲା; ଯେମିତି ସେ ଦେଖି ଆସିଥିଲେ ପିଲାଦିନଠୁଁ ପୁରୀର ସମୁଦ୍ରକୂଳରେ ଜୁଆର ମାଡ଼େ । ତେଜସ୍ୱାନ୍ ହୋଇ ବଢ଼ି ଚାଲିଲା ଯୌବନ; କେତେ ବଳିଷ୍ଠ କର୍ମଠ ହେଲା ତାଙ୍କ ଶରୀର । ମନରେ ସେତେବେଳେ କି ଶକ୍ତି, କି ପ୍ରଫୁଲ୍ଲତା, କି ସାହସ, କି ତେଜ, କି ଆଶା, କି ସ୍ୱପ୍ନ ! ସେହିପରି ବିତିଗଲା ପ୍ରୌଢ଼ତ୍ୱ, ସତେ ଯେପରି ସେ ଚିରଯୁବା । କାହାରିକି ଭୟ ନ ଥିଲା, କୌଣସି ପ୍ରତିବନ୍ଧକକୁ ହଟୁ ନଥିଲେ, ପରିଶ୍ରମ କରିପାରୁଥିଲେ ଅକ୍ଳାନ୍ତଭାବେ, ସବୁବେଳେ ଆଶା ବିଶ୍ୱାସ ଅତୁଟ ରହିଥାଏ । କେବେ ସେ ଜୁଆରର ଭଟ୍ଟା ପଡ଼ିଲା ଜଣାପଡ଼ିଲା ନାହିଁ, ଧୀରେ ଧୀରେ ପାହାଚେ ପାହାଚେ ତଳକୁ ତଳକୁ । ସେତେବେଳେ ବି କେବେ କେଉଁଠି ସେ ଚଢ଼େଇକି ଦେଖିଥିଲେ ।

ତା'ପରେ—ପାହାଡ଼ ଝରଣାର ବଢ଼ି ଯେମିତି ଛୁଟିଯାଏ; ପଥର ଓ ବାଲି ଉପରେ ଛୁଟିଯାଏ ପାଣି ଚକଚକ ସରୁ ଧାରଟିଏ; ସେ ବି କ୍ରମେ ଶୁଖିଯିବ ପରା—ସେମିତି ଆସିଲା ଏ ବେଳ; ଯେପରିକି ମଳିନ କ୍ଳାନ୍ତ ସୂର୍ଯ୍ୟାସ୍ତ; ଆଉ—

"କାହାର ଏ ହାଡ଼ଚମମୟ କ୍ଷୀଣ ଦେହ। ସରୁ ସରୁ ହାତଗୋଡ଼, ମରେ ଅବା ନର୍କ ବି; ପିଣ୍ଡଟା ଅଛି ଖାଲି ମୁଠାଏ ଖାଇବାକୁ ଓ ବ୍ୟାଧି ଦୁର୍ବଳତା ଅକ୍ଷମତାର କଷ୍ଟ ଭୋଗିବାକୁ। ଜୀବଟା ତଥାପି ସୁଆଦ ବାଉଁପାରେ ଓ କ୍ଳେଦରେ ସେତକ; କିଏ ଏଇଟା ?" ଶଙ୍କର ମିଶ୍ର ଭାବୁଥିଲେ।

ଭାବୁଥିଲେ—ଏଇ କ'ଣ ମୁଁ, ଶଙ୍କର ମିଶ୍ର ? ମୁହଁରେ ହସ ନଥାଏ, କେବେଠୁଁ ମୁଁ ହସିନାହିଁ ଟି ! ଆଗେ ପରା ହସର କୁହାଟ ଛୁଟୁଥିଲା ! କୌଣସି ବସ୍ତୁକୁ ବିଷୟକୁ ଆଗ୍ରହ ନାହିଁ, ସ୍ପୃହା ନାହିଁ, ସମସ୍ତଙ୍କଠୁଁ ଆଡ଼େଇ ଏକୁଟିଆ ନିଜକୁ ନିଜେ ଯେମିତି ଆମ୍ବିଳା ମୁହଁ କରି ବିରକ୍ତ ହୋଇ ସମୟ ଟାଳି ଯିବାକୁ ମନ ଡ଼ାକୁଛି। ନିଜକୁ ଭାବୁଛି ଏକୁଟିଆ ଅସହାୟ ଅଥର୍ବ ବୁଢ଼ାଟିଏ, ସତେ ତ ! କିଏ ବୁଢ଼ାଟା ମୋ ଆଗରେ ? ନା-ନା-ନା—ସେ ମୁଁ ନୁହେଁ, ମୁଁ ତ ଶଙ୍କର ମିଶ୍ର, ଆଶା, ଉଦ୍ଦୀପନା ବଳ ସାହସ ହସ ଆନନ୍ଦର ଭଣ୍ଡାର। ସବୁ ଭିନ୍ନେ ଠିକଣାରେ ଖୋଜୁଛି ବୁଢ଼ା, ଏଠି ସେ ନାହିଁ, ଏଠି ମୁଁ, ମୁଁ ଶଙ୍କର ମିଶ୍ର, ଭୁ ଯା ଯା ଯା—

ଶେଷଥର କେବେ ସେ ଗଡ଼େଇକି ଦେଖିଥିଲେଟି ? କାଲି ପରି ଲାଗୁଛି। ହଁ; ସାତବର୍ଷ ହେଲାଣି ପରା। ସେଥର କହିଲେ ମାଳମାଧବ ଦେଖି ଯାଉ ଯାଉ ନୟାଗଡ଼ ଭିତରେ ଠାଏ ନିଘୁଞ୍ଚିଆ ଜଙ୍ଗଲରେ। କାହିଁଟା ରଖା ହୋଇଥିଲା ଡାକବଙ୍ଗଳା ହତାରେ ଓ ମୁଁ ସେପାଖ ବଣରେ ଏକୁଟିଆ ବୁଲି ବୁଲି ଏଣେତେଣେ ଉଣ୍ଡୁଥିଲି, ଦିନ ବୁଡିଟା ବାଜିଥିବ। କିନ୍ତୁ ସେ ସେଠିକା ବାସିନ୍ଦା ନୁହେଁ, ନିଶ୍ଚୟ ଉଡ଼ି ଉଡ଼ି ଆସିଥିବ ବାଲିଗୁଡ଼ା ମାଳ ଅଭ୍ୟନ୍ତରରୁ ଦଣ୍ଡକାରଣ୍ୟ ଅରଣ୍ୟ ବାଟେ। ସେଇପଟେ ତା' ଘର ଓ ଦକ୍ଷିଣରେ, ଉତ୍ତରରେ ଯେତେ ଯେତେ ଉଚ୍ଚ ପର୍ବତମାଳ ଅଛି ସେଇଠି। ପୁଣି ମୁଁ ଯିବ ସେଇସବୁ ମାଳକୁ। ମୁଁ ସେଠି ଯେତେ ଯେତିକି ପ୍ରକାର ପ୍ରକାର ମୂଲ୍ୟବାନ୍ ଧାତୁଦ୍ରବ୍ୟର ଖଣି ଖୋଜି ଖୋଜି ସନ୍ଧାନ କରିଥିଲି ସେ କାମ କ'ଣ ପୂରା ସରିଲାଣି ? ଆହୁରି ବହୁତ ବାକି ଅଛି ଯେ। ପୁଣି ଯିବ ଦେଖି କାମରେ, ସେଇଠି ଅରନାଗି

ବନସ୍ତ ଭିତରେ ହାବୁଡ଼ବ ପୁଣି ଯେହ୍ନ ଚଡ଼େଇ, ସାଳଗଛ ମୂଳେ ନିଃଶବ୍ଦ ନାଷ୍ଟନ ହୋଇ ମୁଁ ଠିଆହୋଇ ରହିଯିବ ।

—ବେଳେବେଳେ ବଣୁଆ ହାଣ୍ଡ ଯେମିତି ଠିଆ ହୋଇଯାଏ ଓ ତାକୁ ଦେଖି ପାହାଡ଼ଚଡ଼ାର କ୍ଲାନ୍ତି ଭୁଲିବ, ମୋର ଖାଳ ସରସର ମୁହଁରେ ବାଜୁଥିବ ସୁଲୁସୁଲିଆ ପବନ । କୁରେଇ ଫୁଲର ବାସ୍ନାରେ ଭରି ଭରି, ଆଉ କେତେ ସଜ କେତେ ଶୀତଳ ! ସାଙ୍ଗର ଲୋକେ ? ସେ ତ କେତେ ପଛରେ ଧଇଁସଇଁ ହୋଇ ଆସୁଥିଲେ କେବେ କିଏ ଗୁଳିପାରିଛି ମୋ ସଙ୍ଗରେ ପାଦପକାଇ ?

ଦିଶୁଥାଏ, ତେଉ ପରି ପାହାଡ଼ମାଳ । ପାହାଡ଼ ଉପରେ ପାହାଡ଼; ତା ଉପରେ ତା ଉପରେ, ତା ଉପରେ ସମାନ ପରି ଖଞ୍ଜା ହୋଇଛି ।

ମନରେ ଗୋଟାଏ ଉଲ୍ଲାସର ତାଣ ।

ଆଁଟିଏ କର ବୁଢ଼ା ଶଙ୍କର ମିଶ୍ର ଦାଣ୍ଡପିଣ୍ଡାରେ ଚୌକିରେ ବସି କାନ୍ଥକୁ ଆଉଜି ଢୁଲେଇ ପଡ଼ୁଥିଲେ ।

'ସମାବେଶ' ପୂଜାସଂଖ୍ୟା ୧୯୮୫



# ଖଲିଫା

ଖାଲି ପାଦ ଖରାରେ ଚାଲି ଚାଲି ଆଚାର୍ଯ୍ୟ-ବିହାର ପଟୁ ପ୍ୟାରେଡ୍ ପଡ଼ିଆକୁ ଆସିଥିଲେ। ଅଗଷ୍ଟ ପନ୍ଦର, ସକାଳ ସାଢ଼େଆଠ ଘଣ୍ଟା, ଲୋକ ଆଉ ପଟାଳି। "ଓଃ! ଏତେ ଲୋକ!" ଚାହିଁଦେଇ ଆଗ ସେ ଭାବିଲେ। ଇଚ୍ଛା ହେଉଥାଏ, ପଡ଼ିଆର ସେ ପୂର୍ବପଟେ ଲୋକ ନଥାନ୍ତେ, ଅଥଚ ଶୂନ୍‌ଶାନ୍ ହୋଇ ନଥାନ୍ତା, ତାଙ୍କ ନିଜ ରୁଚିମାଫିକେ ଅଳ୍ପ କେତେଜଣ, ଯାହାଙ୍କ ଚେହେରା ଓ ପୋଷାକ ତାଙ୍କୁ ଭଲଲାଗନ୍ତା, ସ୍ୱର ଓ କଥା ତାଙ୍କ କାନକୁ ସୁନ୍ଦର ଶୁଭନ୍ତା, ପୁଣି ସ୍ନେହ ବି, ତାଙ୍କ ପ୍ରତି ଯାହାଙ୍କ ବ୍ୟବହାରରେ ଥାଆନ୍ତା ବିନମ୍ର, ସୌଜନ୍ୟ, ଭକ୍ତି, 'ମନ ଯାହା ଲୋଡ଼େ' ସେଭଳି, ଯାହାଙ୍କ କଥାବାର୍ତ୍ତାରୁ ସେହିଭଳି ମନ୍ତବ୍ୟ ଓ ମତ ମିଳନ୍ତା ଯାହା ମତେ ଯେପରି ତାଙ୍କ ନିଜର। ଆଉ—ବସି ପ୍ୟାରେଡ୍ ଦେଖିବାକୁ ଅନ୍ତତଃ ତାଙ୍କ ପାଇଁ ଥାନ୍ତା ଗୋଟିଏ ଚଉକି, ତଳିରେ ଫୋମ୍ ଗଦି, ଛାଙ୍କୁଣିରେ ଛାରପୋକ ନଥାନ୍ତେ। ମୁଣ୍ଡ ଉପରେ ଥାନ୍ତା ଛାଇ ଟିକିଏ। କିନ୍ତୁ ଏଠି ତ ଦଳାଦଳି, ପେଲାପେଲି, ଠେଂଗାଠେଂସି ରାଜଧାନୀ ଭୁବନେଶ୍ୱରର ଏକନମ୍ବର ହାଟ। କିଏ କାହାକୁ ଚିହ୍ନେ? କିଏ କାହାକୁ ବାଟ ଦିଏ? ଖାଲି ମଣିଷ-ମଣିଷ ଠେଲାଠେଲି ନୁହେଁ, ମଣିଷ-ସାଇକେଲ ବି। ଧାଡ଼ି ଧାଡ଼ି ସାଇକେଲ୍ ମଝିରେ ମଝିରେ ସାଇକେଲ ଅନ୍ଧରେ କନ୍ଧରେ ସାଇକେଲ। ପଶିବାକୁ ଚେଷ୍ଟା କଲାବେଳକୁ ପିଠିରେ କାହା ସାଇକେଲ ହ୍ୟାଣ୍ଡେଲ୍ ଗେଞ୍ଚ ହେଉଛି, ଆଞ୍ଜୁଡ଼ୁଛି, ଆଖିରେ ବାଜୁଛି ନ ବାଜୁଛି କାହା ଛତାକାଠିର ଅଗ, ଗୋଡ଼ରେ ବାଜୁଛିସାଇକେଲ ପେଡ଼ାଲ ଅଗ ଓ ଦାନ୍ତ, ତାଙ୍କର ଗୋଟିଏ ପାଦକୁ କିଏ ଆଉଜଣେ କିଏ ନିଜ ପାଦତଳେ ଜବତ ରଖିଲାଣି।

“ଏ ବାଇଆ, ଅନା ଟିକିଏ ମତେ”, ମନ କହୁଛି, “ଦେଖିଟି ଦେଖ୍ ମୋ ବାଳ ପାଚିଲାଣି, ପେନ୍‌ସନ୍‌ଆ ବୁଢ଼ା ଲୋକ, ଅଠାବନ ବର୍ଷରେ ପେନ୍‌ସନ୍ ନେଇ ଗୃହବର୍ଷ ହୋଇଗଲାଣି । ଆରେ ତମେ ସବୁ ଆମର ପିଲା ମ, ମୋର ନହେଲା ମୋ ବୟସର ଆଉ କାହାର । ଆରେ ଅର୍ଦ୍ଧାଟା ପର ଧ କହୁଣି ଫାଡ଼ିକେଇ ବାଟ ଓଗାଳନ୍ତୁ ଗୁଡ଼ ଦେ ଟିକିଏ ମ ! କେତେ ଡେଙ୍ଗାଟା ହେଇଛ ମ, ଯୋଧା ଦେହବ । କଳା ମିଚିମିଚ, ମୁଣ୍ଡ ବାଳ ବେକତଳକୁ ଓହଳଛି, ତଳକୁ ମୋଡ଼ମୋଡ଼କା, ଲମ୍ବ ଲମ୍ବ, ପିଠିଟା ଆଲମାରି ପଟ୍ଟଆନ୍ତ, ଅଣ୍ଟାରୁ ପିନ୍ଧ ତଳକୁ ଦପାଖ ବହଳ, ଓସାର, ଓମ୍ପିଲ୍ । ପିନ୍ଧ ଉପରେ ଦ'ଦଟା ପକେଟ, ଚକାଳଆ-ନାଳ ପ୍ୟାଣ୍ଟ୍ ଉପରେ ନାନା ଚସ ଅଙ୍କା ହୋଇଥିବା ନାଳଗ୍ମ ଛିଟର ହାଓ୍ବାନ ।

ଏଲଟା ବୋଧେ ପଡ଼ାପଡ଼ି ଘରେ ଷ୍ଟୁନ୍, ପୋଲରେ ଖାଇ ଗଣ୍ଡି ବାନ୍ଧିଗଇଛି । ଫୁଲଫାଙ୍କିଆ ବୁଲୁଛି ।

ନା, ବେଟାଣ୍ଟ କ ବଡ଼ ଅଫିସରର ପୁଅ ହେବ, ଗୋଟା ବାରଟଙ୍କା ଷୋଳଟଙ୍କା ଦେଇ କୁକୁଡ଼ା କଏ ଖାଇବ ? ତା ବାଏଁ ଡାହାଣେ ଖଦ୍ଦାଖନ୍ଦି, ତା'ର ଡାହାଣ ବାହା କରରେ ଟିକିଏ ଫାଙ୍କ । କିନ୍ତୁ ମୁହଁ ଯୋଖି ଯୋଖି ସେ ପୁଣି ଆଉକର ଫାଙ୍କ ରଖୁଛି, ତା ଗଣ୍ଡିଟା ଆସ୍ତେ ଝାଙ୍କି ଯାଉଛି ଡାହାଣକୁ ବାଁକୁ । ନବୁଜ ମଣିଷ କାହୁଁ, ମଣିଷ ଭଲ ଅନ୍ତ ଆରେ ପଡ଼ିଲ ।”

କହୁଥିଲେ ମନେ ମନେ । ଭୁଣ୍ଡାରେ ଉଁ ନାହିଁ ଚୁଁ ନାହିଁ । ସେ ଏ ଯୁଗର ଟୋକାଙ୍କୁ ଡରନ୍ତି, “କଥା ପଦକେ ଇଜତ ଯିବ । ଇଜତ୍ ହିଁ ତ ସବୁ । ଆଲେ ସଖି ଆପଣା ମହତ ଆପେ ରଖି । ଉପାୟ ତ ନାହିଁ । ଘୁା ଘର କୋଉଠି ? ବଡ଼ଗଡ଼ କ ପୁରୁଣା ଭୋବନେରେ କ ପଟିଆ— ପେୁ ଓଡ଼ିଆ କ ତେଲୁଗୁ କ କ'ଣ ?”

ଏତେ ମଣିଷ ଭିତରୁ ତାର କଥା ସେ ଭାବୁଥାନ୍ତି କୁତୁହଳରେ, ସେ ତାଙ୍କ ବାଟ ମଝିରେ କାହିଁ, ଯେଉଁଠି ଟିକିଏ ଜଳାର ସମ୍ଭାବନା ଦିଶୁଛି । ଜଳା ନଥିଲେ, ସମ୍ଭାବନା ନଥିଲେ, ସେ ହୋଇଥାନ୍ତା ତାଙ୍କ

ଦୃଷ୍ଟିରେ ଅନନ୍ତମୟ, ଧ୍ରୁବ, ଅଟଳ, ସ୍ଥିର ହୋଇଥାଏ କି ସୂର୍ଯ୍ୟ ହୋଇଥାଏ ସେଥିପାଇଁ ଆଉ କୁତୂହଳ ନଥାଏ।

ଖାଲି ପାଦ ଏକାସଙ୍ଗେ ଝାଳ ଝରଝର, ଧଇଁସଲି ଆଉ ଉଦ୍‌ଭ୍ରାନ୍ତ ହୋଇଯାଉଥିଲେ, ତାଙ୍କ ଉତ୍କଣ୍ଠା ଆଉ ବେଶୀ ହେଉନଥିଲା, ସତେ ଅବା ତାଙ୍କ କାନରେ ଗର୍ଜି ପଡ଼ୁଛି, ଆଗରେ ଏ ଜାଗା ବଙ୍କଟଙ୍କରେ ନଷ୍ଟ ମରୁଛି, ଯେ ମନ ଆଶ କରୁଛନ୍ତି ଏଇଠି ମୁହଁ ବଢ଼ାଇ ସେ ଫୋରେଷ୍ଟ ଦେଖିବେ। —ଏଇ ମୁହୂର୍ତ୍ତରେ, ନହେଲେ ନିରାଶାରେ ଲଜ୍ଜାରେ ସଢ଼ି ଯିବେ, ଏଇଠି ଏମିତି ଠିଆ ଠିଆ ପ୍ରାଣଟା ଠୋ'କରି ଗୁଡ଼ିଯିବ। ଲାଗୁଛି ବାଷଠି ବର୍ଷର ଏଇ ଜୀବନ, ହନ୍ତସନ୍ତ ଦହଗଞ୍ଜ ହାଲିଁପାଇଁ, ହାତ ପିଠିରେ ଲୁହ ପୋଛି ପୋଛି, ଠୁକୁରୁ ଠୁକୁରୁ ପାଦେ ପାଦେ ଆଗକୁ ଚାଲି ଚାଲି— ଯେପରି ବାରମ୍ବାର ଠିଆ-ପଡ଼ା ଚଢ଼ା-ଖସା ଅସଫଳତା ଭିତରେ କ୍ଲାନ୍ତ ଭିତରେ ପଛରୁ କିଏ କଅଁଳ କହି ଉତ୍ସାହ ଦେଇ ନେଇ ଲାଗିଛି "ଚାଲି ଚାଲ—ଚାଲି ଚାଲ", ଅଟକ ନାଇଁ କେତେ ଆଗୁଡ଼ି ଯାଗୁଡ଼ି ଗୋଟେଇ ଗୋଟେଇ—ଛୁଣ୍ଡାକନା, ଭଙ୍ଗାବୋତାମ, ଚକୋଲେଟ୍ ଜରି, ଚେନ୍ନାଲ ମଞ୍ଜି, ଭଙ୍ଗା ଡବା, ଛୁଣ୍ଡା ଛବି—ଗୋଟେଇ ଗୋଟେଇ ସାଇତି ସମ୍ଭାଳି, ହଜେଇ ଦେଇ, ହରେଇ ଦେଇ, ଚାଲି ଚାଲ ଚାଲି ଚାଲ—ଏଇ ଚରଣତର ଦୁଆର ମୁହଁ ବାଟେ ଗଳିଯିବାକୁ ଏବେ ଜଣା-ଦେଖାଶୁଣା, ବେଙ୍ଗ-ଢଆଁ, ଓ ଯେବେ ନହେଲେ ନଚଳେ, ଯେମିତି ପତଙ୍ଗ ଆଗରେ ଯାଏ ଶଳିତା ଧାସ।

ଛାତି ଦୁମ୍‌ଦୁମ୍, କପାଳରୁ ଝାଳ ବୋହି ନଦୀ ଆଗରେ ଝୁଲୁଛି, ଚଷମା ଦାଢ଼ ଉପରେ ନଗୁଡ଼ୁଛି। ମନ ଭିତରେ କହୁଥାଏ, ଏଇକ୍ଷଣକା ଏ ଲକ୍ଷ୍ୟକୁ ଯାଇ ନ ପାରିଲେ ଜୀବନ ବୃଥା।

ଜିଦ ଅଛି, ଜୋର କରିବାକୁ ବଳ ନାହିଁ। ସେ ମୋଟେ ପାଞ୍ଚଫୁଟ୍ ଦେଢ଼ଇଞ୍ଚ ଉଚ୍ଚ, ଓଜନରେ ଶହେ ଦଶପାଉଣ୍ଡ। ଗୁଳକର-କୋଠାରେ ଚଉକି ଆଉ କଲମର ଜୋରରେ ଆଫେ ଖାତିର ମିଳେ ଚଳୁଆ ଲୋକଙ୍କଠୁ, ଚଳୁଆ ମଣିଷ ଯେତେ ଷଣ୍ଢାଳିଆ ଭେଣ୍ଡା ହୋଇଥାଉ, ବେକ ନୁଆଏ, ଲାଙ୍ଗୁଡ଼ ଘାକେ। ଘରେ କେହି କାହା କଥା ମାନନ୍ତି ନାହିଁ,

ରଗିବାକୁ ଗର୍ଜିବାକୁ ଫୋପାଡ଼ଲା ପରି ମାରଗୋଡ଼ାଇଲା ଭଳି କଥା କହିବାକୁ ସମସ୍ତିଙ୍କର ସମାନ ଅଧିକାର, 'ପରିବାରର ମାଲିକ' ବୋଲି ସନ୍ତୋଷରେ ନିଶ୍ୱାସ ନେବାକୁ ଆଗ ଅଲେଖା ସନ୍ତ ସେଇଥି ସେ ମାନିଛନ୍ତି । ପିଲାଏ ରୋଜଗାରିଆ ହୋଇ ଯୋଡ଼ ଯୋଡ଼ ହୋଇ ଉଡ଼ିଗଲେ, ସବା ସାନଟି—ଗଙ୍ଗୁ, ସେ ବି ରୋଜଗାର କଲା, ବାହା ହୋଇ ନାହିଁ ଏକା ସେ—ସେଠି ଖଲି ପାସଙ୍କର ପ୍ରତିପତ୍ତି ଆହୁରି କମିଲା, ପେନ୍‌ସନ୍ ନେଲା ପରେ ଘରେ ବସି ଜୀବନ ବଡ଼ ସରଳ—ଘର ଧନ୍ଦା କରିବା, ଝଟେଇବାଠୁଁ ରାନ୍ଧିବାଯାକେ ସବୁଥିରେ ସାହାଯ୍ୟ କରିବା, ସଉଦା ଆଣିଦେବା, ଗଙ୍ଗୁ କହେ ତା'ର ସମୟ ନାହିଁ । ଘରେ ବନ୍ଧୁମାନଙ୍କୁ ଧରି ଆଡ୍ଡା ଲଗେଇଲେ ବି କହେ ଯେ ତା' 'ବିଜ୍‌ନେସ୍' ପାଇଁ ଏସବୁ 'କଣ୍ଟାକ୍ଟ' ଅତି ପ୍ରୟୋଜନ, ଆଉ କେବଳ ଦୋ'ଟି କାମ ସକାଳେ ସଞ୍ଜେ ଘରଯାଙ୍କ ସଙ୍ଗେ ବାଦବୁଦିଆ ହୋଇ ସ୍ୱରକସରତ, ବେଳେବେଳେ 'ଧର୍ମଗ୍ରନ୍ଥ' ପଢ଼ା, କେଉଁ ବାବାଙ୍କଠୁଁ ମନ୍ତ୍ର ଉପଦେଶ ଓ ଈଶ୍ୱରଭକ୍ତ ସତ୍‌ମନୁଷ୍ୟର ଆଚରଣ ବିଷୟ ଶୁଣିବାକୁ ଯିବା, ସେଠି ଆଖିବୁଜି ଠା' ମାଡ଼ି ବସି ରହିଲେ ଅନ୍ତତଃ ଚେତନା ବୁଜି ହୋଇଯାଏ, ଆଖି ବି, ବେଳ ପଳାଏ ବାଧେ ନାହିଁ । "ବାପା, ଏ ମିଥ୍ୟା ଜଗତ୍ ମାୟା ଜଗତ୍, ଯାକୁ ମୋହ କଲେ ଦୁଃଖ", ବାବାମାନେ ବୁଝାନ୍ତି । ପରିଆ ବୋଉ ଯେତେବେଳେ ବିଜ୍ଞପ୍ତି ବିରୋଧ ଉଗାଳୁଥାନ୍ତି—"ଜୀବନଯାକ ମୋ ହାଡ଼ ମାଉଁସ ଝାଳ ରକ୍ତ ଚଟିକରି ଖାଇଲ । କାମ କରଇ କରଇ ମୋ ନାକ ଘଷୁରିଲା । ମୋ ପେଇଁ କରିଚ କ'ଣ ? ମନେ ଦେଇଚ କ'ଣ ? ନମରି ପାଇଁ ତ ସବୁ ସାରିଲ, ମୁଁ ନାଇଲି ନା ଖାଇଲି ନା ଯାଇଥିଲି ? କେହି ନାଇଁ, ଜଗନ୍ନାଥ ବୁଝିବେ । ସବୁ ଭସ୍ମ ହୋଇଯାଉ, ଜଳଯାଉ ପୋଡ଼ଯାଉ—", ଆଉ ରେଡ଼ିଓ ଷ୍ଟେସନର ଦୈନନ୍ଦିନ 'ବିଶେଷ ନିର୍ଦ୍ଦେଶ' ଭଳି ଦିନକୁ ସେ ଅନ୍ତତଃ ଦି'ଥର ତାଙ୍କର ଏ ବିଶିଷ୍ଟ କାର୍ଯ୍ୟସୂଚୀ ଶୁଣାନ୍ତି । ଖଲି ପାସ ବାବାଙ୍କ କଥା ଭାବନ୍ତି । ଖସାଇବାକୁ ଚେଷ୍ଟା କରନ୍ତି, ଖାପେ ନାହିଁ, ତଥାପି ଆଶ୍ୱାସ ଦିଏ । ପରିଆ ବୋଉଙ୍କ ଲାଗି ସେ ନିର୍ଦ୍ଦେଶ ମନ୍ତ୍ର ଅବା ଅମୃତ ରସାୟନ—ଆମିଷକ୍ ଅନ୍ଧାରରେ ଛିନ୍ନ ଦାଢ଼ୁଆ ହାଡ଼ୁଆ ଶରୀରଟିଏ ତାଙ୍କର, ଦେହର ଜକଜକ କଳା ମାରସ ଖଇରିଆ ଦିଶିଲାଣି, ଉପର ପାଟିର

ହାନ୍ତକ ଗଳଣି, ଭଳପାଟିରୁ ଯେତେଟା ଅଛୁ ଚନ ଗୁଣ୍ଡି ପାନରେ ତା ମଡ଼ିଆ କୋଣ ହୋଇଯାଇଛୁ, ଦାନ୍ତଗୁଡ଼କ ଲମ୍ବ ଲମ୍ବ ଦଶୁଛି, କେତୋଟି ଏପଟ ସେପଟ ହୋଇ ବାହାରକୁ କୋଳେଇ ରହିଛୁ । କିନ୍ତୁ ଭାଷଣ ବେଳେ ତାଙ୍କଠି ପୂରଉନ୍ନତ ଆଶ୍ଚର୍ଯ୍ୟପ୍ରକାରେ ବଳ, ତେଜ, ଫୂର୍ତ୍ତି, ମୁହଁର ମାଂସପେଶୀ, ହାତ, ଗୋଡ଼, ଦେହ ଏତେ ଚଞ୍ଚଳ ଚଞ୍ଚଳ ଏତେ ପ୍ରକାର ଅଙ୍ଗଭଙ୍ଗୀ ଦେଖାଯାଏ ଯାହା ତାଙ୍କଠି ଅନ୍ୟ ସମୟରେ କଳ୍ପନା କରିହେବ ନାହିଁ । ତା'ପରେ ସେ ବକ୍ତୃତାରେ ଲମ୍ଫିଯା'ନ୍ତି "ମରେ ମାଟି ଫିଟାନା, ଘାଟି ଫିଟାନା", ମୋ ମୁଣ୍ଡ ବୋଲ ବ'ଣ ହୋଇଯାଉଛି । ଆଜି ଗଙ୍ଗା ଥିଲେ ବୋଷବୁଆ ଆଖିରେ ତା' ବାପାଙ୍କୁ ଅନାଇଁ କହେ "ତୁମେ ତାଙ୍କୁ ଖାଇଦେଲ, ଖାଅ, ମନସ୍କାମନା ପୂର୍ଣ୍ଣ କର ।" ଅପରାର୍ଧୀ ପରି ଠିଆ ହୋଇ ସେ ସତୀମୁଖ ଦର୍ଶନ କରନ୍ତି, ଦେଖନ୍ତି ଆଖିବୁଜା ମୁହଁଟି ଉପରେ କ ଆନନ୍ଦକର କ୍ଳାନ୍ତି ଓ ତୃପ୍ତିର ଛବି, ଏ ତ ଚାହାଁ ଚାହାଁ ।

ଘରେ ସେ ମାଡ଼ମକଟ ପ୍ରତିଷ୍ଠା ପାଇବାକୁ ଖୋଜ ନ ଥିଲେ, ବେଳେବେଳେ ଭାବୁଥିଲେ—ସେଭଳି ପ୍ରତିଷ୍ଠା ମିଳେ ଦରକୁ, ତାଙ୍କୁ ବି ମିଳିବ ସେ ମଲେ । କିନ୍ତୁ ବାହାରେ—ସେ ଖୋଜୁଥିଲେ । କାରଣ ଅନୁଭବ କରୁଥିଲେ ତା' ଗଳ୍ପ ସୁଖ । ପେନ୍‌ସନ୍ ପାଇଁ ଟ୍ରେଜରୀକୁ ଗଲେ ଦରବୁଢ଼ୀ ଟ୍ରେଜରି ଚପରାସୀ ହାତରେ ତେଲ ଦେଇ ମୁହଁ ଉପରେ ଅଧାକବାଟି ତେଲ ଦେଇ ଚେର ଚକାଏ । କହେ "କାଇଁକି ଗଣି ଆଉତ ହୋ ବାବୁ, ମନା କଲେ ଶୁଣୁନ ? ଖାଲି ବଢ଼େଇ ନ ଦେଇ ତେଲ ପଶୁଚ । କଅ ।" ଉଡ଼ବ ଦେଲେ ପେନ୍‌ସନଆମାନେ—ଜନସୁବକ, ଚପରାସୀ, ଭରନ, ଅଫିସର, ଗ୍ରେଟିଆ ଘରେ ଧକାଧକ ପେଲାପେଲ ଠେଲାଠେଲ ହୁଅନ୍ତି । ଚପାଣପିରେ ଗ୍ରଡ଼ରୁ ପବନ ଚଳାଏ, କେମିତ ଠିଆ ହୋଇଥାନ୍ତି ଘଣ୍ଟାଏ ଦ'ଘଣ୍ଟା, ପବନ ନାହିଁ, ପଙ୍ଖା ନାହିଁ, ପାଣି ନାହିଁ, ମଝିରେ ମଝିରେ ଲୁହ ଧମକ ଶୁଭେ କେଉଁ ଚପରାସୀ କ କେରାଣିକର କ ଟ୍ରେଜରି ଅଫିସରଙ୍କର—"କୁଆଡେ ସବୁ ମାଡ଼ ଆସୁଛନ୍ତି । କାମ କରେଇ ଦଉନାହାନ୍ତି ।" ଖଲ ପାଦ ବନ୍ଧକାଳ ଛକ କରୁଥିଲେ, ଆଖି ବାନ୍ଧୋଇ ଯାଉଥିଲ, ଆତ୍ମମର୍ଯ୍ୟାଦା ଧୂଳି ହୋଇଯାଉଥିଲ । କେତେବେଳେ କାଏ ପେନ୍‌ସନଆ ବଗରେ ପାଗଳ ପରି ଚଳାଧ କରଉ, ରହେ,

ଯେତେବେଳେ ଖଞ୍ଜି ଦେଖି ଆଉମାନେ ନିଜେ ଯନ୍ତ୍ରୋପନ୍ତ ଧରାପଡ଼ା ହୋଇ ହୋଇ ଯାଆନ୍ତି କର୍ମସ୍ଥଳୀଙ୍କ ମନ ଖୁସି କଲେ ଆପଣା କାମ କାଳେ ଆଗ ହେବ କଳ୍ପନା କରି ଚାଲି ଧରନ୍ତି "ଓଃ ! ଆମେ ଶାନ୍ତ ଶୃଙ୍ଖଳିତ ହେଲେ ପିନା ଅଫିସର କାମ କରନ୍ତେ, ଆମେ ତ ଉଚ୍ଛନ୍ନ ହୋଇ ସବୁ ବିଗାଡ଼ୁଛୁ ।" ଖାଲି ପାସ ବୁଝନ୍ତି, ଆଉ ବଳର ଦିନ ନାହିଁ, ପ୍ରତିଷ୍ଠିତ ଦିନ ନାହିଁ, ଆଉ ବୁଢ଼ା ପେନ୍‌ସନ୍‌ଆଙ୍କ ପରି ନସ ବ ଜୁ ଜୁ ଅନାନ୍ତି । ମୁହଁରେ ବେଲିଙ୍କ ହସ, ଅଳି କରନ୍ତି, ଆଙ୍କ ମୋ ଖାତା ଟିକଏ ଦେଖନ୍ତୁ, 'ଢ଼' ମାର୍କା ବନ୍ଧ, ଝଲି ପାସ ।

ବଳ ବେଶି ନ ଥିଲା କେବେ, ତା ବ ଗଲା ଭଳି, ଏଥର କଳ କୌଶଳ, ଦୁର୍ବଳର ଆଶ୍ରୟ—ଯାନ ପୋକ ଆଉ ଟିକ ପ୍ରଜାପତି ବ କୌଶଳ ଦେଖାନ୍ତି, ମଲା ପରି ପଡ଼ିରହନ୍ତି । ଆଶଙ୍କା ଗଲା ଭାବିଲେ ଭୂସ୍ କରି ଉଠି ଚୁ' କରନ୍ତି । ଛଟା-ଗଳା ବ ସତେ ଅବା ସଦ୍ୟୋଜାତ, ପ୍ରୟୋଜନ ବେଳେ ପିଲାଟି ଦିନୁ ସେ ଆପେ ଆସିଛି । ବାପ ମାଙ୍କଠୁଁ କଥା ଦରକାର, ପେଣ୍ଟା ଦରକାର ? ଦେ' କାନ୍ଦଣା, ଧାଇଁପଡ଼ିବେ ସମସ୍ତେ । ସେ ଦିନୁ, ଛଟା ଗାଳିବା ହୋଇଗଲା ଅଭ୍ୟସ୍ତ ଉପାୟ, ପଦାରେ ବୁଲିବାକୁ ଚାଲିବାକୁ ମୁଖା ଆଉ ପୋଷାକ । ମାଷ୍ଟର ଆଗରେ ଇସ୍କୁଲରେ ସେ ଥିଲେ ଶାନ୍ତ ସୁବୋଧ ଛାତ୍ର, ନ ହୋଇଥାନ୍ତୁ "ଉଜ୍ଜ୍ୱଳ କୃଷ୍ଣ ଛାତ୍ର କ ବୁଧିଆ, ହସ୍ତାକ୍ଷର ଭଲ, ବନାନ୍ ଶୁଦ୍ଧ, ବହିର ସଫା", ମାଷ୍ଟରମାନେ କହନ୍ତି "ଭଲ ପିଲା, କୁହାର ବୋଲିର, ଅଡ଼ୁଆକୁ ଯାଏନାହିଁ, ଡେଣିକ ପାଠ କଥା ସମସ୍ତେ କ'ଣ ସମାନ ଅଛନ୍ତି ? ତେବେ, ଆପଣା ଭଲପଣ ଯୋଗୁଁ ସବୁ ଚଳିଯାଏ, କିଛି ଅଟକେ ନାହିଁ ।" ଇସ୍କୁଲ ପରେ ଜଣେ ଆଡ଼ମିନାଲ ସେକ୍ରେଟେରୀଙ୍କ ଦୁଇ ଝିଅଙ୍କୁ ଅପର ପ୍ରାଇଭେଟ ସ୍ତରରେ ଟିଉସନ କଲାବେଳେ, ସେହି 'ଭଲପଣ' ହିଁ ବାଟ କଢ଼ାଇଥିଲା । ଘରର କିଡ଼ାଦନଆ ସାନ ସାନ ପ୍ରୟୋଜନରେ କାମରେ ଆସୁ ଆସୁ ସ୍ତ୍ରୀଙ୍କୁ ସେ ଅପରିହାର୍ଯ୍ୟ ହୋଇ-ପଡ଼ିଥିଲେ । ତା'ପରେ ଦିନେ କଟକରେ ସେକ୍ରେଟେରିଏଟ୍ ଭିତରେ ଚୌକି ଖଣ୍ଡିଏ ପାଇଗଲେ । ରାଜସେବାରେ ଗୁଳିଗଲା ଇଂରେଜ ଅମଳରେ ପାଞ୍ଚ ବର୍ଷ, ସ୍ୱାଧୀନତା ପରେ ଛବିଶି ବର୍ଷ, ପ୍ରକାର ପ୍ରକାର 'ପଲିସି', ଆଗକୁ ଯାଇ ପଛକୁ, ବାଁ'କୁ ଯାଇ ଡାହାଣକୁ, କେତେବେଳେ

ଡେଞ୍ଚ୍ । କେତେବେଳେ ବଙ୍କା, ନାନା ଢଗ । ଖଲି ଚାଳ ଟେବୁଲରେ ବସି କାଗଜ ଫର୍ମି ଗଲେ । ସେତେବେଳେ ସ୍ମରଣରେ ଝଟକୁଥାଏ ସେହି ଫାଇଲଟି ଖୋଲିବେଳେ ସେ ତାଙ୍କ ଉପରିକି ଥାନ୍ତି, ତାଙ୍କର ମୁହଁ, ଆଖି, ଓଠ, ସେହି ମୂର୍ତ୍ତି ବତାଏ କଣ କଲେ ସେ ଖୁସି ହେବେ, ସତେ ଅବା ଓଠ ଦପାଳି ଟମଲ ହୁଏ, ବୁଜିହୁଏ, କଥା କହେ, ମନ ଭିତରେ ତାବ୍ଲା ବାଜେ "ସାର୍-ସାର୍-ସାର୍-ଆଜ୍ଞା-ଠିକ୍ ଆଜ୍ଞା—ସେଇଆ ଆଜ୍ଞା ।" ସେମିତି ତାଙ୍କର ବହୁତ ଠାକୁର, ବଡ଼-ଠାକୁର ଗୋଟିଏ ଚାଳି ବର୍ଷ ଆରଟି ତାଙ୍କ ଦଦାଉଡରେ ଛବଶି ବର୍ଷ ଖଟୁଲିରେ ବସିଥିଲେ । ବଡ଼ଠାକୁର ପିନା ଯବବ୍ୟାପୀ, ନଉଦନର କାରବାରି ହେଲେ ତାଙ୍କ ତରଫରୁ ମଝିଆଁ ଠାକୁରମାନେ, ସାନ ଠାକୁରମାନେ, ବରଦାତା ଦଣ୍ଡଦାତା ସେଇମାନେ, ନିତି ସକାଳ ସାଢ଼େଦଶ ହେଲେ ସେମାନଙ୍କ ସଙ୍ଗେ ଭେଟ, ସମସ୍ତ ମିଳିଲେ ତାଙ୍କର ଗୁଣ ସ୍ମରଣ-କୀର୍ତ୍ତନ, ଯଦି ସୁଯୋଗ ମିଳେ ତେବେ 'କ୍ଷଣଂ ଚ ଗୁହ୍ୟଭାଷଣମ୍', ଯେତେବେଳେ ମୁହଁ ଫଟେଇ ମୁରୁକି ହସି ମୁଣ୍ଡରେ ଆଙ୍ଗୁଠି ଟିପ ଘଷି ଘଷି ବା ଚାପୁଲି ରଗଡ଼ି ରଗଡ଼ି ଅଣ୍ଟାରୁ ଗଣ୍ଡିକୁ ମୋଡ଼ି ମୋଡ଼ି ଥଙ୍ଗେଇ ଥଙ୍ଗେଇ ହୋଇ ସାନ ପାଟିରେ ସିଧା-ସଳଖ ସ୍ତବ ପାଠ । ଦେବତାଏ ସବୁଦିନେ ବର ଦିଅନ୍ତି ନାହିଁ; କେବେ-ହେଲେ ବର ଦେବେ ବୋଲି ସବୁଦିନେ ତାଙ୍କୁ ପୂଜା କରଯାଏ । କିନ୍ତୁ ଏ ଦେବତା ବଦଳି ଯାଆନ୍ତି, ବଦଳିବା ହିଁ ସୃଷ୍ଟିର ନିୟମ, ନୂଆ ଦେବତା ପୂଜା ପାଆନ୍ତି, ପୁରୁଣା ଦିଶନ୍ତି ନେଷ୍ଟ୍ରବନ୍ତ । "ତାଙ୍କଠି ଆମର ଆଉ କି କାମ ?" ଟେଣିକି ଅନ୍ତତଃ ଖଲି ପାଳଙ୍କ ପାଇଁ ସେ ଅପୂଜା ଦିଅଁ, ଦି ବାଟର ଖୋଣ୍ଟା, ସାଙ୍ଗମାନଙ୍କ ପରି ସେ ବି ଯେତେବେଳେ ସେ ଅପଦାର୍ଥ ପଥରର ଦୋଷ ବାଛନ୍ତି, ତା ବିରୁଦ୍ଧରେ ଦି'ପଦ ନିଉନ କରି କହନ୍ତି । ଏ ବ୍ୟବହାର ଆପେ ଆପେ ତାଙ୍କର ହୋଇଯାଇଥିଲା । ସତେ ଯେପରି ଗୋଟାଏ ଶ୍ରେଣୀଗତ ଆଚରଣ ସଂସ୍କାର, ଗୋଟାଏ 'କଲଚର', ଛାଡ଼ିବାକୁ ପଡ଼େ ନାହିଁ । ନିତି ଖବରକାଗଜରେ କେତେ ସମ୍ବାଦ କେତେ ମତାମତ ବାହାରୁଥାଏ, କେତେ ଘଟନା ଘଟେ, ଆନ୍ଦୋଳନ ଲାଗେ; କିଏ ଗରିବ ଥିଲା, କ୍ଷମତା ପାଇ ବଡ଼ ଧନିବାଲା ହେଲାଣି, କାହା ପାଚୁରି ଚଟୁରି ପରିମାଣ ବର୍ଷକେ କେତେ ହଜାରରୁ ବଢ଼ି କେତେ ଲକ୍ଷ ବି କାହାର ଟପିଲାଣି, କିଏ ଜେଲ୍‌ରେ କଇଦୀ ଥିଲା, ନିଜେ ପରକୁ ଜେଲ ଦେଲାଣି,

କେଉଁଠି ବଣ ଥିଲା, କୋଠା ଓ ବଜାରବଣ୍ଟ ମାଳମାଳ ଠିଆ ହେଲଣି, ସଡ଼କରେ କେତେ ଫଟ୍‌ଫଟିଆର କେତେ ଗର୍ଜନ ଗଲାଣି, ସିଗାରେଟ୍‌ର ବିଜ୍ଞାପନ, ସିନେମା ବିଜ୍ଞାପନଠୁଁ ରାଜନୈତିକ ପତାକ ଦେଖା ଦେଲାଣି ଖେଳ ଫୋପଡ଼ାଫୋପଡ଼ି ମୁଣ୍ଡ ଫଟାଫଟି ଯାକେ, ମଶାଣିମୁହାଁ ଲୋକେଙ୍କ ପଛେ ପଛେ ସଂକୀର୍ତ୍ତନିଆ ଓ 'ରାମନାମ ସତ୍ୟ' ବୋଲି ପାଳିଆଙ୍କ ଘୋଷଣା ଯାକେ, ଖାଲି ପାଦ ସେସବୁ ଦେଖୁଥିଲେ ଖାଲି ସେହି ଆଗରେ ଯେପରି ଦେ ଦେଖନ୍ତି ପଡ଼ିଆରେ ଗୋରୁ ଚରୁଛନ୍ତି, ରାସ୍ତାରେ ବାଟୋଇ ଚାଲିଛନ୍ତି, ଚଢ଼େଇମାନେ ଉଡ଼ି ଯାଉଛନ୍ତି ବସୁଛନ୍ତି । କୁକୁର ପଲ ଧପାଉଛନ୍ତି, ଷଣ୍ଢ ଲଢୁଛନ୍ତି । ଦୃଶ୍ୟ ଆଖିକୁ ଭେଦେ ନାହିଁ କି ଶବ୍ଦ ଭେଦେ ନାହିଁ କାନକୁ ।

ଶେଷବେଳକୁ ସେ ଅର୍ଥ ବିଭାଗରେ ଆସିଷ୍ଟାଣ୍ଟ ସେକ୍ରେଟାରୀ ହୋଇ ବଦଳି ହୋଇ ରହିଥିଲେ । କାମ ଭିତରକୁ ପଶିବା ସେ ଡେପୁଟି ସେକ୍ରେଟାରୀ ସାହେବଙ୍କୁ ଛାଡ଼ିଦେଇଥିଲେ । ଜାଣନ୍ତି ତାଙ୍କ ତଳ ଲୋକ ପ୍ରତି କଥାକୁ ନିଜ ଶକ୍ତିମତେ ନିକୁଚି ଲେଖିବେ ହିଁ, ତାଙ୍କ ଉପରେ ଲୋକ ତାଙ୍କ ନିଜ ମତ ଲେଖିବେ ହିଁ, ଖାଲି ମଝିରେ ସେ । ନିଜେ କିଛି ଲେଖିଲେ ତଳବାଲାଙ୍କ ଦୋଷ ବାଛି ତାଙ୍କ ମତକୁ ଖାତିର ନକରି ଲେଖିଲେ ଲୋକ ଆଉ କାମ କରିବେ ନାହିଁ, ଉ'ଠ' ଲେଖି ସବୁ କାଗଜ ତାଙ୍କ ଆଡ଼କୁ ଠେଲିଦେବେ । ପୁଣି ନିଜେ ଯେତେ ଲେଖିଲେ ବି ଉପରେବାଲା ନିଜ ମତ ନିଜ ବ୍ୟାଖ୍ୟାନ ଲେଖିବାର ଖୁବ୍ ସମ୍ଭାବନା । ସେ ଆଇନ୍ ଫାଇଲ୍ ଭିତରକୁ ପଶିବା ଦରକାର ଭାବୁ ନଥିଲେ, ଭାବୁଥିଲେ ସବୁ ଆଇନ୍ ଛପା କାଗଜରେ ଅଛି, ତଳବାଲା କି ଉପରେବାଲା ଯେ ଗୁଡ଼ାଏ ଦେ ଖୋଜିଲେ ପାଇବ, ପଢ଼ିଲେ ଜାଣିବ । ଗୋଟିଏ ମାତ୍ର ସେ ଚାଣ କରି ଧରିଥିଲେ, ତଳିଆ ଲୋକଙ୍କୁ ଉପଦେଶ ଦେଉଥିଲେ, ଭୁଲିବ ନାହିଁ, ଏ ବିଭାଗର କେଉଁ ଦାୟିତ୍ୱ । ଗନ୍ତାଘରର ଗନ୍ତାଏ ଚାବି ଆମେ ଆମର ହାତରେ ଜାଣି ରଖିବ, ଆମେ ଟିକିଏ ହେଳା କଲେ କି ଢିଲା କଲେ ଲୋକେ ଧନ ବୋହିନେବେ । ସେଇଥିପାଇଁ କ'ଣ ନା, ସରକାରଙ୍କ ମାଲ୍ ଦରିଆମେଁ ଡାଲ୍ । ନାଇଁ ନାଇଁ, ସେକଥା ହେବ ନାଇଁ । ବିଭାଗରୁ ଯେଉଁ ପ୍ରସ୍ତାବ ଆସୁ ଆଗ ତାକୁ ଦେଖି ମୁହଁ ମୋଡ଼ି ଦିଅ, କିଛି ଗୋଟାଏ ଖୁଣ ବାଛ ।

ଉପରେକୁ ସୁପାରିସ୍ କରି ମତ ଲେଖିଦିଅ ଫେରେଇଦିଅ ହେଉ, କୁହାହେଉ ପେ୍ ଚଳିବ ନାହିଁ, ଆମେ ହିଁ ଭରିପାରିଲୁ ନାହିଁ ତେଣୁ ଦୁଃଖିତ ହେଲୁ । ପଦ ବ୍ଦିଶିଯ୍ ଥରି ସେ ପ୍ରସ୍ତାବ ସେଠୁ ପୁଣି ଆସେ—କଣ୍ଟସ୍ତ ସେଥିରେ ଆହୁରି ସମର୍ଥକ ତଥ୍ୟ ଓ ଯୁକ୍ତି ଥିବ ସତ, ବାଛି ପୁଣି ଖୁଣ୍ଟି, ଦିଅ ଲେଉଟାଇ—'ହେଲା ନାହିଁ', ଆମେ ଦୁଃଖିତ । ସେମାନଙ୍କର ଜରୁରି ଥିଲେ ଆଉଥରେ ପଠେଇବେ, ଆହୁରି ନୂଆ କରି ଖୋଜିଦେବେ ନୂଆ ନୂଆ ତଥ୍ୟ, ଯୁକ୍ତି, ଆଇନ୍ର ଯୁକ୍ତି । ବଳେ ସେତେବେଳକୁ ସେହିମାନଙ୍କ ହାତରେ ସେହିମାନଙ୍କଆଡ଼ୁ ପ୍ରସ୍ତାବଟିର ପୁଙ୍ଖାନୁପୁଙ୍ଖ ଆଲୋଚନା ହୋଇସାରିଥିବ, ସେତେବେଳେ ଆମେ ରାଜିହେବାକୁ ଚେଷ୍ଟା କରିବା । ଆପତ୍ତି ଉଠିବ, କାମ ଡେରିହେଲା, ଡେରିହେଲା, ମଞ୍ଜୁରି ଟଙ୍କା ବୁଡ଼ିଲା, ଲୋକଙ୍କ ଉପକାର ହୋଇଥାନ୍ତା ହେଲାନାହିଁ । କେତେ କଥା କହିବେ । ଆମ ଯୁକ୍ତି ସବୁଦିନେ ଅକାଟ୍ୟ, କହିବୁ "କହୋ ଆମେ କ'ଣ କରିବୁ ? ତମେ ଅଧାପନ୍ତରିଆ କରି ପ୍ରସ୍ତାବ ଦେଲେ ଆମ ଦୋଷ ? ସେ୍ କ'ଣ ଚଡ଼ିଚ କହୋ କୋଉଠି ?" ସମସ୍ତେ ସ୍ୱୀକାର କରିବେ ଆମେ କେଡ଼େ ଦକ୍ଷ୍ଯାମାର, କେଡ଼େ ନିଷ୍ଠାମନ୍ତ, ଆମ ଦେବତା-ମାନେ ପ୍ରସନ୍ନ ହେବେ ।" ମନା କରିଦେଲେ ତେଣ୍ଡୋଯାଏ, ପରିଶ୍ରମ ବି ପଡ଼େ ନାହିଁ । ଯେ ଯେତେ ଗାଁ ଗଣ୍ଡା ବଣ ପାହାଡ଼ ବୁଲି ଦେଖି ଚଢ଼ି ପଚାରି ପରାମର୍ଶ ଦେଇ ଦିନ ଦିନ ରାତି ରାତି ବୁଝିବିଚାରି ନକ୍ସା କାଟି ପ୍ରସ୍ତାବ ଲେଖି ପଠାଇଥାଉ, ପଦେ କଥାରେ ଫୁଟ୍‌ବଲ୍ ଯାଇ ହତା ବାହାରେ—"ଏଫ୍. ଡି. ରିଗ୍ରେଟ୍ସ୍"—"ଅର୍ଥ ବିଭାଗ (ରାଜି ହୋଇ-ପାରିଲେ ନାହିଁ ବୋଲି ଅର୍ଥ ବିଭାଗ) ଦୁଃଖ ପ୍ରକାଶ କରୁଛନ୍ତି ।"

ସେ ଦୁଃଖପ୍ରକାଶ ପଦକ ଲେଖିଲାବେଳେ ଖଳି ପାରିଙ୍କ ମୁହଁରେ ହସ ଖେଳିଉଠୁଥିଲା, ମନ ଉଦାର, ପ୍ରସନ୍ନ, କାହାକୁ ହାତଟେକି କିଛି ଦେଲାବେଳେ ଯେ ଉଲ୍ଲାସ ଫୁଟେ, ଯେମିତି ରବିବାର ଦିନ କେଉଁ କୋଡ଼ି ଭିକାରି ହାତରେ ଦୁଇନୂଆପଇସା ଖାଡ଼ ଦେଲାବେଳେ ଦାନପାଇଁ ରଖିଥିଲେ ରବିବାର ସକାଳ, ଦାନର ସୀମା ପାଞ୍ଚଜଣ ଗ୍ରହୀତା ଯାଏ । ତା'ପରେ ଅନ୍ୟ ଭିକାରିଙ୍କି ମନାକଲାବେଳେ ବି ମନଭିତରେ ସେହି ଆନନ୍ଦ ଆସେ, ମନାକଲେ ବେଶି, କାରଣ ଯେତେବେଳେ ଯେ

ମନେପକାନ୍ତି—"ମୁଁ ଅଛି, ମୋର ଅଧିକାର ଅଛି, ମୋର ସ୍ୱାଧୀନ ମତ ଅଛି ।" ସେ ବିଜୟ କାହାଣୀ କହିବୁଲୁ ନଥିଲେ, ମନେ ମନେ ଉପଭୋଗ କରୁଥିଲେ । ସେ ଜାଣନ୍ତି—କହିବୁଲନ୍ତି ଟୋକା କର୍ମୀମାନେ, ହାଟରେ ବାଟରେ ଏକାଠି ହେଲାବେଳେ; ମଞ୍ଚରେ ଚାୟଖେଳ ଉପରେ, କାହା ଭୋଜି ନିମନ୍ତ୍ରଣରେ, ଟିପୁରୁଟିପୁରୁ ହୁଅନ୍ତି ବା କୁହାଟ ଛାଡ଼ନ୍ତି, "ଦେଇଛୁ ଆଜି ପାଣେ ।" ହାତରେ ଲଗାଇଲେ ନୁହେଁ କି କଲମ ନୁହେଁ—ସାକ୍ଷାତ ବଜ୍ର, ଦୁନିଆଁ ନଚାନ୍ତି, ସେମାନେ ଜାଣନ୍ତି ସେମାନେ ବଜ୍ରଧର । ଯେମିତି ହଠୁଆ ଶୁଳୁଟା କିଶୋରର ଦେହରେ ଯୌବନର ସଞ୍ଚାର ହେଉ, ହେଉ ସେ ଦେହ ଭିତରେ ଦେହ ଉପରେ ନାନା ସ୍ଥାନରେ ଉତ୍ତେଜନା ଅନୁଭବ କରେ, ବେକ ଟାଙ୍କେ, ଛାତି ଫୁଲାଏ, ନାକ ଫଣକାଏ, ବାହା ଟାଙ୍କେ, ଗାରେଡ଼ଇ ଆରଶିକୁ ଅନାଇ ନିଜ ରୂପ ଦେଖି ଦେଖି ନିଜ ପାରୁ ଓ କାଡ଼ୁର ଗୌରବ କଳ୍ପନା କରେ, କେତେବେଳେ ସିନେମା-ପତ୍ରିକା ଓଲଟାଉ ଓଲଟାଉ ନିଜକୁ ଯୁବକ 'ତାର୍'ର ଛବି ଭିତରେ କାପୁ ପ୍ରବେଶ କରାଏ, ଯୁବଣ୍ଣ ତାରକା କଳ୍ପରେ ସଜାଏ ଓ ଚଞ୍ଚଳ ହୋଇ ଉଠି ଦିଁ ଦିଁ ନିଶ୍ୱାସ ଛାଡ଼େ, ସେମିତି ସେ ଟୋକା ବଜ୍ରଧରମାନେ । ଖଲି ପାଣ ସେ ବୋଧା ମଣିଷ (କାଗଜ ଉପରେ କାହା ପ୍ରସ୍ତାବକୁ ପେଲି ଦେଲାବେଳେ) ସେ ଉତ୍ତେଜିତ କି ଚଞ୍ଚଳ ହୁଅନ୍ତି ନାହିଁ, ସେ ନିଜର ବିଶ୍ୱାସ ଜନ୍ମାଇଥିଲେ "ସେ କର୍ତ୍ତବ୍ୟବୋଧ, ଦାୟିତ୍ୱଜ୍ଞାନ", ଯେମିତି 'ମଧ୍ୟଯୁଗ'ରେ ମୁସ୍ଲିମ୍ ରଜାମାନେ ହିନ୍ଦୁମାନଙ୍କ ଦେଉଳ ଓ ଠାକୁର ଭାଙ୍ଗୁଥିଲେ ଗୋଟିଏ ସରଳ ବିଶ୍ୱାସରେ—ଯେ ଏମାନେ ଅନ୍ଧ, ଭୁଲବାଟରେ ଗଲିଛନ୍ତି, ଏକ ଅନାଦି ନିରାକାର ଈଶ୍ୱରଙ୍କୁ ପୂଜା ନ କରି ଗୁଡ଼ାଏ ପ୍ରତିମା ପୂଜା କରୁଛନ୍ତି, ଅସଲ ଧର୍ମ ଅସଲ ବାଟ କହିଲେ ବୁଝେଇଲେ ମାନୁନାହାନ୍ତି, ନରକରେ ପଡ଼ିବେ ଆହା, ତେଣୁ ଯାଙ୍କ ଅନ୍ଧବିଶ୍ୱାସର ପ୍ରଧାନ ଶତ୍ରୁ ଯେ ସେ ଦେଉଳ ଓ ବିଗ୍ରହମାନ, ସେଗୁଡ଼ାକୁ ଚୂନା କରିଦେଲେ ଏମାନେ 'ପ୍ରକୃତ ଧର୍ମ'କୁ ଆଶ୍ରାକରିବେ ।

ଖଲି ପାଣ ସେହିପରି ସରଳ ବିଶ୍ୱାସରେ ବିଭିନ୍ନ ବିଭାଗର 'ଗଠନମୂଳକ' କାର୍ଯ୍ୟ ପାଇଁ ଟଙ୍କା ମଞ୍ଜୁର ପ୍ରସ୍ତାବଗୁଡ଼ିକୁ ବାତିଲ କରୁଥିଲେ ସେଗୁଡ଼ିକ ଗଠନ ବା ବିଘଟଣ ସେ ବିଷୟରେ ତାଙ୍କର ଘୋର

ସନ୍ଦେହକୁ ସେ ନ୍ୟାଯ୍ୟ ଭାବୁଥିଲେ, ମୂଳକରୁ ଗୌରବ୍ୟ ବୋଲି କହି କେହି ତାଙ୍କୁ ଭଣ୍ଡାଇ ପାରିବେ ନାହିଁ । ତାଙ୍କ କାମ ବି ଖୁବ୍ ହାଲୁକା ହୁଏ, ଡଲର କରନ୍ତି ଯାହା ନେଇଥାନ୍ତି ବା ତାଳ ସେ ନିଜ 'ନଗାଣ' କ 'ମନ୍ତକ' ସ୍ୱରୂପ ଗୋଟିଏ ସାନ ଖାତାରେ ଟିପି କରିଦିଅନ୍ତି, ପିକାସୋ ଢାଞ୍ଚାର, କିନ୍ତୁ ରେଖା-ଚିତ୍ର, ଅତ୍ୟାଧୁନିକ ମଳାଟ ଚିତ୍ରକରଙ୍କ ସାଙ୍କେତିକ କୃତି ପରି, ଭାବରେ ଉପରେ ଅଣ୍ଡା ବୃତ୍ତ ଗୋଲ ତା ଉପରେ ପାସ୍, ତା ପେଟରେ ସିଧା ଡେକ୍ରା । ଦୁଇଟେଣ୍ଟା, ତା ତଳକୁ ଲଗି ସିଧା ଗୋଡ଼, ଆଗକୁ ପାହୁଣ୍ଡ ଉଦ୍ୟତ ସିଧା ଗୋଡ଼, ଭାବରେ ରହସ୍ୟମୟ, ନଭାବରେ ନାହିଁନଥିବାର ପୋକଟିଏ ।

ପାହୁଣ୍ଡ ଆଗକୁ, ଏମିତି ପଡ଼ାହନ୍ତି ଏବେଯାକେ—ବୋଲି ମନରେ ପ୍ରତିଦିନ ତାଙ୍କର ଦୃଢ଼ବିଶ୍ୱାସ, ଯେମିତି ଦୃଢ଼ବିଶ୍ୱାସ ଯେ ମହାତ୍ମାଗାନ୍ଧୀ ଏକଥା କହିଥିଲେ । ସେ ନିଜେ ଅବଶ୍ୟ ଶୁଣିନାହାନ୍ତି, ଗାନ୍ଧୀ ମହାତମା ଓଡ଼ିଶା ଆସିଲାବେଳେ ଖାଲି ପାଦ ଥିବ ଓ ତାଙ୍କ ମନରେ ଡର ଥିଲା, ତାଙ୍କ ବକ୍ତୃତା ଶୁଣିଗଲେ ପୁଲିସି ନାଁ ଟିପିନେବ, ସ୍କୁଲର ଆଉ ଜନ୍ମ ଜନ୍ମ ମିଳିବ ନାହିଁ । କିନ୍ତୁ ଗାନ୍ଧୀ ମହାତମା ହିଁ ତ ଥିଲେ ତାଙ୍କ ମନ ଆଗରେ ଗୋଟିଏ ଶୁଭ ସ୍ୱପ୍ନ ଭଳି । ମୂଳରୁ ତାଙ୍କର କେମିତି ଗୋଟାଏ ବିଶ୍ୱାସ ରହିଯାଇଥିଲା ଯେ ଗାନ୍ଧୀ ମହାତମା ଜଣେ ବାବାଜି, ମୁନି, ଋଷି, ସିଦ୍ଧପୁରୁଷ; ଯେଉଁମାନେ ପ୍ରସନ୍ନ ହେଲେ ବର ଦିଅନ୍ତି । ମନେ ମନେ ତାଙ୍କୁ ଡାକିଲେ ସେମାନେ ଶୁଣନ୍ତି । ପରୀକ୍ଷାବେଳେ; ପୁଣି ସ୍କୁଲର ପାଇଁ, ମନେ ମନେ ଖାଲି ପାଦ ଗାନ୍ଧୀ ମହାତମାଙ୍କୁ ଡାକିଥିଲେ । ଅବଶ୍ୟ ଏକୁଟିଆ ତାଙ୍କୁ ନୁହେଁ—ଶ୍ରୀଜଗନ୍ନାଥ, ମା' ଲକ୍ଷ୍ମୀ, ମା ସରସ୍ୱତୀ, ମା ଦୁର୍ଗା, ଶିବ, ଗଣେଶ, ଜାଗୁଳେଇ, ସାତଭଉଣୀ, ନଙ୍ଗଳୀ ଗୋସେଇଁ, ଇଞ୍ଜିନ୍-ବାବା, କେତେ କେତେ ନାଁ ସଙ୍ଗେ ସଙ୍ଗେ ମନେ ମନେ ମହାତ୍ମାଗାନ୍ଧୀ ଙ୍କ ବି ଦୁଃଖ ଜଣାଉଥିଲେ । "କିଛି ମହିମା ଅଛି, କ'ଣ ଯୋଗବିଭୂତି ଅଛି, ମୋ ମନସ୍କାମନା ପୂର୍ଣ୍ଣହେବା ପାଇଁ ଦେଖାଅ ତାକୁ ।" ଅଥଚ ତାଙ୍କ ମନରେ ସେକାଳରେ ଆଉ ଗୋଟାଏ ବିଶ୍ୱାସ ବି ଥିଲା, ଯେ ମହାତ୍ମାଗାନ୍ଧୀ ସ୍ୱରାଜ୍ୟ ଆଣିବା ପାଇଁ ଇଂରେଜ ସରକାର ସଙ୍ଗରେ ଯାହା ଲଢ଼େଇଛନ୍ତି । ପାଖେ ଦୁର୍ବଳ ଦେହ, ଖାଲି

ହାତ, ଖଦଡ଼ଲୁଗା, ତୁଣ୍ଡରେ କଥା, କାମରେ ରୁଷିବା ଆଉ ଉପାସ କରିବା, ଅହିଂସ ହୋଇ ଅଳି କରିବା, ଅରି ପାଖେ ବାହାବଳ, ବନ୍ଧୁକ ତୋପ, ପୁଲିସ, ଫଉଜ, କଳ କଳ କଉଶଳ, ଅଖଣ୍ଡ କ୍ଷମତା, ରାଜଶକ୍ତି—ସେ ହାରିବେ ନାହିଁ; ଏତେ ଅତ୍ୟାଚାର, ଏତେଥର ଜେଲ୍, କିଏ କ'ଣ କରିପାରିଲା ? ଖାଲି ପାଣଙ୍କ ଚେଇଁଥିବା ଅଙ୍କକଷା ବସ୍ତୁରରେ ହିସାବୀ ବୁଦ୍ଧିରେ ସନ୍ଦେହ ନଥିଲା ଯେ ସ୍ୱରାଜ୍ୟ ଆନ୍ଦୋଳନ କିଛି ହେବ ନାହିଁ । ଧନେ ହାଉ ହାଉ ବି ଭୁଲ ପଡ଼ିଯିବ । କିନ୍ତୁ ତାଙ୍କ ଚେତନାର ଗମ୍ଭୀର ଭିତରେ ଯେଉଁଠି କି ତାଙ୍କ ଛଅଁ ହିଦାଗୀ-ମନ ରହୁଁଥିଲେ ବି ଅନ୍ଧାର ଜାଲୁଜାଲୁ ହେଉଣ, କିଛି ଗପା ବାରହୁଏ ନାହିଁ । ଖାଲି ଥାଇ-ଥାଇକା ମଝିରେ ମଝିରେ ଜାଙ୍କୁଲୁଜାଙ୍କୁଲୁ ଆଶ୍ରୟ—ଯେଉଁଠି ଶୁଭକାମନାର ମିଞ୍ଜି ମିଞ୍ଜି ଫାପଟିଏ ଜଳୁଥିଲା—ଗାନ୍ଧୀମହାତ୍ମାଙ୍କ ଉଦ୍ଦେଶ୍ୟରେ, ଲଜ୍ଜା ହେଉଥିଲା, ସେ ଜତନୁ । ମେଉର ସ୍ୱରାଜ୍ ଆସୁ—ସବୁ ଘଟୁ ସ୍ୱପ୍ନରେ ଦେଖିଲା ଭଳି ଯେତେବେଳେ ମଣିରେ ନିଜର ଅଗ ଗୋଡ଼ରେ କଣ୍ଟା ଫୁଟେ ନାହିଁ । ଦେହରୁ ବୁହେ ନାହିଁ ଝାଳ ବୁନ୍ଦାଏ ବି ।

ଆପଣା ଦେହରୁ କାଟି ମଳି ଟିକିଏ ବି କାହାକୁ ଦେବାକୁ ପଡ଼େ ନାହିଁ । ଖାଲି ଦେଖିହୁଏ ଅନୁଭବ କରିହୁଏ ଯେ ମଣିଷ ଯାହା ଲୋଡ଼ୁଥିଲା ସବୁ ତା' ମନନାଖି ଘଟିଯାଉଛି । ଡର ନାହିଁ, ଦୁଃଖ ନାହିଁ, ବାଧିକା ନାହିଁ, ଅଭାବ ନାହିଁ, ଖାଲି ଅପରନ୍ତ ସୁଖଭୋଗ, ଯେଇ ତ ସ୍ୱର୍ଗରାଜ୍ୟ, ସ୍ୱରାଜ ଆଉ ସ୍ୱର୍ଗରାଜ୍ୟ ଏକ । କ୍ଳାନ୍ତିକର ଜୀବନଯାତ୍ରା ଭିତରେ ଯୋଉ ସ୍ୱପ୍ନ ସାଇତି ରଖିଥିଲେ ଖାଲି ତାସ ଆପଣା ମନଗହ୍ୱରରେ ଯେମିତି କେଉଁ ଅକାତପାଣି କଳ୍ପନା ଗଣ୍ଡ ଭିତରେ ସାତତାଳ ପଙ୍କ ତଳେ ଫରୁଆ ଭିତରେ ଫରୁଆ ହୋଇ ସତର ପରସ୍ତ ଭିତରେ ଜୀଅନ୍ତା ନେଳ ଭଅଁର ବକଟେ, ସେ ଗୁଣୁଗୁଣୁ କରେ । ସେ ଗୃକଣରେ ଥାଇ ସ୍ୱରାଜ ଆସିଲା । ତାଙ୍କ କ୍ଳାନ୍ତିକର ଜୀବନ ହେଲା ଆହୁରି କ୍ଳାନ୍ତିକର, ହେଲା ଜଟିଳ ଆଉ କୁଟିଳ; ପୋତା ଫରୁଆ ଓ ଭଅଁର ଭୁଲି ହୋଇଗଲେ ।

ତଥାପି, ବଳା ଲାଗୁ କି ଅବା ଲାଗୁ, ଆଗକୁ ଚାହୁଁଣ୍ଟ ପାଇଁ ଉଦ୍ୟମ ତାଙ୍କର ଥିଲା ନବୁନ୍ଦାନ । ଉଦ୍ୟମ ! ଓଃ ! ମନେପଡ଼ିଲେ ମୁଣ୍ଡ

ଝାଳି ମାରୁଥାଏ, ତଣ୍ଟି ଅଠା ଅଠା ହୋଇଯାଏ, ଦେହ ଶୀତେଇ ଉଠେ । ଶାଗ ବୁଣିବାକୁ ଆଜ ଘଣ୍ଟାଏ ଗଇଁତାରେ ମାଟି ତାଡ଼ିବା, କାଲି ଦ'ଘଣ୍ଟା ମାଟିକୁ ଲୁଣ ପରି କରିବା, ମାଟିରୁ ଘାସ ଚେର ମୁଥା ଗୋଡ଼ ଝୁଣ୍ଟିମୂଳ ବାଛିବା ଖତ ଆଣି ମିଶେଇବା, ପହର-ଦିନ ସେଠି ଝୁଣି ଦଉଡ଼ି ହାଣିବା, ମାଟିକୁ ଗମେଇବା, ଅପୁରୁଦିନ ଶାଗମଞ୍ଜି ବୁଣିବା, ଆଉ ଓଳକ ପାଣିଛିଞ୍ଚିବା, ସପୁରୁଦିନ ପାଉଁଶ ଗୁଣ୍ଡିବା, ପାଣି ଛିଟିବା, ଏମିତି ଏମିତି କରି ପୋଡ଼ି ପାଳ ଛନଛନିଆ କରି ଶାଗ ବଢ଼େଇବା, ସେଇଠୁ କାଟିବା, ପେଠ ମୂଳରୁ ନୁହେଁ—ରଖି ଥୋଇ, ଯେମିତି ଶାଗ ଆହୁରି ଉଲୁସିବ, ଆହୁରି ଚେକା ମାଡ଼ିବ, ଆହୁରି ମାଡ଼ିବ, ଏଇତ ଦିନକୁ ପାହୁଣ୍ଡେ, ମହାତ୍ମାଗାନ୍ଧୀ ବି ଏମିତିଆ କ'ଣ କହୁଥିଲେ ପରା ।—ଆଉ ଖାଲି ପାଟି ଉଦ୍ୟମ କଲାବେଳେ ସେମିତି ଭାବୁଥିଲେ । ପେଟରୁ କାଟି ପଇସା ରଖୁଥିଲେ । ଇଂରେଜୀ ଅଭିଧାନରୁ ଟିପି—ଉପରିକ ବାବୁମାନଙ୍କର ଇଂରେଜୀ ପ୍ରୟୋଗକୁ ଟିପି ଇଂରେଜୀ ଶିଖୁଥିଲେ, ଆଜୀବନ । ଯେମିତି "ବ୍ରିଂ ଅପ୍" ମାନେ "ଫାଇଲ୍ ଧରି ମୋ କତିକି ଆସ, କ'ଣ ହେଇଚି ମତେ ବୁଝାଅ" ସିନା, "ପୋଷ, ପାଳ ନୁହେଁ ।—"ଟପ୍ ସିକ୍ରେଟ୍" ମାନେ ନୁହେଁ "ଗୋପନୀୟ" ଲେଖା ହୋଇଥିବା ଆଲମାରି ମୁଣ୍ଡ ଉପରେ ଫାଇଲ୍‌କୁ ଥୋଇଦେବା, "ଏଇଟା ହେଉ" ବୋଲି ପ୍ରସ୍ତାବ ହେଲେ ଲେଖାହେବ "ଇଟ୍ ମେ ହ୍ୱୋପ୍ସ୍ ଇଫ୍ ପ୍ଲିଜ୍ଡ୍ ବି ଡନ୍ ଇଫ୍ ନୋ ଅବ୍‌ଜେକ୍‌ସନ୍" ତା'ହେଲେ ନିଜ ମୁଣ୍ଡରେ ଅଠା ଲାଗିବ ନାହିଁ । ଓଃ ଏତେ ବୁଦ୍ଧି । ଏତେ କୌଶଳ । ଏତେ ଜ୍ଞାନ । ଧନ୍ୟ ଇଂରେଜୀ ଭାଷା । ଆଉ କୈଫିୟତ୍ ଦେଲାବେଳେ ଯେମିତି, ବିଷୟୁଟି ଉପରେ ଲେଖି ସେଇଠୁ "ୟୋର୍ ଅନର୍" ସମ୍ବୋଧନ, ଆଉ, "ମେ, ଇଟ୍ ପ୍ଲିଜ୍ ୟୋର୍ ।" "ଶୁଣିବାକୁ ଅବଧାନ ମଣିମା" ଆଉ "ୟୋର୍ ଏବଭ୍, ମାଇ ବଲେ" ଅର୍ଥାତ୍ "ଶ୍ରୀହଜୁରଙ୍କ ଫରମାସି ଉପରେ ଲେଖିଛି, ମଣିମା, ମୋ କୈଫିୟତ୍ ଦେଲି ତଳେ", ସେଇଠୁ ତାହା ଲେଖି, ଗଣି ଗଣି ମୁଣ୍ଡାକେ ସାତୋଟି ଲେଖା ପ୍ଲିଜ୍ । ଦିନାକେ ପାହୁଣ୍ଡେ ହିଁ ।

ହିଁ-ଜଗିଜଗିକା—ଛପିଛପିକା—ଗୋଟିଏ ଗୋଟିଏ—ଅସ୍ତେ ଆସ୍ତେ—କଲେ କଲେ—କାନ୍ଧ କାନ୍ଧ—ଲେପ୍ଟି ଲେପ୍ଟି—ଆଉ ମଝିରେ

ମଝିରେ ଟେଣ୍ଡ୍‌କା ପରି ମୁଣ୍ଡଟେକି ମୁଣ୍ଡଟେଙ୍ଗାରି ଯେ ବାହ୍ ବାହ୍—ବେଶ୍ ହେଲ ବଢ଼ିଆ ହେଲ ବଢ଼ିଆଁ ହେଲ—ଆପଣା କାରସାଦ ପାରିଲାପଣ ଭାବି ଆପଣାକୁ ସମ୍ମାନ ଜଣେଇଁ ତାଳି ମାରି, ଖୁବ୍ ଜୋର୍‌ରେ ଆପଣାକୁ ମାହାପାତ୍ର କରି ଆପେ ଟେକିଧରି ଆପଣା ମୁଣ୍ଡର ନିହ-ନଉତି ଉପରେ, ନ ଦେଖନ୍ତୁ ପଛେ ଆଉ କେହି, ପୁଣି ଆହୁରି ପାହୁଣ୍ଡେ ଆଗକୁ ଚାଲନ୍ତି ଏଣ୍ଡୁଅଛି, ରଜା-ମୁଣ୍ଡିଆ ଟେଣ୍ଡ୍‌କା, ଚରୈବେତ ଚରୈବେତ, ସେଇ ତ ଆଗକୁ ପାହୁଣ୍ଡେ, ଯେତେ-ଯେଉଁଠି-ଯିଏ-ଗଲେ-ଯେଉଁ ବାଟରେ—ଖାଲି ପାସ ନିଜପାଇଁ ସାର୍ବଜନୀନ ସତ୍ୟର ପଟ୍ଟଭୂମି ଆଙ୍କି ଆତ୍ମଯାଥାର୍ଥ୍ୟ ଓ ଆତ୍ମଗୌରବ ପାଇବା ପାଇଁ ବନ୍ଦୋବସ୍ତ କରନ୍ତି, ଆଉ ନିଜକୁ ନିଜେ କହି ଆଶ୍ୱାସି ହୁଅନ୍ତି, ଆଉଁସି ହୁଅନ୍ତି ଯେତେ ଯେଉଁଠି ଯିଏ ଚାଲିଲେ ଚଢ଼ିଲେ ଗଲେ, ସମସ୍ତେ ତ ଅବିକଳ ସେହିପରି ବାଟ ଧରିଲେ, ଧୀରେ ଧୀରେ, କଲେ-କଲେ—ଯେମିତି ସେ ବ—ତକ୍ରୁ ଉଠି ଉଠିକା ଏଣ୍ଡୁଟିରୁ ଏଣ୍ଡେଟିଏ ମଣିଷ ହୋଇ ପେନ୍‌ସନ୍ ନେବାଯାକେ ।

କିନ୍ତୁ ସବୁକୁସତ ନେଇଆ ଭାବି ମନକୁ ବୁଝେଇ ହୋଇଥାନ୍ତା ଯଦି । ହୃଦୟ ଭିତରେ ବାରମ୍ବାର କାନ୍ଦି କାନ୍ଦି ବୁଝେଇଛନ୍ତି—ଏ ପଥ ବଡ଼ଇ ଦୁର୍ଗମ, ଉପୁ ଭାଜନ୍ତି ଜ୍ଞାନୀଗଣ । ବାଟେ ବାଟେ ଦୁଃଖୀ ବଥା ଆଞ୍ଚୁଡ଼ା ଖଣ୍ଡିଆ, ହାକୁ ହାକୁ ଜଳେ, ମୁହଁଠା କଳନ୍ଥା କାଟୁଆ ପଡ଼ଯାଏ ଅଲଜୁକ ପଣରେ, ଯେଉଁ ଶୋହୁଥାଏ ସବୁ ପରଙ୍କ ଆଗରେ ସଦା-ହସ, ଗୋଜଣା ଉପରେ ଫାଇଁଫାଇଁଆ କ୍ଷୀଣ ନିଆଁ ଧାସ ପରି, ଟେଲିଫୋନ୍ ଧରି କଥା କହିଲାବେଳେ ପରକୁ ମୋହିଲାଭଳି ଗୃହାଣିର ମୋହିନୀ ମୁହଁରେ ଅମାୟିକ ଭଙ୍ଗୀ ଓ କୁରୁଳନ୍ତି ପରି ହସ ଆଉ ଜଣକ ଦ୍ରଷ୍ଟ ଉଦ୍ଦିଷ୍ଟ ହୋଇଥିଲେ ସୁଦ୍ଧା ଆଉ ଜଣକ ତାକୁ ଦେଖିପାରିବ ନାହିଁ, ସେ ଯାଏ ବୃଥା—ଢନଫୋଲିଆ । କାନମୁଣ୍ଡାରୁ ହୁଳା ଉଠିଛି, ଅନୁଭବ କରୁଛନ୍ତି, ସେ ଉଦ୍ୟମରେ ମାନଠୁଁ ଅପମାନ ବହୁଗୁଣ, ପ୍ରାପ୍ତିଠୁଁ କ୍ଷତିର ଆକାର ବହୁତ ବହୁତ ଗୁଣ, ଆଗକୁ ପାହୁଣ୍ଡେ ନୁହେଁ, ଦିନୁଁଦିନ ପାହୁଣ୍ଡେ ଲେଖା ପଛକୁ, ପଛକୁ, ଆହୁରି ପଛକୁ, ଆପଣା ବ୍ୟକ୍ତିତ୍ୱ ଅଣପୁଚୁଷା ହେଲ, ଯେଉଁଠୁ ନଇଁଲ, ଯେଉଁଠୁ କୁହାହେଲ, ଉପରକ ଯେ ଆସନ୍ତୁ, ସତେ ଯେପରି କଥାରେ କାମରେ ତାଙ୍କ ବଙ୍କା ପିଠିରେ ଆଗ ହାତ ବୁଲେଇ

ଆଣି ପରଖି ଦେଖନ୍ତୁ. କାମିଜ୍ ତଳେ କୁଜଟା ଅଛି କି ନାହିଁ—ନାହିଁ ବୋଲି ଜାଣିଥିଲେ ସହି ପାରିଥାନ୍ତେ ସେମାନେ ? ପ୍ରାପ୍ତି କି ଆଉ ବଳକା କଣଟା ? –ଆପଣା ଅନ୍ତର ଭିତରେ କାନ୍ଦଣାର ଢେଉ ଉଠେ—"କ'ଣ ହେଲା । କ'ଣ ହେଲା !"

ପ୍ରାପ୍ତି କ'ଣ ସେ ତା' ଆଖିରେ ଦେଖିଛନ୍ତି, ଦେଶର ସ୍ୱାଧୀନତା ଆସିଲା ପରେ କହିବା ପିମ୍ପୁଡ଼ି ପରି କେତେ ଲୋକ କେତେ ପଦାର୍ଥ ବୋହି-ନେଲେ, କାହାର ହାଣ୍ଡିଅନ୍ଧ କାନ୍ଥ ପଡ଼ିଯାଇଥିଲା, ଗୁଳ ଦବିଯାଇଥିଲା, ଉଠେଇବାକୁ ସାମର୍ଥ୍ୟ ନଥିଲା, ଠୋଠି, କିନ୍ତୁ ପାଞ୍ଚଟା ବର୍ଷରେ ତା' ଘରକୁ ଲକ୍ଷ୍ମୀ ବିଜେକଲେ, ଲକ୍ଷ୍ମୀ ବିଜେକଲେଣି କିଣ୍ଟ୍ରେକ୍ କାଳ ପଡ଼ିଲାବେଳୁ, କେତେ ଘର ଭର୍ତ୍ତି, ଇଲେକ୍ସନ୍ ଆରମ୍ଭ ହେବାଦିନୁଁ, କେତେ ଘର ଭର୍ତ୍ତି, କିଏ ପତାକା ଟେକିବା ମୁଖରବ ଧ୍ୱନି ଦେବା ଅଭ୍ୟାସ କରୁଥିଲା, ହେଲା ଲକ୍ଷପତି । କିଏ ଥିଲେ ଚପରାସୀ, କିରାନି, ଗାଁ ମାମଲତ୍ଦାର, କିଏ ଅବା ଅଫିସର—ମା ଲକ୍ଷ୍ମୀ ତା' ଘଟିକି ବିଜେ କଲେ, ହଜାର କ'ଣ, ଲକ୍ଷ ଲକ୍ଷ ଆସି ଭଣ୍ଡାର ପୂରିଲା । ଅନ୍ତତଃ ମା' ଲକ୍ଷ୍ମୀ ଶ୍ରେଣୀବିଭାଗ ସେଦିନ ପାତରଅନ୍ତର କରନ୍ତି ନାହିଁ । ପାଞ୍ଚବର୍ଷରେ ତିନିବର୍ଷରେ ଦେଖୁ ଦେଖୁ ଜଣ ଜଣକର ଧନର ପରିମାଣ ତାଙ୍କ ଉଚିତ ଓ ଜଣେର ଜଣା ଆପଣଙ୍କୁ ଟପି ସେ ଆପଣର ହଜାର ଗୁଣ କେମିତି ହୋଇପାରିଲା ତା' ସେମାନେ ନିଜେ ବି ବୁଝେଇପାରିବା ଅତି କଷ୍ଟ, "ମା ଲକ୍ଷ୍ମୀ ଆଇଲେ, ଦେଇଗଲେ ।" ସେଇଭଳି ଲୋକକୁ ସରକାର ବାମ ହେଲେ ଖୋଳତାଡ଼ ଲାଗେ । ସେଭଳି ଘଟନା କଥା ପଢ଼ିଲେ କି ଶୁଣିଲେ ଖାଲି ପାଟି କହନ୍ତି, "ସେ ହେଲା ଖୋଳି ପର୍ବତ ମାରି ମୂଷା, କିନ୍ତୁ ମୂଷା ନାହାନ୍ତି କେଉଁଠି ? ସିଦ୍ଧିଦାତା ବୁଦ୍ଧିଦାତା ସେଇଁ ଗଣେଶ—ଅନେକ ବ୍ୟବସାୟୀ ଯାହାଙ୍କ ଛବି ଖଣ୍ଡିଏ ସୁଦ୍ଧା ଦୋକାନରେ ମାରିଥାନ୍ତି—ତାଙ୍କ ବାହନ ବି ତ ମୂଷାଟିଏ । ସ୍ୱାଧୀନତା ବେଳର ସୁଖ ଦଉଲତ ସେହିମାନେ ଭୋଗ କଲେ । କ'ଣ ନାଙ୍କେବି ହେଲା ? ଦେଶର କେହି ଜଣଙ୍କ ଭିତରେ ଦଶ ପାଞ୍ଚ ହେଉନ୍ତୁ ପଛେ, କେହି ତ ହେଲେ ପାଇଲେ ।

ହିଁ, ଗୁଳି ଗୁଳ ନଥିଲା, ଆମିଗଲା ଜମି ଉପରେ ଜମି, ଘର ପାଞ୍ଚ ଛ' ମାତ କୋଠା –କଏ ଭଡ଼ା ବି ପାଉଥିଲେ ମାସକୁ ଘର ପାଞ୍ଚହଜାର, କାହାର ଟ୍ରକ୍, ବସ୍, କଳକାରଖାନା, ପୁଞ୍ଜି ବୋଲନ୍ତେ ଜ୍ଞାନ ବି, ଧନ ବି, କଏ କାଲି ସକାଳେ ହାତପାତି ଚଳୁଥିଲା, ଆଜିଗୁ ଲକ୍ଷ କୋଟିରେ ଧନ ମାପି ହୁଏ ନାହିଁ, ପୁଣି ବିଦେଶରେ ଧନ ରଖିଥିଲେ ତା' ଚଳ୍ପ ବି ସ୍ୱଦେଶରେ ଅଗୋଚରେ– ଏଇ ଦେଶର ମଣିଷ ତ । ଏ ଦେଶରେ ଥିଲେ କେବେ ଏମିତ ?

ଖଲି ପାଟ ଉଦାର ହେଉ ହେଉ ତାଙ୍କ ଗୁଣ୍ଡରେ ରକ୍ କରେ— ଚେଡ଼ି ଉଠନ୍ତ "ଯେ ପ୍ରାପ୍ତି ମୋର ହେଲା ନାହିଁ, ମନେ କେହି ଚହ୍ନିଲେ ନାହିଁ, ପଚାରିଲେ ନାହିଁ—।

ସେତେବେଳେ ଆପଣା ଦେହ ବି ଫାଙ୍କା ଫମ୍ପା ଲାଗେ, ଲାଗେ ସେ ସେମାନଙ୍କର ହାତେର ଏଡ଼କ ବକଟେ ହୋଇଯାଇଛନ୍ତି, ଦେହରେ ପ୍ରାଣ ଧୁକୁଧୁକୁ ହେଉଛି ତେଣୁ ନିଜକୁ ମିଶର ଦେଶର ରାଜାଙ୍କ ମମି ସହିତ ସେ ତୁଳନା କରିପାରନ୍ତି ନାହିଁ, ହାହାକାରର ରାଗିଣୀ ଅନ୍ତର ଭିତରେ ଗୁଣୁଗୁଣେଇ ହୋଇ ଉଠୁ ଉଠୁ ନୂଆ କଥା କହି ଶିଖିଥିବା ଶାଗୁ ଚଢ଼େଇ ହଠାତ୍ ବାକ୍ୟଟିଏ ଉଚ୍ଚାରିଲା ପରି ସେ ଭାଷା ପାଏ, ଅସ୍ଫୁଟ ହୁଏ ସ୍ଫୁଟ, ସଂସାର ବିରୁଦ୍ଧରେ ଜୀବନ ବିରୁଦ୍ଧରେ ସେ ପଦେ ଅଭିଯୋଗ—

"ବା ବ ନ ହେ ଲ"

"ଆଜ ଖଲି ବାବନ ଭଇଲା—"

ଉଚ୍ଚାଟ ଲାଗେ, ବଦଳ ହୁଏ ମନ, ଦୁନିଆଁକୁ ଅନେଇଁବାକୁ ବି ତାଙ୍କ ଆଖି ସହିପାରେ ନାହିଁ, ମନକହେ ପଳାନ୍ତି, ପଳାନ୍ତି ଏଠୁ କୁଆଡ଼େ, କେହି ମୋ ଛାଇ ବି ଦେଖିବାକୁ ପାଆନ୍ତେ ନାହିଁ, ମୁଁ ଶୁଣନ୍ତି ନାହିଁ କେହି ହାକୁଟିମାରୁଛି, ଦେଖନ୍ତି ନାହିଁ କେହି ନେଣ୍ଡିମାରୁଛି, ପହଜ କାଢ଼ୁଛି, ମତେ ଆଙ୍ଗୁଠ ଦେଖୋଉଛି, ମତେ ଠିକଲ ମାରୁଛି, ଯାଆନ୍ତି ଭଲା ଉଡ଼ିଭଇ, ଯେମିତି ଜକଜକ ଝିଲିମିଲି ଝିଲିମିଲି ବଗପଲ ବେଳରତରତ ବେଳେ ସେଇଠି ଆକାଶର ବଣ୍ଡୁ ବଣ୍ଡୁ ସେଇଠି ପୁଣି କୁଆଡ଼େ ହଜିଯା'ନ୍ତି ଯେ ଆଉ ଦିଶନ୍ତି ନାହିଁ ।

ଆଉ ସବୁଦିନେ ଠିକ୍ ସେତିକିବେଳେ ଆଶ୍ୱାସ ଦେଲେ ଆମ୍ଭ ଆଗରେ ଠିଆହୁଅନ୍ତି ଦଳ ଦଳ ଖଟିଖିଆ ଲୁଖୁରା ମୂଣ୍ଡିଆଙ୍କ ମୂର୍ତ୍ତିମାନ। କିଏ ଜମିନଥାଉ, 'ସୁଖ୍‌ବାସିଆ', ମୂଲିଆ, ସରକାର ଗୁରେଟଙ୍କା ମୂଲ ଧାର୍ଯ୍ୟ କଲେ ସୁଦ୍ଧା ଯେ ଦି' ଟଙ୍କା ପାଇ କାମ କରେ, ଗୁଆ ଗୁଣ୍ଡି ପାନ ମହଙ୍ଗାକୁ ପାନ ଗୁଡ଼ ଦେଇ ଖଣ୍ଡେ ନଉ ଓଡ଼ଶା ଖଡ଼କୁ ମନ୍ଦିରେ ମନ୍ଦିରେ ବୋକ ଦେଇ ଦେଇ ନିଭେଇ ଯାଉଛି ଦେଉଡ଼ଘଣ୍ଟା ଯାଏ ନୁହେଁ, କିଏ ସାନଗୃଷୀ, କିଏ ଯନ୍ତ୍ରକ କରେ କରେ ଉଠା ଚୁଲି-ବୋହି ମଳା ସେକ ଦେଇ ଖଟେ, କାହାର ଜୋଡା ପାଲିସ୍ କାମ, କାହାର "ନବ ପାନ ବଡ଼", କିଏ ଝୁଣ୍ଟୁ ରୁ ଝୁଣ୍ଟୁ ରୁ ଚଣାଚୂର୍, କିଏ ପଥର ସୁଆଁସ କରେ। ଆହୁରି ବି କେତେ କେତେ, ହୋଇଥାନ୍ତି ପଛେ ବାବୁ ବେଶ, ପକେଟରେ ଝରିକଲମ, ପଚାରିଲେ କହିଦେବେ—କାଗଜ ପଢ଼ନ୍ତି—କାହାର କି କି କଥା ଗୋଛ ଉଣ୍ଡିବାକୁ, ଗଇ ଖୋଳିବାକୁ କି କମିଶନ ବସିଛି। ଯେ କି ଅବସ୍ଥାରେ ଅଛୁ, ତଥାପି ଦଉଳ ପେଟପୂରା ଆହାର ମିଳେ ନାହିଁ। ଶହ୍ମା ଲୋକ, ଶହ୍ମା ମୁହଁ, ଏ ଗାଁର ଯେ ଗାଁର, ଏ ଗଳିର ସେ ଗଳିର, ଯେମାନେ ସମସ୍ତେ ମିଶି ଏ ଭାରତର ଶତକଡ଼ା ବାସ୍ତରି।

ଏ ଗହଳରେ ବି ଥିବେ ସେମାନେ। ଅଛନ୍ତି। ମା' ଲକ୍ଷ୍ମୀ ଗୋ ଆଅ ତୁମେ, "ଜେ—ଜେ—" ଧୋବାଘର ନେଳକୁଣ୍ଡରେ ମୁଁ ଏକା ପଡ଼ିଗଲି ସେ କଥା ନୁହେଁ ଆଦୌ, ମୁଁ ନୁହେଁ ଆମେ, ଆମେ, ଆମେ, ଏ ଦେଶରେ ଶତକଡ଼ା ବାସ୍ତରି—ଯେତେବେଳେ ଦେଖ କର୍ଣ୍ଣ ମଲେ ପାଁଚ୍ ଅର୍ଜୁନ ମଲେ ପାଁଚ୍, ଆଉ ଗଲା ତିରିଶି ବର୍ଷରେ 'ରାମ-ରାଜ୍ୟ'ରେ ବୋଲି ନୁହେଁ, ଯେତେବେଳେ ଧ୍ୱନି ଥିଲା 'ଗରିବୀ ହଟାଓ' ଆଉ ମହାଭାରତର ମହାନଗରୀର ମହାପଥର ଦି'କରୁ ଗରିବଙ୍କୁ ହଟାଇ ଦିଆଗଲା, ତାଙ୍କ କୁଡ଼ିଆଗୁଡ଼ିକୁ ଖଣ୍ଡିକଳ ଚଳେଇ ଛତୁ କରି ଦିଆଗଲା, କାଳେ ଦାରିଦ୍ର୍ୟ-ବଣ୍ଟନ ହୋଇଯିବ ଆହୁରି ଆହୁରି ଦାରିଦ୍ର୍ୟ ବ୍ୟାପିବ ବୋଲି ଗଦା ଗଦା ଭେଣ୍ଡାଙ୍କୁ ଖାସୁ କରିଗଲା—

ନାହିଁ ନାହିଁ ତା' ଆଗରୁ ବି, କିଏ ମନାକରିବ ସୁନାପୂଣ ଯୁଗରେ ଏକା କଥା ନଥିଲା ବୋଲି, ସେତେବେଳେ ବି ତ ବଣରେ ଆଉ ପୁରରେ ରହୁଥିବା କେତେ ଗରିବଙ୍କ ବକ୍ଷସ୍ଥଳରେ ଠିକେ ଠିକେ ଲେଖାଅଛି—

ମା' ଲକ୍ଷ୍ମୀ ଟଗୋ, ସେତେବେଳେ ଟେରସଙ୍ଖ୍ୟାନ-ବଦ୍ୟା ଥାଉ କ ନଥାଉ ଥିଲୁ ଆମେ ଖଟିଖିଆ ମଳମୁଣ୍ଡିଆ ଅଧାପେଟିଆ ଜୁଆଖୁଣ୍ଡିଆମାନେ ଯିଏ କେଉଁ ଗାଈର ଗୋବର ଜୁହଁନ୍ତ ତ ତାଙ୍କ 'ଅସୂନ' ପୋଥି କବ-କରନ୍ତା କେଉଁ ଗ୍ରନ୍ଥିକାର, ମନ-ମୁନ ଏକଷ କର ଲେଖନ ଅଗରେ ଖୋଳ ଖୋଳ ଲେଖିବାକୁ ବେଳ-ଝାଳ ଦଅନ୍ତ କେଉଁ ଗଣେଣ ? ଆମେ ଥିଲୁ , ଆମେ ଅଛୁ, ଜାଣିଛୁଁ ପଛେ ଆମ ପଦରରେ ଖାଲ କଣ୍ଟାଡକ ପଡ଼ିବ, ଆମ ଜନ୍ମ-ଧନ କେହ ମନେରଖିବେ ନାହିଁ, କେହ ପାଳବେ ନାହିଁ, ଖବରକାଗଜ ବା ଜାଣିବ କାହୁଁ ?

ଆମେ ଜାଣୁଁ—ଆମେ ଶୁଣି ଆସିଛୁଁ ଯୁଗେ ଯୁଗେ ସେଇ ଦ'ଜସମର କଥା—ଭଗେ ଗୀତବାକ୍ୟ, "—ଏଇଆ ଏଇଆ କରୁଥିବ ଏଇଆ ଏଇଆ କରିବ ନାହିଁ", ଘୋଷିଲାପର ମନେ ରହିଯାଇଛି; ଆଉ, —ନାନା ଆଶାର ବାଣୀ; ଯେମିତି "ଆମ ଦେଶରେ କେହ ଓଳିଏ ବ ଉପାସ ରହିବେ ନାହିଁ ।"

ଅଥବା, "ତୁମେ ନିଶ୍ଚୟ ସ୍ୱର୍ଗରାଜ୍ୟ ପାଇବ, ଏଠି ନମିଳୁ, ମଲେ ପାଇବ, ଏକା ଜନ୍ମରେ ନପାଅ, କେତେ ଜନ୍ମ ଉତ୍ତାରୁ ପାଇବ, ଧଏଧର ।"

ଆମେ ଜାଣୁ ଆମେ କ'ଣ ପାଇବୁଁ କ ନପାଇବୁଁ ଆମେ ଜାଣୁ-ନାହିଁ, ଯେ କହନ୍ତ ସେମାନେ ବ ଜାଣନ୍ତ ନାହିଁ ।

ତଥାପି, ଆମେ ଥିଲୁଁ, ଆମେ ଅଛୁଁ, ଜଣେ ଦୁହେଁ, ଶହ ଶହ ହଜାର ହଜାର, ହେଇଟି ତ ଆମେ, ହେଇ ମୋ ଗୁଣକରେ, ମୋ ଆଖି ଆଗରେ, ଆଖି ଯେତେ ବାଟ ପଡ଼ୁଛି, ବରଷକେ ଥରେଅଧେ ଏଇ ଟନକରୁ ଦ' ଗୁମଟ ପିଇଦେଇ ଟିକିଏ ତେଜ ଉଠିବାକୁ ତ ମୁଁ ଏଭଳି ଜାଗାକୁ ଆସିଥାଏଁ, "ବନ୍ଦେ ମାତରଂ ।"

ଖାଲି ପାସଙ୍କ ମନେ ମନେ ସେହି ସଙ୍କୁଚିତ ବନ୍ଦୀଭୂତ ସମସ୍ତ-କଣିକା ଭିତରେ ଅନ୍ତୁଟ ହୋଇ ଗୁଲଗଲା ଏତେ କଥା, ଯେମିତି ଟେପ୍-ରେକର୍ଡର ଯନ୍ତ୍ର ଚଳାଇ ତା'ର ଅଦ୍ଭୁତ ଲେଖା ହୋଇଥିବା ଟିପ୍ ଥାକ

ଉପରେ ଯେ ଟିପ ଦାବ ଦେଇଥିଲେ, ଆଜ ତାଙ୍କ ଆଖି ଖୋଲି ଥାଇ ମୁଦ୍ଧା ଯେ ଦୃଷ୍ଟି ବନ୍ଦ କରି ଦେଇଥିଲେ, ଏଥର ଅନେଇଁଲେ, ଦେଖିଲେ, ସେମାନଙ୍କୁ ଦେଖିଲେ, ସେହି ଜନତା-ଜନାର୍ଦ୍ଦନଙ୍କୁ । ସେ ଆଗକୁ, ଯିବାକୁ ଚାହାନ୍ତି, ଆଗକୁ, ଆଗକୁ, ଯେମିତି ଢ଼ଉଁ ଦେଖିବାକୁ ଯାଇ ମନ୍ଦରର ଗମ୍ଭୀର ଭିତରେ, ଯେମିତି ତାଙ୍କ ଉପରେ ମୁଁଅ ପଡ଼ୁଛି, ଗୋଟାଏ କ'ଣ ଶକ୍ତି ତାଙ୍କୁ ଆଗକୁ ଭିଡ଼ନେଉଛି, ଯେପରି ଆଗଟା ଫାଙ୍କା ଫରଫ୍ଟ, ସେଠି ଢ଼ଉଁ । କଣ୍ଟକ କଥର ବଚନ ବରହି । ଏଠି ତ ଆହୁରି ଫାଙ୍କା, ଝୁବ୍ ଓସାର ଘାସ ପଡ଼ିଆଟିଏ, ଏବେ ଫାଙ୍କା । କଙ୍କାଳ ପାଖେ କାହା କନ୍ଦୁଣିର ଗେବ, ଆଉ କାନ ପାଖେ କଠୋର ତିରସ୍କାର— "ଦେଖ ଦେଖ ଆଲୁ। ମଣିଷ ସେ, ଭଲ ଭଦ୍ରଲୋକ, ବୁଢ଼ାଟିଏ ହେଲେଣି ବୁଦ୍ଧି ଦେଖ । ହଇଓ ମଜସା, କଉଁଲା ବାଳୁରପର ମୋ କାଳତଳେ ଗଳ ମୁଣ୍ଡି ଆମାର ଦେଇ ଦେମ କ'ଣ ଏଠି ହାଜର ?"

ଖଲି ପାଣ ମନେ ମନେ କହିଲେ, "କହୁ ଯାହା, ଛଳ କରିବ ନାହିଁ, ଭାରି ଚଲାଖ ପଡ଼ିଚ ସେ, ନୁହେଁ ? ମୁଁ ପଦେ କହୁଛି କହିଲେ ଯାଙ୍କୁ ଆଉ ମିଳିଯିବ ମୋ ଉପରେ ଦଣପଦ ଝାଡ଼ିବା ପାଇଁ ।" ସେ କରୁଣର କାନ ପାଖେ ତଥାପି ଲାଗି ରହିଛି, "ହୋ ମଜସା, ହୋ ବୁଢ଼ାବାବୁ, ଆରେ ଶୁଣୁଚ ନା ?"

କଙ୍କାଳ ପାଖରୁ କନ୍ଦୁଣି ଗେବ ଅନ୍ତରାଳ ଆଡ଼କୁ ଲମ୍ବି ଗ୍ଲାଇଛି, କଣ୍ଠ ସହି ହେଉନାହିଁ, ସେ ଶତ୍କାର କଲେ "ଉଃ ।"

ପ୍ରତିଧ୍ୱନି ସଙ୍ଗେ ସଙ୍ଗେ ହେଲା, ଯେ ଚେଲୁଥିଲା ତା ଉପରକୁ ଆଉ ଦୁ'ଜଣ ଭେଣ୍ଡିଆ ଚମକି ଆସିଲେ, ସେମାନେ ବି ହୃଷ୍ଟପୁଷ୍ଟ; ସେମାନେ ବି ଲମ୍ବ ବାଳ ଲମ୍ବ କଲି ରଖିଛନ୍ତି, ଯେମିତି ଛୁଟ କାମିଜ୍‌ବାଲା, ଜଣେ କହିଲେ—

"କହୋ ଦୁବଳିଆ ବୁଢ଼ା ଭଦ୍ରଲୋକଙ୍କୁ ଆପଣ ଚେଲୁଛନ୍ତି କାହିଁକି ? ଏକା ଆପଣଙ୍କୁ ଚେଲ ଆସେ ?"

"ଏଃ ! ଭାରି କହିଲାବାଲା ।"

"କଣ ? ବଡ଼ି ବଡ଼ି କଥା ? ଶୁଣେଗୋ ହଁଆ ସେ", ତାଙ୍କୁ ପଛଙ୍କୁ ଓଟାଣ କେଲେ, ଲାଗିଗଲା ପିଟାପିଟି ଠାଇ ଠାଇ ଠୋ ଠା ଗୁମ୍ ଗାମ୍ । ଶାନ୍ତ ପ୍ରତିଷ୍ଠା ପାଇଁ ଲୋକ ଗଦାହୋଇ ପଡ଼ିଲେ, ଆଗ ଧାଡ଼ିରୁ ଯେଉଁଠି ସେମାନେ ଗୁଳିଗଲେ, ପିଟାପିଟି ହେବାକୁ ଅଥବା ଛଡ଼ାଛଡ଼ି କରିଇବାକୁ ସେ ଜାଗାଗୁଡ଼ିକ ଅନ୍ୟମାନଙ୍କ ଦ୍ୱାରା ଦଖଲ ହୋଇଗଲା ।

।

କିନ୍ତୁ ଖଳି ପାଣ୍ଡଙ୍କ ଉପରେ ଆଉ ଗୁପ ନାହିଁ । ପଛଆଡ଼ୁ କିଏ ଧରିଥିବା ଛତାର ଗୁଞ୍ଜି ତାଙ୍କୁ ବି ଚୋଟେଇ ଦେଇ ରଖିଛି । ଏଣିକି ସେ ଭୟ ଉଦ୍‌ବେଗ ନ ଥାଉଣୁ ସ୍ୱାଧୀନତା ଦିବସର ପ୍ୟାରେଡ଼୍ ଦେଖିବେ । ମାଇକ୍‌ରେ କଣ ଗର୍ଜୁଛି, କିନ୍ତୁ ମନ ଭିତରେ ପିଲାଦିନର ଦରିଟି କଣ୍ଠରେ ଚାଳ କ୍ଲାସ୍ ବେଳର ପୁରସ୍କାର ବିତରଣୀ ସଭାର ଗୀତରୁ କେଇ ଧାଡ଼ି :

"ପୃଥିବୀ—
କେଡ଼େ ସୁନ୍ଦର···।"
"ଆକାଶ—
କି ମନୋହର···।"

"ଆସୁଛନ୍ତି ! ଆସୁଛନ୍ତି ! ମୁଖ୍ୟମନ୍ତ୍ରୀ ଆସୁଛନ୍ତି !" "ଆସିଗଲେ ! ଆସିଗଲେ । ମୁଖ୍ୟମନ୍ତ୍ରୀ ଆସିଗଲେ ।" ଖଳି ପାଣ୍ଡ ବେକ ଓଟେଇ ଅଗ ଗୋଡ଼ରେ ଠିଆ ହୋଇ ଅନେଇ ରହିଲେ ଦକ୍ଷିଣ-ପୂର୍ବ କୋଣ ଆଡ଼କୁ, ଯେଉଁ ଦିଗରେ ମାନଚିତ୍ରରେ ପିଲାଦିନେ ଦେଖିଥିଲେ ଅଷ୍ଟ୍ରେଲିଆ ମହାଦେଶ ଅବସ୍ଥିତ ଓ ତାଙ୍କ ମନରେ ସେହି ପିଲାଦିନେ ଯେଉଁ ଦେଶପ୍ରତି ଏକ ପ୍ରକାର ଅଜଣା ଆକର୍ଷଣ ଉପୁଜିଥିଲା, ଯେମିତି କେଉଁ ପୂର୍ବଜନ୍ମର ସଂସ୍କାର ତାଙ୍କ ମନକୁ ଓଟାରୁଥିଲା । ଏ ମାନଚିତ୍ର କିନ୍ତୁ ନୂଆ ରାଜଧାନୀର ପରେଡ଼ ପଡ଼ିଆ, ଯେଉଁଠି ଅଗଷ୍ଟ ପନ୍ଦର ଓ ଜାନୁଆରି ଛବିଶିର ଉତ୍ସବ ପାଳିତ ହୁଏ, କେବେ ଅବା ସରକାର ସେଠି ନାଚ ଗୀତ କରନ୍ତି, କେତେବେଳେ ସରକାର ପକ୍ଷର ବଡ଼ ବଡ଼ ରାଜନୈତିକ ନେତା ଆସି ଭାଷଣ ଦିଅନ୍ତି, କେତେବେଳେ ମ୍ୟାଚ୍ ଖେଳ ହୁଏ ବା ଖେଳ କସରତ୍ର ପ୍ରତିଯୋଗିତା ହୁଏ । ଗୁରୁଆଡ଼ ଖୋଲା, ଗୁରୁପଟେ ସଡ଼କ, ଲୋକ

ଯାଆନ୍ତି, ତଥାପି ରାତିରେ କେହି କେହି ଗୋଟିଗୋଟିକିଆ ଲୋକ ଏକୁଟିଆ ଏ ପଡ଼ିଆ ଦାଣ୍ଡରେ ବୁଲୁଥିବାର କି ବସିଥିବାର ଦିଶନ୍ତି, ହୁଏତ ନିଜ ଦୁଃଖରେ ନିଜେ ନିଜକୁ ସହାନୁଭୂତି ଜଣାଇବା ଚେଷ୍ଟାରେ—ଖଲି ପାସ ବୁଝନ୍ତି. ଚାକିରିବେଳେ କେବେ କେବେ ରାତି ଆଠ ରାତି ନଅ ବେଳେ ଶୀତ ଦିନେ ଅଫିସ୍ କୋଠାରୁ ବାହାରି ରାସ୍ତା ଧରିଲାବେଳେ, ଯେତେବେଳେ ମନେପଡ଼ୁଥାଏ—ସଂସାରରେ ମଣିଷକୁ ପ୍ରକୃତରେ ସହାନୁଭୂତି ଦେବାକୁ ବି କେହି କ୍ୱଚିତ୍ ବାଟ ଭୁଲି ଆସିବାର ଦିଶା ପଡ଼େ ।

ଆସିଗଲେ ! ଆସିଗଲେ ! ବାଜି ଉଠିଲା ଜନଗଣ ! ହେଇ ସେ ଦକ୍ଷିଣ-ପୂର୍ବ କୋଣରେ । ଯେଉଁଠି ପତାକା ଉଡୁଛି । ତକ୍ତା ସବୁ ଯେଉଁଠି ପଡ଼ୁଛି । ବାଜା ସରିଲେ ସେଇଠି ବସିବେ ଭାଗ୍ୟବାନ୍‌ମାନେ । ସେ ବି ସେ ଅଧିକାର ପାଇଥିଲେ । ପେନ୍‌ସନ୍ ପାଇବା ବର୍ଷ ଆଉ ପାଳକ ନିମନ୍ତ୍ରଣ ଖଣ୍ଡିଏ ବି ପାଇଥିଲେ । ଏତେ ଧଳା ଲଫାପା, ଠିକଣାରେ ନାଁଟା ଟିକିଏ ଭୁଲ ହୋଇଥିଲା, 'ଖଲି' ଶବ୍ଦ ପରେ 'ଏଫ୍' ଓ 'ଏ' ବୋଲି ଦିଟା ଅକ୍ଷର ଯେଉଁଠି 'ପାସ' । ଏଫ୍. ଏ. ବୋଇଲେ ତାଙ୍କର ମନେପଡ଼େ ସରକାରଙ୍କ ଯେ କୌଣସି ବିଭାଗର 'ଅର୍ଥନୈତିକ ଉପଦେଷ୍ଟା, ଚାକିରିଟି, ମନେ ମନେ ଲୋଭେଇଥିଲେ, ହୋଇ ପାରିଲେ ନାହିଁ ତାହା ସେଥିରେ—ଖୁବ୍ 'ପାୱାର', ମାନେ 'ଶକ୍ତି', ଯାହା କହନ୍ତି ଚଳନ୍ତା ତେଲକୁ ଅଟକେଇ ହେଲା ପରି । କିନ୍ତୁ ଧଳା ଲଫାପା ତାଙ୍କୁ କରିଥିଲା 'ଖଲିଫା ପାସ', ମନେ ରହିଗଲା, କିନ୍ତୁ ଧଳା ଲଫାପା ଆସିଲା ନାହିଁ ଆଉ କେବେ ।

ନ ଆସୁ—ଆଚଣାକୁ ସେ ପୁଣି ସ୍ମରଣ କରାଇ ଦେଲେ—ଗାନ୍ଧୀ କହିଥିଲେ, ବିନୋବା କହୁଛନ୍ତି, ଜୟପ୍ରକାଶ କହୁଛନ୍ତି, ଜନତା ହାତରେ ହିଁ ତ ଶକ୍ତି, ଜନତା ହିଁ ତ ମାଲିକ୍ ଏ ଦେଶର, ଏ ଶାସନର, ଆଉ ଯେତେ ଯେତେ ମନ୍ତ୍ରୀ, କର୍ମଚାରୀ, ଯେତେ ଠେଙ୍ଗାବାଲା, ବନ୍ଧୁକବାଲା ପୁଲିସ୍, ଯେତେ ଜେଲ୍ ସୁପ୍ରିଣ୍ଟେ, ୱାର୍ଡ଼ର୍‌ମାନେ, ସମସ୍ତେ, କେହି ବାଦ୍ ନାହାଁନ୍ତି, ସମସ୍ତେ ହିଁ ତ ସେହି ଜନତାର ଚାକର, ସେବ୍ ସାର୍, ଥାଆନ୍ତୁ ପଛେ ସେ ଜନତା ତାଲିକା ଭିତରେ ଚାକରର ଚାକର, ପୁଣି ତା' ଚାକର । ତା' ଗୋଡ଼ । ଯେହିକଥା କହୁଥାଏ ସେଥର ଭୁବନେଶ୍ୱର

ବସ୍‌ଷ୍ଟାଣ୍ଡରେ ବସ୍‌ମାନଙ୍କ ଆଗରେ ପାଟି କରି କରି ବାହା ଗୃପୁଡ଼େଇ ଜଙ୍ଘ ଗୃପୁଡ଼େଇ ଡେଇଁଡେଇଁକା ଗୋଟାଏ ପାଗଳ ଟୋକା ବାବୁଏ ଝିକଲ ମାରୁଥାନ୍ତ (ଥଟ୍ଟା କରୁଥାନ୍ତ) ଟେହୁଥାନ୍ତ ତ ସେ ଟୋକା, ମାଉଲ୍, ମାଡ଼ ଖାଇଲ୍, ତାକୁ ପୁଲିସ୍ ଡେଣା ଧରି ଓଟାରି ଟାଣିଆ ନେଇ ନେଇ ପଦାରେ ଛାଡ଼ିଲ୍, କିନ୍ତୁ ସେ ବାରମ୍ବାର ତା' ହକ୍କୁ (ଅଧିକାର) ଜାରି କରିବାକୁ ଠେଲି ଧସେଇ ଉହୁଙ୍କୁଥାଏ । କହୁଥାଏ ବେଳ ଯିବ ଯାଉ, ମୋ ଭୁଣ୍ଡି କେହି ବୁଝି ପାରିବେ ନାହିଁ ।

କିନ୍ତୁ ଭୁଣ୍ଡି ବୁଝିବା ହିଁ ତ ଭଦ୍ରତା, ସୌଜନ୍ୟ, ସଂସାରରେ ଦାଉଦାଉ ଆସିଲେ ପ୍ରାଣ ବଞ୍ଚେଇ ଜୀବନ ବଞ୍ଚେଇବାର ଭଲ ବାଗ— ଖଳି ପାନ ଠିଆହୋଇ ଆପଣା ଚିନ୍ତାରେ ବୁଡ଼ିଥାନ୍ତି, ଆପଣା ମନ ଭିତରେ ନାନା ଦୃଶ୍ୟ ଦେଖୁଥାନ୍ତି, ଯେଉଁ ଦୁଃସ୍ୱପ୍ନ ବି ଯନ୍ତ୍ରଣା ହେଉଥାଏ ସେ ଥାନ୍ତି ଚେତା—ଆରେ ବାପ୍‌ରେ—ଏମର୍ଜେନ୍‌ସି ବେଳ, ଉଣେଇଶ ମାସ ଭୋଗ କାଳ, ରାତି ପାହିଲେ କେତେ ନୂଆ କଟକଣା ନୂଆ ଆଇନ୍ ହେଲଣି ଜଣାନାହିଁ, ଜଣାନାହିଁ, କେଉଁଠି କାହା ଘରେ ଚଢ଼ାଉ, କାହା ଉପରେ ପାହାର. କିଏ ଫେରାର ହେଲଣି କେଉଁ ଅଜଣା ବନ୍ଦୀପୁରକୁ, କେଉଁଠି କିଛି ନ ହୋଇଥାଉ ପଛକେ କୋଉଆଡ଼ୁ କାହାରି ଛାଡ଼ ନାହିଁ । ସେତେବେଳେ କି ସେ ନିଜେ କ'ଣ ଡରିଥିଲେ କି କାହା ଆଗରେ କହିଥିଲେ ତାଙ୍କୁ ସେୟା ଭଲ ଲାଗୁନାହିଁ ? ନା ଓଲଟି ଯେମିତି ଉଣେଇଶ୍ ସତସ୍ତର ଲାଗି ଅରୁଣୋଦୟ ପ୍ରେସର ନୂତନ ଖଡ଼ୀରନ୍ ପଞ୍ଜିକାରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଜନ୍ମଦିନ ଉପଲକ୍ଷେ ଉଣେଇଶି ନଭେମ୍ବର ଖୋପରେ ଛପା ହୋଇଛି । ଯେମିତି ଓଡ଼ିଶାର, ଭାରତର, କେତେ କବି, ପାଲବାଲ, ଦାସକାଠିଆବାଲ, ଛବି କାରିଗର, ନେତା, ମନ୍ତ୍ରୀ, ଚହଲ ପହଲ ଚରଳ ଚଢ଼େଇ କେତେ ବାଗରେ କେତେ ଭଙ୍ଗୀରେ ଗାଇ ଦେଇଗଲେ ଘାଟ ପଣରେ, ସେମିତି କହି ଦେଉଥିଲେ ଖଞ୍ଜି ଉଣ୍ଡି ?

"ପଚୁର ପଚୁର, ମନକୁ ପଚୁର ।" କିଏ ଯେମିତି ମନ ଭିତରେ ତାଙ୍କୁ ହୁକୁମ୍ ଦେଉଛି, "ମନର ପ୍ରତି ସ୍ତରକୁ କାଟି କାଟି ଚାଡ଼ି ଫାଡ଼ି ଦେଖ୍ କ'ଣ କୋଉଠି କହିଥିଲୁ ।" "ଦେଖୁନ, ଦେଖିବ, କାନମୋଡ଼ ହଉଚି, ଯାହା କହିବ କରିବ ।"

"ପଗ୍ଗୁର ପଗ୍ଗୁର, ଜଲ୍‌ଦି—

କାହା କବଳରେ ସେ ? ଖାଲି ପଗ୍ଗୁର ପଗ୍ଗୁର ।

ଆଉ ବେଶି ଗହ୍ୱରକୁ ଠାଉଁବା ନାହିଁ ଲୋଡ଼ା, କହୁଥିଲେ ତ ସେ । ଦଳରେ ଥିଲେ ଯେମିତି ଫୁସ୍‌କନା ଗୁଡ଼ିଦେଲେ ପ୍ରାଣଟା ହାଲୁକା ଲାଗେ, ଲାଗେ ଗୋଟାଏ କର୍ତ୍ତବ୍ୟ ହେଲା, ଆଜ-ଏଠି-ଅଇଗ୍ଣ-ମୋ'ଦେଇ-ଏତକ, ହଉ ପଛେ ସ୍ୱେ ଯାହା—ଖୁସ୍‌କନା—କଲେ-କଲେ । (ସମ୍ବଲପୁରୀ) ।

"କହୁଥିଲି ମୁଁ କହୁଥିଲି, କାହା ଘରେ ବସି କେଉଁ ପେନ୍‌ସନ୍‌ଆଁ ସାଙ୍ଗ ସାଙ୍ଗେ ଅଶୀତର ଭଲ ଦିନ ଏ କାଳର ଅବକ୍ଷୟ କଥା ପକାଇ ଦପଦ ଗପିଲା ବେଳେ—ଯଦି ସେ ପେନ୍‌ସନ୍‌ଆଙ୍କ ଦେହ ବିଗିଡ଼ ନ ଥିବ କି କେଉଁ ଜଞ୍ଜାଳରେ ପଡ଼ି ମଥା ଭ୍ରମୁ ନ ଥିବ···ଆଉ ଆମ ବୁଢ଼ାଙ୍କ ଗପର ବିଷୟ ତ ଅଧିକରୁ ଅଧିକ ସେଇ କଥା, ଯେ ସେତେବେଳେ ସବୁ ଭଲ ଥିଲା, 'ଆମ ବେଳେ', ଏବେ ସମସ୍ତେ ଖଇଗ୍ଣ, ହୁଗୁଳା, ବିଗିଡ଼ା ନିକମା, ଦୁଷ୍ଟ, ଖରାପ । ସେତିକି ଆମର ମୁରବିପଣିଆର ସାନ ଇସ୍ତାହାର, ମାନ ନ ମାନ ।"

ତଥାପି ମନ ଭିତରେ ସେହି ନିବୁଜ ନିଘଞ୍ଚ କନ୍ଦରରେ ଯେଉଁଠି ଯାହା ହୁଏ କେହି ଦେଖିବେ ନାହିଁ କେହି ଜାଣିବେ ନାହିଁ, ସେଠି ବି ଯେ ସ୍ୱୀକାରୋକ୍ତିର ସ୍ପଷ୍ଟ ଶବ୍ଦ ସିଧା ସିଧା ନିଜ ଚେତା ଚଇତନ ହାବୁଡ଼କୁ ଆସୁନାହିଁ, ଲୁଚୁଛି, କାଁରେଇ ହେଉଛି, ଭଁ ବୁଲାଇ ପର ଏକର ସେକର ହେଉଛି—

"ଆବେ ଆ ଆ ଆଗକୁ ଆ—"

ଜୟ ମା ସରସ୍ୱତୀ ମା ଶାରଦେ, କରୁଛି ବନ୍ଦନା, ଯାହା ହୁଅ ପଦ ପଇଠ ।

"ହଁ, ଖୁସ୍‌କନା ଫୁସ୍‌କନା—ହେ ହେ ହେଁ—ସେଇ ଲେକ ଲୁଣ୍ଠିଥିବା ଜାଗାରେ, ଯେ ଶୁଣ ମୋ ଘୋଷଣା —

ସେ ମୂଳ କୁଟାପାକ—ବୁଝିଲ ନା – ଯୋଉ ଉତ୍ପାତ, ଯୋଉ ଉତ୍ବାର୍ଯ୍ୟ, ଯୋଉ ଅମଣିଷ ହେଲେ ନା, ସ୍ଯାଙ୍କୁ ଠେଙ୍ଗା, ସ୍ଯାଙ୍କୁ ପାହାର, ସ୍ଯାଙ୍କୁ ଏମର୍ଜେନ୍ସି ହିଁ, ଆମୁକୁ ବ, ମତେ ବ, ଓରଭୟ ନଥିଲେ କେହି କାମ କଲାଣି ? ହେଁଃ ! ନଇଲେ । ଯୋଉ ଅମଣିଆ, ଯୋଉ ବାଳୁଙ୍ଗା, ଯୋଉ ହେରେମା ହେଲେ ସେ କହିଲେ ନ ସରେ । ବାଟଯାକ ସାଇକଲକୁ ମାଇକଲ ଯୋଡ଼ଦେଇ ଟୋକାଏ ଫରକାଟଇ ହେଉଥିବେ ଯେ ବାଟ ବନ୍ଦ, ଇସ୍କୁଲ କଲେଜରେ ଗୁରୁଙ୍କୁ କଲେ ଗୋରୁ । ଦେ ଗୋଟଗୋଛ-ବାଡ଼ଆ ନଜ ଭିତରେ ଲହୁଲୁହାଣ, ମାଇକନିଆ ଝିଅଙ୍କ ପିଳେହିପାଣି ହଉଥାଏ । ଅଫିସରେ କାମଦାମ ନାହିଁ, ଡେଉରେ ଆସ ବୁଲ, ମାର ଗପ, ପଇସା ନଦେଲେ ଫାଇଲ ନମିଳେ, କାମ ନ ଉଠେ, କାରଖାନାରେ ଷ୍ଟ୍ରାଇକ୍, ଛୁରୀ ମରାମରି, କେବେ କେଉଁ ସଡ଼କ ବନ୍ଦ, ରେଲ ମଡ଼କ ବନ୍ଦ, ସହର ବନ୍ଦ, ବଜୁଳି ବନ୍ଦ, ପାଣି ବନ୍ଦ, ହାଟ-ବଜାର ବନ୍ଦ, ଜନିଷ ଲୁଚିଲା, ଭାଉ ବଢ଼ିଲା, ଖଣ୍ଡ ଚେଳଲେ, ଦୁର୍ନୀତି କଳାବଜାର ତ ସବୁଆଡ଼େ । ସେଇଠୁ ଆଇଲା ସେ ଏମର୍ଜନ୍ସି, କ ହେଉ ପଛେ ଠିକ୍ ସେଇ କାରଣରୁ ହୋଇଥାଉ ପଛେ ତା' ଉଦ୍ଦେଶ୍ୟ ଏତିକ ଯେ ଇନ୍ଦିରାଙ୍କ ଆମନ ନିରଙ୍କୁଶ ହେବ, ତା' ଟଳଟଳ ଥମ୍ଭିଯାଇ ଖୁବ ବଜର ହେବ, ତାଙ୍କ ଅନ୍ତେ ତାଙ୍କ ପୁଅନାତି ରଜା ହେବେ । ଆରେ ରଜା ତ ଥିଲେ ଏ ଦେଶରେ କାଳକଯାକ, ରାମଚନ୍ଦ୍ର, ଧର୍ମଯୁଧିଷ୍ଠି, ପ୍ରତାପ, ଆକବର, ଶିବାଜୀ, ନରସିଂହଦେବ, କପିଳେନ୍ଦ୍ର, ପୁରୁଷୋତ୍ତମ ଦେବ ସମସ୍ତେ ଥିଲେ ରଜା, ଆଉ ଢେଙ୍କାନାଳରେ ଗଲା ରଜା ଥିଲେ ସତ ଯେ ତାଙ୍କ ଆଗରୁ ଭଗୀରଥୀ ମହେନ୍ଦ୍ର ବ ରଜା ଥିଲେ ଯେ ଖୋଳେଇଲେ ଭଗୀରଥୀ ସାଗର, ଭାସିଗଲା କ'ଣ ? ଆରେ କୁ ଡେମାକ୍ରାସି ଶାସନ ବାଗ କଥା ଆମ ଏଠି ଜଣାଥିଲା ନା ଶୁଣାଥିଲା, ନା ଶାସ୍ତ୍ରରେ ନା ପୁରାଣରେ, ପଛେ ମନ୍ତ୍ରୀ ତ ଯେ ହେଲେ ଖାଲି ଡେମୋକ୍ରାସି ମାର୍କା ଧୋବ ଖଦଡ଼ଖୋଳ ତଳେ କ ଗୃହାଣିରେ କ ଛଟକରେ କ ଗୃଳରେ କ ବୋଳରେ କ ବୋଳରେ କ ଗୃଳରେ ଚଳଣିରେ ଯୁଆଡ଼ୁ ବଜେଇ ଦେଖ ଗୋଟିଏ ଗୋଟିଏ ରଜା ହିଁ, ସେକାଳର ରଜା, ତାଙ୍କୁ ମନ୍ତ୍ରୀ ସବୁ ସେହି ଆଦବଧି ସିଧି, ସେମିତି ପହଡ଼, ସେମିତି ମଣୋହି, ସେମିତି ଭୋଗଭାଗ୍ୟ, ସେମିତି ଧନଧାନ୍ୟ ଗୋପଲକ୍ଷ୍ମୀ, ସେମିତି ଛତିଶିପାଟକ

ମେବାକାଶ, ସେମିତି ପଣ୍ଡିତ ନାହାକ ଗୁରୁଗୋସେଇଁ, ସେ ମାଣ୍ଡକ ଅଣ୍ଡିରା ଯୋଉ ଗୋସେଇଁ ହନୁ, ସେମିତି ପାରଧି, ସେମିତି ଅନ୍ଧାରବଜେ, ସେମିତି ଗୁମୁ ବଜେ, ସେମିତି ସଭାସମିତି ଯୁଆଡ଼େ ଗଲେ ଆମେ ଆଗେ ଘଟନାଠ ସେମିତି ସବୁ ଖାଲି ନାଁଗୁଡ଼ାକ ଭଲେ କେଉଁ ନାଁ ଧରଲେ କେଉଁ ଶବ୍ଦ କହିଲେ କେଉଁକଥା କ କେଉଁ କାମ ବୁଝାଏ, ଆରେ ଭାଷା, ତା' ଶବ୍ଦ ତ ଜାଆନ୍ତା, ଯେମିତି ପିଲଟିରୁ ବୁଢ଼ାଟିଏ ହୁଏ, ବେଳୁବେଳ ବଦଳି ବଦଳିଯାଏ କଏ ସେ ନ ଜାଣେ ହେଇ ଆମ ଓଡ଼ିଆରେ ଗନ୍ଧହେଲାଣି ବାସ୍ନା, ବାସ ହେଲାଣି ଗନ୍ଧ, ଇସ୍ କହିଲେ ଭାରି ଭଲ, ଚୁଡ଼ା କହିଲେ ମର୍ଦ୍ଦହଟିଆ, ଗୁମ୍‌ଗ୍ରୁ କହିଲେ ବୋକ୍‌ଗୁବୁହା, ସେମିତି ତ ସବୁ, ସେଇ ଏକା ସୋମରସ ବାବୁ, ପାତ୍ର ବଦଳିଲେ ନାଁ ବଦଳେ । କେତେବେଳେ ସୁରା, କେତେବେଳେ କାଚବୋତଲରେ ରମ୍, ହ୍ୱିସ୍କି, ବିଅର୍, କେତେବେଳେ ହାଣ୍ଡିରେ ପଶି ହାଣ୍ଡିଆ, ବାସି ତୋରାଣି, ପୁରୁଣା କାଞ୍ଜି ପାଣି, କେତେବେଳେ କବିରାଜ ଦୋକାନରୁ ବାହାରିଲେ ଅସବ କି ସୁଧା, ମାଲ୍ ଏକ୍, ପାତ୍ର ଭଲେ, ତେଣୁ ମୁଁ ବି ତୁମ ସଙ୍ଗେ ଲକ୍ଷ ଲକ୍ଷ ଲୋକଙ୍କ ସଙ୍ଗେ ମୋ କ୍ଷୀଣସ୍ୱର ମିଶେଇଦେଇ କହିଥିଲି "ଜେ-ଜେ", ତେବେ ମୋର ସାମାନ୍ୟ ଲୋଭ ଏତିକି ହେଲା ଯେ ମତେ କେହି ଧୋଷାଡ଼ି ନାହାନ୍ତି, ମୋ ଭଳି ମୁଷାଚୁଟୁନ୍ଦାଙ୍କ ଉପରେ କାହା ନଘା ପଡ଼ିଥାନ୍ତା ବା କାହିଁକି, ଖାଲି ମୋ ଡର ଥିଲା ମୋ ଉପରେ ନିଆଁ ନ ପଡ଼ୁ, ନିଆଁ ଧାସରୁ ଛିଟିକାଏ ବାଜିଯିବ କାଳେ, କି ଠିକଏ ସୁକୁ ସୁକୁ ନିଆଁ ଗୁଲ୍, ସେତିକରେ ମୁଁ ସରିଥାନ୍ତି, ଅଥଚ ଏଇ 'ଜେ-ଜେ' କରି କେତେ ଲୋକ କେତେ କେତେ ଦରବ ପାଇଗଲେ, ମୋ ଭାଗ୍ୟରେ ପ୍ରାପ୍ତିଯୋଗ ନଥିଲା । ତମେ ସିଂହ ହୋଇପାର, କଏ ଜାଣିଛି ତମୁକୁ ଅବା ଗୋଟର, କିନ୍ତୁ ମୁଁ ଜାଠଟିଏ, ଯେମିତି କେଉଁଠି ଅରଏ ଛେଦ ପଡ଼ିଛି ବସିଥାନ୍ତି ପୁଳାଏ ତା' ଭିତରେ, ହଲୁଥାନ୍ତି ଗିଲୁଥାନ୍ତି, ଆଖି ନାହିଁ ତାଙ୍କର, ସ୍ପର୍ଶବୋଧ ଅଛି ସେଇଥିରୁ ବାରିପାରନ୍ତି ନିଜ ହିତ ଅଣହିତ, ସେଇ ସଲ ସଲ ହଲ ହଲ କୁରୁମି କଣ୍ଟୁଟିଏ ମୁଁ ଏ ଦୁନିଆଁରେ, ଆଉ ମୁଁ ସ୍ୱୀକାର କରୁଛି, ଡର ମୋର ଅଛି, ବୋଧହୁଏ ଡର ନେଇ ମା ପେଟରୁ ପଦାକୁ ବାହାରିଥିଲି, ଭୁଲ୍ଲାକୁ ଗୁଣିଆଁ, ଯେଉଁମାନେ ମତେ ପାଳିଲେ ପୋଷିଲେ ସେମାନେ ବି ଡର ପେଇଦେଲେ, ଡର ବୋଳିଦେଲେ, ଡର ଘୋଡ଼େଇ ଦେଲେ, ଶାନ୍ତି

ପାରୁଲଣି, ମୋ ବସ୍ତୁର, ମୋ କଥା, ମୋ ଆଚରଣ, ବ୍ୟବହାର; ପରଙ୍କୁ ଉପଦେଶ, ମୋ ନିନ୍ଦାପ୍ରଶଂସା, ଧର୍ମ, ଭକ୍ତି, ସ୍ୱପ୍ନ, ମୋ ସାତପାଞ୍ଚ, ମୋ ସାମାଜିକ ଚଳଣି, ମୋ ଶାନ୍ତସୌଜନ୍ୟ ଭଦ୍ରତା ଭଲପଣ ସବୁ—ସେଇ ଉପରେ ତଥାଚ ଉପରେ ନିଜ ଭିତରେ ବନ୍ଧାବନ୍ଧ ହୋଇ ଅଛି ମଜଭୁତ ଆଣ୍ଠି ଦମ୍ଭ—ମାନେ, ବୁଝେଇ ପାରୁନାହିଁ ଠିକ୍ କଣ, ନହେଲେ ମୁଁ ନଥାନ୍ତି, ମୋର ଖଣ୍ଡବିଖଣ୍ଡ ଅଣୁପରମାଣୁ ପ୍ରୋଟନ୍ ନିଉଟ୍ରନ୍ ଡି ଏନ୍ ଏ—ହଁ ହଁ ପେନ୍‌ସନ୍ ପାଇ ମୁଁ ଏଣୁତେଣୁ ଲେଖା ଚଳେଇଛି, ଖାଲି ଅରୁଣୋଦୟ ପାଞ୍ଜି ନୁହେଁ, କେତେବେଳେ କାହାଘରୁ ମାଗି ଆଣିଥିବା କେଉଁ ପୁରୁଣା ମ୍ୟାଗାଜିନ ବି—ହଁ କହୁଥିଲି ଟି—ମୋ ଡି ଏନ୍ ଏ ବି ଏସବୁ କୁଆଡ଼େ କୁଆଡ଼େ ଲିଚ୍ଛୁରିତ ହୋଇଥାନ୍ତେ ମୋ ଭିତରେ ଭୟ ନଥିଲେ, ମୁଁ ଅନୁଭବ କରୁଛି ସୃଷ୍ଟିର ନିଦାନ ରୁଣ ସେହିଆକୁ ଧରି, ନହେଲେ ସୂର୍ଯ୍ୟଙ୍କ ପୁଅ ଯମ ଯେ ସେ ତ ଚରମସାତ୍ତ୍ୱିକ, ଚରମ କାରୁଣିକ ତେଣୁ ସୃଷ୍ଟିର ସ୍ଥିତି ପାଳନ ଶାସନର ଭାର ତାଙ୍କର ଉପରେ ରହିଲା ଆଉ ଯମ ହିଁ ହେଲେ ଜୀବଣର ଚୂଡ଼ାନ୍ତ ଆଉ ଏ ସଂସାର ଯେ ରହିଛି ତାହା କେବଳ ଭୟ ଯୋଗୁଁ, ସେହି ଭୟରୂପୀ ଭଗବାନଙ୍କୁ ଅର୍ଜୁନ ଦେଖି ଠକ ଠକ ଥରୁଥିଲେ ଆଉ ଭୟ ହିଁ ଜୀବନ, ଭୟ ହିଁ ମୃତ୍ୟୁ ତେଣୁ ମୁଁ ଠେଙ୍ଗାକୁ ଡରି ଠେଙ୍ଗାକୁ ଜେ-ଜେ ହୋଇଥିଲି, ଜେ-ଜେ କରୁଥିଲି ଏବେ ବି ସେଇଆ କରେଁ କହିଦେଲି ଯାହା ଭାବ ।”

ରଣ୍ଡି ସାହି ହୋଇ ମନେ ମନେ ନିଜ ଆଗରେ ନିଜେ କହିଗଲେ ଯେମିତି ଥରେ ହେଉ ପଛେ ନିଜଠିଁ କେଉଁ ଗୁପ୍ତଘରର ଗୁପ୍ତ ମୁହଁ ଖୋଲି ଯାଇଥିଲା ଆଉ ଗୋନାସିକାଠଙ୍କୁ ବାହାରି ଆସୁଥିଲା ବୈତରଣୀ ଝର, ଏଥର ଆଖିରେ ଅନେଇଲେ, ସେହି ଝଲମଲ ବନ୍ଧୁକ ଓ ସଙ୍ଗୀନ୍ ଗୋଛି ଗୋଛି, ଧାଡ଼ି ଧାଡ଼ି, ଜଙ୍ଗଲ, ସେହି ଜିପ୍ ଗାଡ଼ି, ସେଥିରେ ସେହି ପଦଙ୍କାଧାରୀ, ଦେଶର ମୁଖ୍ୟମନ୍ତ୍ରୀ, ଆଃ—ଜୟ ହଉ, ଜୟ ହେଉ ଆପଣଙ୍କର—ପୁଣି ଆଖିଆଗରେ ଯେମିତି ସିନେମାର ଫ୍ଲାସବ୍ୟାକ୍ ଖେଳିଯାଉଛି, ଡେଙ୍ଗା ହେଉନ୍ତୁ, ଟିମ୍ପା ହେଉନ୍ତୁ, ଭେଣ୍ଡା ହେଉନ୍ତୁ, ବୁଢ଼ା ହେଉନ୍ତୁ, ସେହି ଠିଆ ପ୍ରତୀକ, ସେହି ମୁଖ୍ୟମନ୍ତ୍ରୀ, ରାଜ୍ୟର ନେତା, ମୁଖ୍ୟ-ସେବକ, ମୁଖ୍ୟଶାସକ, ଜୟ ହଉ ଜୟ ହେଉ ଆପଣଙ୍କର, ଓଃ ! କି

ଗୁରୁ ଦାୟିତ୍ୱ ! କି ଗାମ୍ଭୀର୍ଯ୍ୟ ! କି ମାଧୁର୍ଯ୍ୟ ! କି ଔଦାର୍ଯ୍ୟ ! ତେବେ ଏଥର କଥା ଅବଶ୍ୟ ସ୍ୱତନ୍ତ୍ର । ବିଶିଷ୍ଟ । ଏମର୍ଜେନ୍‌ସି ଏମାନେ ଲୋପ କରିଛନ୍ତି, ସମ୍ବିଧାନରେ ଥିବା ମୌଳିକ ଅଧିକାର ଲୋପ ହୋଇଥିଲା, ପୁଣି ତା' ଆଗଭଳି ଯେମିତିକ ସେମିତି ରହିଲା ବୋଲି ଘୋଷଣା କରିଛନ୍ତି, ଦେଶରୁ କୋଳୁଆଭୟ ଦୂର କରିଛନ୍ତି, କମ୍ ବଡ଼ କଥା ? ନାଗରିକ ଏବେ ପୁଣି ତା' ମର୍ଯ୍ୟାଦାକୁ ପାଇଛି, ହଜିଲା ଧନ ମିଳିଛି, ଏମାନେ କହୁଛନ୍ତି ଦେଶ ଭିତରେ ସେହି ଗତକଡ଼ା ସବୁର ବାସ୍ତବ ବ ମଣିଷ ଭଳି ବଞ୍ଚିବେ ।

ଆଜି ସେମାନେ କ'ଣ କହୁଥିଲେଟି ? ନିଜକୁ ନିଜେ ମନ ଭିତରେ ପ୍ରଶ୍ନର ଉତ୍ତର ନ ମିଳୁଣୁ ପୁଣି ତାଙ୍କ ଆଖି ଦେଖିପାରିଲା, କାନ ଶୁଣିପାରିଲା ମୁଖ୍ୟମନ୍ତ୍ରୀ ଫେରିଗଲେଣି, ତାଙ୍କ ଭାଷଣ ବି ସରିଆସୁଛି ଲାଗିଲାଣି ।

ମନେପଡ଼ିଲା, ଅଗଷ୍ଟ ପନ୍ଦର ହେଲା, ଯୋରିଷତେଲ ଦାମଟା ଆଠ ଟଙ୍କାରୁ ବଢ଼ି ବଢ଼ି ବାର ଆଠଣା ହେଲାଣି, ତେଲ ବି ଲୁଚକାଳି ଖେଳିଲାଣି, ଦୋକାନୀ ଦର ସବୁ କେମିତି ବଢ଼ୋଉଛନ୍ତି ।

"ଧନ୍ୟ କହିବ ଏ ଲୋକଙ୍କୁ ।" ସେ ଦୀର୍ଘଶ୍ୱାସ ପକାଇଲେ, ବାହୁଡ଼ାଣି ଗହଳି ଲାଗିଗଲେ ଧକାପେଲା ହେବ ଡର ଗଳିଗଳିକା ବାହାରିପଡ଼ିଲେ ମଣିଷକାନ୍ଥ ପିଠିଆଡ଼େ, ଲେଉଟି ଗଲେ ।

ସମାବେଶ 'ଶାରଦୀୟ' ବିଶେଷାଙ୍କ ୧୯୭୭



# ଦାମ୍ଭ

ହୁ ।

"ହୋ !"

"ହ୍ୱି ହ୍ୱି ହ୍ୱି ହ୍ୱି"

"ହୃ"

"ହେଁ"

"ହୁ"

"ହୌ ।' ହଃ"

ହ ହ ହ ହ

"ହେଁ ।"

"ହୁଁ"

"ହୋ"

"ହୁଃ ?"

"ହୃ"

"ହା"

"ହେଁ ?"

"ହୁଃ ହୁଃ ହୁଃ"

"ହ ଉ ।"

ଗଲ । ପୁଣି ଏକୁଟିଆ । ଠାଇଁ ଠାଇଁ ଖସ । ମୁଣ୍ଡ ଉପରେ ଥୁଣ୍ଟା ଗଛ । ଯୁଆଡ଼େ ଦେଖିଲେ ଠେଲା ବଣ । ଡାଉ ନାଚୁଛି ଯେମିତ ମିଛ ପାଣି ଧୂଳ ଉଡ଼େଇ ପବନ ମାଡ଼ିଯାଉଛି ମଝିରେ ମଝିରେ ।

ଶ୍ମଶାନ୍ ।

ହାଉ ହାଉ । ହାଉ ହାଉ । ହାଉ ହାଉ ।

ଚୁପ୍ । କେଉଁ ଚୁପ୍ ।

ଥିଲ । ନାହିଁ ।

ହେଇଥାନ୍ତା । ହେଲନାହିଁ ।

ହାଇଁ ପାଇଁ ହାଇଁ ପାଇଁ ହାଇଁ ପାଇଁ ।
ହା । ହା ହା ।
ତୋଳା ବୋଝ ଲାଗୁଛି, ଆଖି ଅଠାଳିଆ ।

ହୁଏତ ନାଦ ଯୋଡିଯିବ । ହନ୍ତା କ । ସାହ୍ନ ମିଳନ୍ତା । ଶୁଖିଲା ପବନ ଖଡେଇ ହେଉଛି, ହାଉ ହାଉ ହାଉ ହାଉ ।

କଣ୍ଠ ଚେଷ୍ଟାଭଳି ଗୋଟାଏ ଲମ୍ବା ଡାକ ଗୁଡ଼ିଦେଲି ।

"ହୋ……"

ପାଟିରୁ ବାହାରୁ ବାହାରୁ ସ୍ୱର ନଭିଗଲା ।

ଆଖିରେ ସବୁ ଶୂନ୍ୟ, ମନରୁ ବାହାରି ହଜିଲା ସ୍ୱରମାନଙ୍କ ପ୍ରତିଧ୍ୱନି କାନରେ ଶୁଭୁଥିଲା । "ହେ ହେ—ହି ହି ହି ହି"

…ବସି ନଥିଲି । ଶୁଖିଲା ଗଛମୂଳକୁ ଆଉଜି ପଡ଼ିଥିଲି ।

'ଅମୃତାୟନ' ଏପ୍ରିଲ୍ ୧୯୮୯

